// ଉତ୍କଳ ପ୍ରସଙ୍ଗ

**The Utkal Prasanga**

**February-March - 2019**

**୭୫ ଭାଗ ୭ମ-୮ମ ସଂଖ୍ୟା ମାଘ-ଚୈତ୍ର ଫେବୃଆରୀ-ମାର୍ଚ୍ଚ - ୨୦୧୯**



---

ଉତ୍କଳ ପ୍ରସଙ୍ଗ ଓଡ଼ିଶା ସରକାରଙ୍କ ସୂଚନା ଓ ଲୋକ ସମ୍ପର୍କ ବିଭାଗ ତରଫରୁ ପ୍ରକାଶ ପାଉଥିଲେ ସୁଦ୍ଧା ଏହି ପତ୍ରିକାରେ ପ୍ରକାଶିତ ମତାମତ ଓ ଚିନ୍ତାଧାରା ସବୁ ସ୍ଥଳରେ ଓଡ଼ିଶା ସରକାରଙ୍କର ବୋଲି ବୁଝିବାକୁ ହେବ ନାହିଁ ।

ଓଡ଼ିଶା ସରକାରଙ୍କ ସୂଚନା ଓ ଲୋକ ସମ୍ପର୍କ ବିଭାଗଦ୍ୱାରା ପ୍ରକାଶିତ ଏବଂ
ଓଡ଼ିଶା ସରକାରୀ ମୁଦ୍ରଣାଳୟ, କଟକ-୧୦ରେ ମୁଦ୍ରିତ ।

ଠିକଣା : 'ଉତ୍କଳ ପ୍ରସଙ୍ଗ', ରାଜ୍ୟ ସୂଚନା ଓ ଲୋକ ସମ୍ପର୍କ ବିଭାଗ, ଲୋକ ସମ୍ପର୍କ ଭବନ, ଭୁବନେଶ୍ୱର-୭୫୧୦୦୧

ଇ-ମେଲ୍ : iprsec@rediffmail.com, ୱେବ୍‌ସାଇଟ୍ : www.odisha.gov.in
ଫୋନ୍ : ୦୬୭୪-୨୫୩୦୨୧୧

ପ୍ରତିଖଣ୍ଡ : ଟ. ୫.୦୦




## ଫେବୃଆରୀ–ମାର୍ଚ୍ଚ – ୨୦୧୯





# ଶ୍ରଦ୍ଧାଞ୍ଜଳି



ମହାନ୍ ଜନନାୟକ ବିଜୁ ପଟ୍ଟନାୟକ

# ସମ୍ପାଦକୀୟ





ଭାରତୀୟ ବାୟୁ ସେନାର ୱିଙ୍ଗ୍ କମାଣ୍ଡର୍

ଅଭିନନ୍ଦନ ବର୍ତ୍ତମାନ

**ଆପଣଙ୍କ ପାଇଁ ସମଗ୍ର ଦେଶବାସୀଙ୍କ ସହିତ ଓଡ଼ିଶା ମଧ୍ୟ ଗର୍ବିତ ।**

ସମ୍ପାଦକ

# ରାଜ୍ୟ ସରକାରଙ୍କର ପ୍ରମୁଖ ଜନକଲ୍ୟାଣକାରୀ ଯୋଜନା

୨୦୧୪ ମସିହାର ସାଧାରଣ ନିର୍ବାଚନ ପୂର୍ବରୁ ଆମ ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ନବୀନ ପଟ୍ଟନାୟକ ଓଡ଼ିଶାର ପ୍ରଗତି ନିମନ୍ତେ ଏକାଧିକ ଜନହିତକର କାର୍ଯ୍ୟ ପାଇଁ ରାଜ୍ୟବାସୀଙ୍କ ନିକଟରେ ପ୍ରତିଶ୍ରୁତିବଦ୍ଧ ହୋଇଥିଲେ। ପ୍ରବାଦପୁରୁଷ ବିଜୁ ପଟ୍ଟନାୟକଙ୍କ ଆଦର୍ଶ ଏବଂ ରାଜ୍ୟବାସୀଙ୍କ ପାଇଁ ସେ ଦେଖିଥିବା ବିକାଶର ସ୍ୱପ୍ନକୁ ସାକାର କରିବା ପାଇଁ ଆମ ମୁଖ୍ୟମନ୍ତ୍ରୀ ବହୁ ଜନକଲ୍ୟାଣକାରୀ ଯୋଜନା ହାତକୁ ନେଇଥିଲେ ଓ ଏ ଭିତରେ ସେସବୁର ସଫଳ ରୂପାୟନ କରାଯିବା ନିମନ୍ତେ ରାଜ୍ୟ ସରକାର ନିଜର ପ୍ରୟାସ ଜାରି ରଖିଛନ୍ତି। 'ସୁସ୍ଥ ଓଡ଼ିଶା ସୁଖୀ ଓଡ଼ିଶା' ଚିନ୍ତନକୁ ନିଶ୍ଚିତ କରିବା ପାଇଁ 'ବିଜୁ ସ୍ୱାସ୍ଥ୍ୟ କଲ୍ୟାଣ ଯୋଜନା', କୃଷକଙ୍କ ଉନ୍ନତି ପାଇଁ 'କାଳିଆ' ଯୋଜନା, ଗାଁ ଓ ପଞ୍ଚାୟତର ଉନ୍ନତି ପାଇଁ 'ଆମ ଗାଁ, ଆମ ବିକାଶ' କାର୍ଯ୍ୟକ୍ରମ, ସରକାରଙ୍କ ବିଭିନ୍ନ ଯୋଜନା ସମ୍ପର୍କରେ ଜନସାଧାରଣଙ୍କୁ ସଚେତନ କରିବା ସହିତ ସେବା ପ୍ରଦାନ ପାଇଁ 'ପିଠା' କାର୍ଯ୍ୟକ୍ରମ, ମହିଳାଙ୍କ ସଶକ୍ତିକରଣ ପାଇଁ 'ମିଶନ ଶକ୍ତି', ସମସ୍ତଙ୍କୁ ଆଶ୍ରୟ ସୁରକ୍ଷା ପାଇଁ ପକ୍କାଘର ଯୋଜନା, ଜାତୀୟ ଖାଦ୍ୟ ସୁରକ୍ଷା ଯୋଜନାରୁ ବଞ୍ଚିତ ସବୁ ଯୋଗ୍ୟ ଗରିବ ଲୋକଙ୍କ ପାଇଁ ନିଜସ୍ୱ ଖାଦ୍ୟ ସୁରକ୍ଷା ଯୋଜନା ଆମ ମୁଖ୍ୟମନ୍ତ୍ରୀଙ୍କ ଦୂରଦୃଷ୍ଟିସମ୍ପନ୍ନ ଚିନ୍ତାଧାରା ସହିତ ଓଡ଼ିଶାବାସୀଙ୍କ ସାମଗ୍ରିକ ବିକାଶ ପାଇଁ ତାଙ୍କର ଉତ୍ସୁକତା, ଆନ୍ତରିକତା ଓ ପ୍ରତିବଦ୍ଧତାର ପରିପ୍ରକାଶ।

ରାଜ୍ୟ ସରକାରଙ୍କର ପ୍ରମୁଖ ଜନକଲ୍ୟାଣକାରୀ ଯୋଜନା, ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟକ୍ରମର ସୁଫଳ କିପରି ରାଜ୍ୟର ଜନସାଧାରଣଙ୍କ ନିକଟରେ ପହଞ୍ଚିଛି, କେଉଁ ଯୋଜନାରେ କେତେ ଲକ୍ଷ୍ୟ ଧାର୍ଯ୍ୟ କରାଯିବା ସହିତ ଅଭିଳଷିତ ଲକ୍ଷ୍ୟ କେତେ ମାତ୍ରାରେ ହାସଲ କରାଯାଇପାରିଛି ଏବଂ ଯୋଜନା ସବୁକୁ କାର୍ଯ୍ୟକାରୀ କରିବାରେ କିଭଳି ଜନ ସମର୍ଥନ ଏବଂ ସହଯୋଗ ମିଳିଛି, ସେ ସବୁକୁ ଏକାଠି କରି ଏକ ନିଆରା ଢଙ୍ଗରେ 'ଉତ୍କଳ ପ୍ରସଙ୍ଗ'ରେ ଉପସ୍ଥାପନ କରାଯାଇଛି।





"ସାଢେ ଚାରି କୋଟି ଓଡ଼ିଶାବାସୀ ହେଉଛନ୍ତି ମୋ' ପରିବାର"

– ନବୀନ ପଟ୍ଟନାୟକ




ମହାତ୍ମା ଗାନ୍ଧୀଙ୍କ ଅହିଂସା ତତ୍ତ୍ୱର ସବୁଠୁ ଗୁରୁତ୍ୱପୂର୍ଣ୍ଣ ଦିଗଟି ହେଉଛି ଯେ ଦାରିଦ୍ର୍ୟ ଓ ସାମାଜିକ ଅବିଚାର ସବୁଠାରୁ ବଡ ହିଂସା । ଗାନ୍ଧିଜୀଙ୍କ ମତରେ ଯେ ପର୍ଯ୍ୟନ୍ତ ଦାରିଦ୍ର୍ୟ ରହିଥିବ, ସ୍ୱାଧୀନତାର ମୂଲ୍ୟ ଅର୍ଥହୀନ । ଦାରିଦ୍ର୍ୟ ଦୂରୀକରଣ ଯେ କୌଣସି ସରକାର ପାଇଁ ସବୁଠାରୁ ବଡ ଆହ୍ୱାନ । ବିନା ଅହିଂସାରେ ଏହା ହାସଲ କରାଯାଇପାରିବ ନାହିଁ । ପ୍ରଗତି ପାଇଁ ଶାନ୍ତି ଅପରିହାର୍ଯ୍ୟ । ଜାତି, ଧର୍ମ, ବର୍ଣ୍ଣ ଭିତ୍ତିରେ ସମାଜକୁ ବିଭକ୍ତ କରୁଥିବା ଶକ୍ତିର ପରାଜୟରେ ହିଁ ପ୍ରଗତି ହାସଲ କରାଯାଇପାରିବ । ଗାନ୍ଧିଜୀଙ୍କର ୧୫୦ ତମ ଜନ୍ମବାର୍ଷିକୀ ପାଳନ ଅବସରରେ 'ଅହିଂସା' ଶବ୍ଦ ଭାରତୀୟ ସମ୍ବିଧାନର ମୁଖବନ୍ଧରେ ସ୍ଥାନିତ ହେଲେ ତାହା ଆମର ଗାନ୍ଧିଜୀଙ୍କ ପ୍ରତି ଶ୍ରେଷ୍ଠ ଶ୍ରଦ୍ଧାଞ୍ଜଳି ହେବ ବୋଲି ମୋର ଦୃଢ ବିଶ୍ୱାସ । ଏହା ଭାରତ ତଥା ବିଶ୍ୱର ଉତ୍ତର ପିଢିକୁ ଗାନ୍ଧିଜୀଙ୍କର ଏହି ଉକ୍ତିର ଗୂଢ ସତ୍ୟତା ସ୍ମରଣ କରାଇ ଦେଉଥିବ ।

ନବୀନ ପଟ୍ଟନାୟକ



# ସମସ୍ତଙ୍କ ପାଇଁ ପକ୍କାଘର




**ଗ୍ରାମାଞ୍ଚଳର ସବୁ କଚ୍ଚାଘରକୁ ପକ୍କାଘରରେ ପରିଣତ କରିବା ଆମର ଲକ୍ଷ୍ୟ । ୨୦୧୪ ମସିହାଠାରୁ ଆଜି ପର୍ଯ୍ୟନ୍ତ ଆମେ ଗ୍ରାମାଞ୍ଚଳରେ ୨୦ ଲକ୍ଷ ପକ୍କାଘର ତିଆରି କରିଛୁ ।**

**- ନବୀନ ପଟ୍ଟନାୟକ**

୨୦୧୩ ମସିହା ଫାଇଲିନ୍ ସମୟରେ ପ୍ରାୟ ୧୦ ଲକ୍ଷ ଲୋକଙ୍କୁ ନିରାପଦ ସ୍ଥାନକୁ ସ୍ଥାନାନ୍ତରିତ କରାଯାଇଥିଲା । ସେତେବେଳେ ଲକ୍ଷ ଲକ୍ଷ ଲୋକମାନଙ୍କର ଏଭଳି ଦୁଃସ୍ଥିତି ଆମ ମୁଖ୍ୟମନ୍ତ୍ରୀଙ୍କୁ ଗଭୀର ଭାବେ ଆନ୍ଦୋଳିତ କରିଥିଲା । ସେ ଭାବିଥିଲେ, ହୁଏତ ମୁଣ୍ଡ ଗୁଞ୍ଜିବା ପାଇଁ ଖଣ୍ଡେ ପକ୍କାଘର ଥିଲେ ଅନ୍ତତଃ ବୁଢ଼ାବୁଢ଼ୀ, ଅସୁସ୍ଥ ଲୋକ, ଗାଈଗୋରୁ କାହାକୁ ହଇରାଣ ହେବାକୁ ପଡ଼ିନଥା'ନ୍ତା । ସେଇ ଭାବନାକୁ ସାକାର କରିବା ପାଇଁ ୨୦୧୪ ମସିହାରେ ଆମ ମୁଖ୍ୟମନ୍ତ୍ରୀ ନିଜର ଘର ନଥିବା ଏବଂ କଚ୍ଚାଘରେ ରହୁଥିବା ସବୁ ପରିବାରକୁ ପକ୍କାଘର ଖଣ୍ଡେ ଯୋଗାଇ ଦେବାର ପ୍ରତିଶ୍ରୁତି ଦେଇଥିଲେ । ୨୦୧୯ ସୁଦ୍ଧା ରାଜ୍ୟର ସବୁ ଯୋଗ୍ୟ ବିବେଚିତ ଗରିବ ପରିବାରକୁ ଆଶ୍ରୟ ସୁରକ୍ଷା ଯୋଗାଇଦେବା ପାଇଁ ଆମ ମୁଖ୍ୟମନ୍ତ୍ରୀ ଆରମ୍ଭ କଲେ **'ବିଜୁ ପକ୍କାଘର ଯୋଜନା'** । ଇତିମଧ୍ୟରେ ବିଜୁ ପକ୍କାଘର ଯୋଜନା, ବିଜୁ ପକ୍କାଘର ଯୋଜନା (ଖଣି ପ୍ରଭାବିତ ଅଂଚଳ) ଏବଂ ନିର୍ମାଣ ଶ୍ରମିକ ପକ୍କାଘର ଯୋଜନା, ମତ୍ସ୍ୟଜୀବୀଙ୍କ ପାଇଁ ଗୃହ ନିର୍ମାଣ ଯୋଜନାରେ ଲକ୍ଷାଧିକ ହିତାଧିକାରୀମାନଙ୍କ ପାଇଁ ଘର ତିଆରି କରାଯାଇ ସାରିଲାଣି । ଗଞ୍ଜାମ ଓ ଖୋର୍ଦ୍ଧା ଜିଲ୍ଲାର ଫାଇଲିନ୍ କ୍ଷତିଗ୍ରସ୍ତ ପରିବାରଙ୍କ ପାଇଁ ମଧ୍ୟ ୧୬,୫୮୬ଟି ବିପର୍ଯ୍ୟୟ ପ୍ରତିରୋଧକ ବାସଗୃହ ନିର୍ମାଣ କରାଯାଇଛି ।




ଗ୍ରାମାଂଚଳ ଗରିବଙ୍କ ପାଇଁ ପକ୍କାଘର ନିର୍ମାଣ କ୍ଷେତ୍ରରେ ଓଡ଼ିଶା ଭାରତର ଏକ ଅଗ୍ରଣୀ ରାଜ୍ୟ ଭାବେ ପରିଗଣିତ ହୋଇଛି । ବିଜୁ ପକ୍କାଘର ଓ ଅନ୍ୟାନ୍ୟ ଯୋଜନାରେ ବିଗତ ୪ ବର୍ଷ ମଧ୍ୟରେ ରାଜ୍ୟରେ ୨୦ ଲକ୍ଷରୁ ଊର୍ଦ୍ଧ୍ୱ ପକ୍କାଘର ନିର୍ମାଣ କରାଯାଇଛି । କେନ୍ଦ୍ରୀୟ ଯୋଜନାରେ ନିର୍ମାଣ କରାଯାଉଥିବା ଘର ପାଇଁ ରାଜ୍ୟ ସରକାର ୪୦ ପ୍ରତିଶତ ଅର୍ଥ ଯୋଗାଇ ଦେବା ସହିତ ପକ୍କାଘରଗୁଡ଼ିକୁ ଶୀଘ୍ର ନିର୍ମାଣ କରିବା ପାଇଁ ହିତାଧିକାରୀଙ୍କୁ ପ୍ରୋତ୍ସାହନ ଦେବାର ବ୍ୟବସ୍ଥା କରିଛନ୍ତି । ୪ ମାସ ମଧ୍ୟରେ ଘର ତିଆରି ଶେଷ କଲେ ୨୦ ହଜାର ଟଙ୍କା ଓ ୬ ମାସରେ ଶେଷ କଲେ ୧୦ ହଜାର ଟଙ୍କା ଘରକରଣା ଜିନିଷ କିଣିବା ପାଇଁ ହିତାଧିକାରୀଙ୍କୁ ଯୋଗାଇ ଦିଆଯାଉଛି । ଶୀଘ୍ର ଘର ସାରିବା ପାଇଁ ହିତାଧିକାରୀଙ୍କୁ ପୁରସ୍କୃତ କରିବା ବ୍ୟବସ୍ଥା ଓଡ଼ିଶା ଛଡ଼ା ଅନ୍ୟ କୌଣସି ରାଜ୍ୟରେ ନାହିଁ ।

ସହରାଂଚଳ ଗରିବଙ୍କ ପାଇଁ ମଧ୍ୟ ବେଶ୍ ଦରଦୀ ଆମ ପ୍ରିୟ ମୁଖ୍ୟମନ୍ତ୍ରୀ । **'ଆବାସ'** ଯୋଜନା ମାଧ୍ୟମରେ ସହରାଂଚଳରେ ସୁଲଭ ମୂଲ୍ୟରେ ମିଳୁଛି ପକ୍କାଘର । ଏହା ଭୁବନେଶ୍ୱର, କଳିଙ୍ଗନଗର, ଝାରସୁଗୁଡା, ସମ୍ବଲପୁର, ବ୍ରହ୍ମପୁର, ରାଉରକେଲା, ଢେଙ୍କାନାଳ ଓ ରାୟଗଡା ସହରାଂଚଳର ଗରିବମାନଙ୍କୁ ଯୋଗାଇ ଦିଆଯାଉଛି ।

ଆମ ମୁଖ୍ୟମନ୍ତ୍ରୀ ୨୦୧୬ ମସିହାରେ ଗ୍ରାମାଞ୍ଚଳରେ କାର୍ଯ୍ୟରତ ନିର୍ମାଣ ଶ୍ରମିକଙ୍କୁ ୫୦ ହଜାର ପକ୍କାଘର ଯୋଗାଇଦେବା ପାଇଁ ଏକ ଐତିହାସିକ ନିଷ୍ପତ୍ତି ଗ୍ରହଣ କରି **ନିର୍ମାଣ ଶ୍ରମିକ ପକ୍କାଘର ଯୋଜନା**ର ଶୁଭାରମ୍ଭ କରିଥିଲେ । ରାଜ୍ୟର ୧୪ଟି ଆଇ.ଏ.ପି. ଜିଲ୍ଲା ପାଇଁ ୧ ଲକ୍ଷ ୩୦ ହଜାର ଓ ଅନ୍ୟ ଅଣ ଆଇ.ଏ.ପି. ଜିଲ୍ଲା ପାଇଁ ୧ ଲକ୍ଷ ୨୦ ହଜାର ଟଙ୍କା ଗୃହ ନିର୍ମାଣ ସହାୟତା ପ୍ରଦାନ କରାଯାଉଛି । ରାଜ୍ୟରେ ଏବେ ଗ୍ରାମାଞ୍ଚଳ ଲୋକଙ୍କର ପ୍ରାକୃତିକ ବିପର୍ଯ୍ୟୟ ବେଳେ ଗୃହଶୂନ୍ୟ ହୋଇଯିବାର ଭୟ ଆଉ ନାହିଁ, ବରଂ ବିଜୁ ପକ୍କାଘର ଏବେ ସେମାନଙ୍କ ଆଶା ।

ସହରାଞ୍ଚଳରେ କାର୍ଯ୍ୟ କରୁଥିବା ପ୍ରବାସୀ ନିର୍ମାଣ ଶ୍ରମିକମାନଙ୍କୁ ସ୍ୱଳ୍ପ ଦେୟରେ ସାମୟିକ ରହଣି ପ୍ରଦାନ ନିମନ୍ତେ **'ଆଶ୍ରୟ ଯୋଜନା'**ର ଶୁଭାରମ୍ଭ କରାଯାଇଛି । ପ୍ରଥମ ପର୍ଯ୍ୟାୟରେ ୫ଟି ମହାନଗର ନିଗମ ଯଥା ଭୁବନେଶ୍ୱର, କଟକ, ବ୍ରହ୍ମପୁର, ସମ୍ବଲପୁର, ରାଉରକେଲା ଏବଂ ୫ଟି ପୌରାଞ୍ଚଳ ଯଥା ବ୍ୟାସନଗର, ଅନୁଗୋଳ, ଢେଙ୍କାନାଳ, ଝାରସୁଗୁଡା, ପାରାଦ୍ୱୀପଠାରେ ଏହି ଆଶ୍ରୟସ୍ଥଳୀ ନିର୍ମାଣ କରାଯାଉଅଛି ।

ଏବେ ଲକ୍ଷ୍ୟ ରଖିଛନ୍ତି ମୁଖ୍ୟମନ୍ତ୍ରୀ, ସବୁ କଚ୍ଚାଘରକୁ ଛାତ ଘରରେ ପରିବର୍ତ୍ତନ କରାଇବେ । ଲୋକଙ୍କୁ ତାଙ୍କ ପକ୍କାଘରର ଅଧିକାର ଦେବେ । ବଦଳିବ ଓଡ଼ିଶା ଆଉ ପୂରଣ ହେବ ଲୋକଙ୍କ ଆଶା ।

## ସମସ୍ତଙ୍କ ପାଇଁ ଖାଦ୍ୟ ସୁରକ୍ଷା

**''ଜଣେ ବି ଗରିବ ଲୋକଙ୍କୁ ଖାଦ୍ୟ ସୁରକ୍ଷାରୁ ବଞ୍ଚିତ ହେବାକୁ ମୁଁ ଦେବି ନାହିଁ ।''**

**– ନବୀନ ପଟ୍ଟନାୟକ**






୨୦୧୩ ମସିହାରୁ ଆରମ୍ଭ ହେଲା ଜାତୀୟ ଖାଦ୍ୟ ସୁରକ୍ଷା ଆଇନ୍ । ବଞ୍ଚିତ ହୋଇଥିବା ବହୁ ଯୋଗ୍ୟ ହିତାଧିକାରୀ ଅନ୍ତର୍ଭୁକ୍ତ ହୋଇପାରିନାହାନ୍ତି ଜାତୀୟ ଖାଦ୍ୟ ସୁରକ୍ଷା ଯୋଜନାରେ, ପାଉ ନାହାନ୍ତି ଖାଦ୍ୟ ସୁରକ୍ଷା ।

ଜଣେ ବି ଗରିବ ଲୋକ ଖାଦ୍ୟ ସୁରକ୍ଷାରୁ ବଞ୍ଚିତ ହେବେ ନାହିଁ ବୋଲି ଆମ ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ନବୀନ ପଟ୍ଟନାୟକ ଘୋଷଣା କରିଛନ୍ତି ଏବଂ ତଦନୁଯାୟୀ ରାଜ୍ୟ ସରକାର ନିଜସ୍ୱ ସମ୍ବଳରୁ ୨୦୧୮ ମସିହା ଅକ୍ଟୋବର ୨ ତାରିଖ ଗାନ୍ଧୀ ଜୟନ୍ତୀରୁ ରାଜ୍ୟରେ **'ନିଜସ୍ୱ ଖାଦ୍ୟ ସୁରକ୍ଷା ଯୋଜନା'**ର ଶୁଭାରମ୍ଭ କରିଛନ୍ତି । ୨୩ଲକ୍ଷ ହିତାଧିକାରୀ ଏହି ଯୋଜନାରେ ନୂତନ ରାସନ କାର୍ଡ ଏ ଭିତରେ ପାଇସାରିଲେଣି । ଏଥିପାଇଁ ରାଜ୍ୟ ସରକାର ବର୍ଷକୁ ୪୪୨ କୋଟି ଟଙ୍କା ଖର୍ଚ୍ଚ କରୁଛନ୍ତି ।

ଆଗକୁ ଯେପରି କୌଣସି ହେଲେ ଜଣେ ଯୋଗ୍ୟ ହିତାଧିକାରୀ ଏହି ଯୋଜନାରୁ ବାଦ୍ ନପଡନ୍ତି, ସେଥିପାଇଁ ସ୍ୱତନ୍ତ୍ର ଧ୍ୟାନ ଦେବା ପାଇଁ ମୁଖ୍ୟମନ୍ତ୍ରୀ ସ୍ପଷ୍ଟ ଭାବରେ ନିର୍ଦ୍ଦେଶ ଦେଇଛନ୍ତି । ରାଜ୍ୟ ସରକାରଙ୍କ ନିଜସ୍ୱ ଖାଦ୍ୟ ସୁରକ୍ଷା ଯୋଜନାରେ ରାସନ କାର୍ଡ ପାଇଥିବା ପରିବାରକୁ ମୁଣ୍ଡପିଛା ୫ କି.ଗ୍ରା. ହିସାବରେ ଚାଉଳ ମିଳୁଛି ।

କିନ୍ନରମାନଙ୍କୁ ରାଜ୍ୟର ନିଜସ୍ୱ ଖାଦ୍ୟ ସୁରକ୍ଷା ଯୋଜନାରେ ଅନ୍ତର୍ଭୁକ୍ତ କରାଯାଇଛି । ସେହିପରି କୁଷ୍ଠ ରୋଗୀ, ଏଡ୍ସ ଆକ୍ରାନ୍ତ, ଅନ୍ୟାନ୍ୟ ଗୁରୁତର ରୋଗରେ ପୀଡିତ ନିରାଶ୍ରୟ ବ୍ୟକ୍ତିମାନଙ୍କୁ ମଧ୍ୟ ଏହି ଯୋଜନାରେ ସାମିଲ କରାଯାଇଛି ।

ରାଜ୍ୟ ସରକାରଙ୍କ ଖାଦ୍ୟ ସୁରକ୍ଷା ଯୋଜନାରେ ଯୋଗ୍ୟ ହିତାଧିକାରୀ ଚିହ୍ନଟ ଏକ ନିରନ୍ତର ପ୍ରକ୍ରିୟା । ଯେତେ ହିତାଧିକାରୀ ଏହି ଯୋଜନାରେ ବିଭିନ୍ନ ସମୟରେ ଯୋଗ୍ୟ ବିବେଚିତ ହେବେ, ସେମାନଙ୍କୁ ତୁରନ୍ତ ରାସନ କାର୍ଡ ଏବଂ ଚାଉଳ ଯୋଗାଇ ଦିଆଯିବ । ସହରାଂଚଳକୁ ବିଭିନ୍ନ କାର୍ଯ୍ୟ ପାଇଁ ଆସୁଥିବା ଅଭାବୀ ଲୋକମାନଙ୍କୁ ୫ ଟଙ୍କାରେ ସୁଲଭ ଭୋଜନ




ଯୋଗାଇ ଦେବା ପାଇଁ ଆମ ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ନବୀନ ପଟ୍ଟନାୟକ ୨୦୧୫ ମସିହାରେ ଆରମ୍ଭ କରିଥିଲେ **'ଆହାର'** ଯୋଜନା । ଏହି ଯୋଜନାରେ ରାଜ୍ୟର ପ୍ରମୁଖ ସହରାଂଚଳରେ ପ୍ରତିଦିନ ପ୍ରାୟ ୧ଲକ୍ଷ ଲୋକଙ୍କୁ ୧୫୭ଟି କେନ୍ଦ୍ରରେ ରନ୍ଧାଖାଦ୍ୟ ଯୋଗାଇ ଦିଆଯାଉଛି । ପ୍ରତି ବର୍ଷ ପ୍ରାୟ ୨ କୋଟିରୁ ଅଧିକ ଲୋକ ଏହି ଯୋଜନାରେ ଉପକୃତ ହେଉଛନ୍ତି । ସହରକୁ ବିଭିନ୍ନ କାମରେ ଆସୁଥିବା ଗରିବ ଲୋକଙ୍କ ପାଇଁ ଆଶୀର୍ବାଦ ସ୍ୱରୂପ ହୋଇଛି ଆହାର । ୫ଟଙ୍କାରେ **'ଆହାର'** ଆଣି ଦେଇଛି ଅଭାବୀ ଲୋକଙ୍କୁ ସହରରେ ଖାଦ୍ୟ ସୁରକ୍ଷା । ଆବଶ୍ୟକତାକୁ ଅନୁଭବ କରି ଏହି କାର୍ଯ୍ୟକ୍ରମକୁ ନୂଆ ନୂଆ ସହରାଞ୍ଚଳରେ ଆରମ୍ଭ କରୁଛନ୍ତି ଆମ ମୁଖ୍ୟମନ୍ତ୍ରୀ । ବର୍ତ୍ତମାନ ରାଜ୍ୟର ସମସ୍ତ ଜିଲ୍ଲାର ୧୧୪ଟି ସହରାଞ୍ଚଳରେ ଆହାର କେନ୍ଦ୍ର ଖୋଲାଯାଇଛି । ଏଥି ସହିତ ମୁଖ୍ୟମନ୍ତ୍ରୀ ରାଜ୍ୟର ବିଭିନ୍ନ ପୌରାଞ୍ଚଳର ଡାକ୍ତରଖାନା ନିକଟରେ ଥିବା ଆହାର କେନ୍ଦ୍ରଗୁଡିକରେ ଦିବା ଆହାର ସହିତ ରାତ୍ରିକାଳୀନ ଆହାର ବ୍ୟବସ୍ଥାକୁ ସାମିଲ କରିଛନ୍ତି । ଡାକ୍ତରଖାନାକୁ ଦୂରଦୂରାନ୍ତରୁ ଆସୁଥିବା ରୋଗୀମାନଙ୍କ ସମ୍ପର୍କୀୟଙ୍କ ସମେତ ଲକ୍ଷାଧିକ ଲୋକ ଏହାଦ୍ୱାରା ଉପକୃତ ହେଉଛନ୍ତି ।

ଲୋକଙ୍କ ପାଇଁ ଏ ସରକାର, ତେଣୁ ଲୋକଙ୍କ କଲ୍ୟାଣ ପାଇଁ ଯାହା ଯାହା ଦରକାର, ଆମ ମୁଖ୍ୟମନ୍ତ୍ରୀ ସେସବୁଥିରେ ଆଗଭର ।

# ସମସ୍ତଙ୍କ ପାଇଁ ସାମାଜିକ ସୁରକ୍ଷା

ରାଜ୍ୟର ବୁଢାବୁଢୀ, ବିଧବା, ଭିନ୍ନକ୍ଷମମାନଙ୍କୁ ସାମାଜିକ ସୁରକ୍ଷା ଯୋଗାଇ ଦେବା ପାଇଁ **ମଧୁବାବୁ ପେନ୍‌ସନ୍ ଯୋଜନା** ୨୦୦୮ ମସିହାରେ ଆରମ୍ଭ କରିଥିଲେ ଆମ ପ୍ରିୟ ମୁଖ୍ୟମନ୍ତ୍ରୀ । ଆମ ରାଜ୍ୟରେ ୪୩.୫ ଲକ୍ଷ ହିତାଧିକାରୀ ପ୍ରତି ମାସରେ ପେନ୍‌ସନ୍ ପାଉଥିବା ବେଳେ ଆଉ ୫ ଲକ୍ଷ ଅଧିକ ନୂଆ ହିତାଧିକାରୀଙ୍କୁ **ମଧୁବାବୁ ପେନ୍‌ସନ୍ ଯୋଜନା**ରେ ଭତ୍ତା ଦେବା ପାଇଁ ଘୋଷଣା କରିଛନ୍ତି ଆମ ମୁଖ୍ୟମନ୍ତ୍ରୀ । **'ମଧୁବାବୁ ପେନ୍‌ସନ୍ ଯୋଜନା'**ରେ ସବୁ ୪୮ ଲକ୍ଷରୁ ଅଧିକ ହିତାଧିକାରୀଙ୍କ ପାଇଁ ମାସିକ ପେନ୍‌ସନ ପରିମାଣକୁ ସେ ଏବେ ୨୦୦ ଟଙ୍କା ବଢେଇ ଦେଇଛନ୍ତି ଆମ ମୁଖ୍ୟମନ୍ତ୍ରୀ । ୩ ଶହ ଟଙ୍କା ପାଉଥିବା ସବୁ ଭତ୍ତାଧିକାରୀଙ୍କୁ ମାସକୁ ୫ ଶହ ଟଙ୍କା ଏବଂ ୮୦ ବର୍ଷ ବୟସରୁ ଅଧିକ ବୁଢାବୁଢୀଙ୍କୁ ଏଣିକି ମାସକୁ ୭୦୦ ଟଙ୍କା ମିଳିବ । ୨୦୧୯ ଫେବୃଆରୀ ମାସରୁ ଏହି ନୂଆ ଭତ୍ତା ଦିଆଯିବା ପାଇଁ ଆମ ମୁଖ୍ୟମନ୍ତ୍ରୀ ନିକଟରେ ଘୋଷଣା କରିଛନ୍ତି । ଏଥି ସହିତ ଯେକୌଣସି ଜଣେ ଯୋଗ୍ୟ ହିତାଧିକାରୀ ଯେପରି ଏହି ଯୋଜନାର ପରିସର ବାହାରେ ନ ରହେ, ସେଥିପାଇଁ ସେ ପେନ୍‌ସନ୍ ଯୋଜନାକୁ ସାର୍ବଜନୀନ କରାଯିବା ପାଇଁ ନିଷ୍ପତ୍ତି ଗ୍ରହଣ କରିଛନ୍ତି ।




ଏଣିକି ଆଉ ଭତ୍ତା ପାଇବା ପାଇଁ ସରକାରଙ୍କ ଧାର୍ଯ୍ୟ ଲକ୍ଷ୍ୟ ବୋଲି କିଛି ନାହିଁ, ଲୋକଟିଏ ପେନ୍‌ସନ୍ ପାଇବା ପାଇଁ ଯୋଗ୍ୟ ହେଉହେଉ ତାକୁ ତୁରନ୍ତ ପେନ୍‌ସନ୍ ମିଳିବ ।

**'ନିର୍ମାଣ ଶ୍ରମିକ କଲ୍ୟାଣ ବୋର୍ଡ'** ଜରିଆରେ ନିର୍ମାଣ ଶ୍ରମିକ ଏବଂ ସେମାନଙ୍କ ପରିବାରକୁ ସଶକ୍ତ କରାଇବା ପାଇଁ ପ୍ରତିବଦ୍ଧ ଆମ ପ୍ରିୟ ମୁଖ୍ୟମନ୍ତ୍ରୀ ।

୨୦୧୪ରୁ ଆଜି ପର୍ଯ୍ୟନ୍ତ ନିର୍ମାଣ ଶ୍ରମିକ କଲ୍ୟାଣ ବୋର୍ଡରେ ୧୮ରୁ ୬୦ ବର୍ଷର ୨୫ ଲକ୍ଷ ୧୭ ହଜାର ନିର୍ମାଣ ଶ୍ରମିକ ପଞ୍ଜିକୃତ ହୋଇଥିବା ବେଳେ ସେମାନଙ୍କ ମଧ୍ୟରୁ ୧୫ ଲକ୍ଷରୁ ଊର୍ଦ୍ଧ୍ୱ ଶ୍ରମିକଙ୍କୁ ସାମାଜିକ ସୁରକ୍ଷା ଏବଂ କାର୍ଯ୍ୟକ୍ଷେତ୍ରରେ ନିରାପତ୍ତା ଯୋଗାଇ ଦିଆଯାଇଛି ।

ନିର୍ମାଣ ଶ୍ରମିକ ପରିବାରର ପିଲାମାନଙ୍କର ଶିକ୍ଷା ପାଇଁ ଆମ ମୁଖ୍ୟମନ୍ତ୍ରୀ ଆରମ୍ଭ କରିଛନ୍ତି ଛାତ୍ରବୃତ୍ତି ଏବଂ **ସ୍ୱତନ୍ତ୍ର ଶିକ୍ଷା ସହାୟତା** । ସେମାନଙ୍କୁ ଉପଯୁକ୍ତ ଶିକ୍ଷା ଲାଭ କରିବାର ସବୁ ସୁବିଧା ସୁଯୋଗ ଦେବା ପାଇଁ ଉତ୍ତରଦାୟିତ୍ୱ ଗ୍ରହଣ କରିଛନ୍ତି ଓଡ଼ିଶା ସରକାର ।

ନିର୍ମାଣ ଶ୍ରମିକଙ୍କ ପିଲାମାନଙ୍କୁ ବୈଷୟିକ ଶିକ୍ଷାରେ ସହାୟତା ପ୍ରଦାନ କରିବା ଲକ୍ଷ୍ୟ ନେଇ ରାଜ୍ୟ ସରକାର **'ନିର୍ମାଣ କୁସୁମ ଯୋଜନା'** ଆରମ୍ଭ କରିଛନ୍ତି। ୨୦୧୮ ଅକ୍ଟୋବର ୬ ତାରିଖରେ ଆମ ପ୍ରିୟ ମୁଖ୍ୟମନ୍ତ୍ରୀ ନିର୍ମାଣ ଶ୍ରମିକ ପରିବାରର ୫୦୦ ଜଣ ଛାତ୍ରଛାତ୍ରୀଙ୍କୁ ସହାୟତା ପ୍ରଦାନ କରି ନିର୍ମାଣ କୁସୁମ ଯୋଜନାର ଶୁଭାରମ୍ଭ କରିଥିଲେ।

ନିର୍ମାଣ ଶ୍ରମିକଙ୍କର ୨ ଗୋଟି କନ୍ୟା ଏବଂ ଅବିବାହିତା ମହିଳା ନିର୍ମାଣ ଶ୍ରମିକଙ୍କ ପାଇଁ ୨୫ ହଜାର ଟଙ୍କାର ବିବାହକାଳୀନ ସହାୟତା, ମହିଳା ନିର୍ମାଣ ଶ୍ରମିକଙ୍କୁ ସର୍ବାଧିକ ୨ ପର୍ଯ୍ୟନ୍ତ ସନ୍ତାନ ପ୍ରସବ ପାଇଁ ପ୍ରସୂତିକାଳୀନ ସହାୟତା ବାବଦରେ ୧୦ ହଜାର ଟଙ୍କା, ନିର୍ମାଣ ଶ୍ରମିକମାନଙ୍କୁ ଯନ୍ତ୍ରପାତି କ୍ରୟ ନିମନ୍ତେ ସର୍ବାଧିକ ୪ ହଜାର ଟଙ୍କା ପର୍ଯ୍ୟନ୍ତ ସହାୟତା, ସାଇକେଲ କିଣିବା ନିମନ୍ତେ ସର୍ବାଧିକ ୪ ହଜାର ଟଙ୍କାର ସହାୟତା, କାର୍ଯ୍ୟକ୍ଷେତ୍ରରେ ସୁରକ୍ଷା ଦେବା ନିମନ୍ତେ ଜୋତା, ହେଲମେଟ୍, ଗ୍ଲୋଭସ୍ ଆଦି ବାବଦରେ ୧ ହଜାର ଟଙ୍କା ସହାୟତା ପ୍ରଦାନ କରାଯାଉଛି ।



ସେହିପରି ଦୁର୍ଘଟଣାରେ ସଂପୂର୍ଣ୍ଣ ଅକ୍ଷମ ହେଲେ ୧ଲକ୍ଷ ୫୦ ହଜାର ଟଙ୍କା, ଗୋଟିଏ ଅଙ୍ଗ ସଂପୂର୍ଣ୍ଣ ହରାଇଥିବା କିମ୍ବା ଗୋଟିଏ ଚକ୍ଷୁ ଦୃଷ୍ଟିହୀନ ହେଲେ ୮୦ ହଜାର ଟଙ୍କା ଓ ୨ଟି ଅଙ୍ଗପ୍ରତ୍ୟଙ୍ଗ ବା ଚକ୍ଷୁ ନ ହରାଇ ସଂପୂର୍ଣ୍ଣ ଅକ୍ଷମ ହେଲେ ୪୦ ହଜାର ଟଙ୍କା ଆର୍ଥିକ ସହାୟତା ଆକାରରେ ପ୍ରଦାନ କରାଯାଉଛି। ଦୁର୍ଘଟଣା ଯୋଗୁଁ ୫ ଦିନ ବା ତଦୂର୍ଦ୍ଧ୍ୱ ସମୟ ଚିକିତ୍ସାଳୟରେ ଚିକିତ୍ସିତ ହେଲେ ସର୍ବାଧିକ ୧ ହଜାର ଟଙ୍କା ପର୍ଯ୍ୟନ୍ତ ଦୁର୍ଘଟଣାଜନିତ ସହାୟତା ଯୋଗାଇ ଦିଆଯାଉଛି।

ବୟସ ନିର୍ବିଶେଷରେ ପରିବାରର ଭିନ୍ନକ୍ଷମ, ବିଧବା ଏବଂ ୬୦ରୁ ୮୦ ବର୍ଷର ନିର୍ମାଣ ଶ୍ରମିକଙ୍କୁ ୩୦୦ ଟଙ୍କା ଏବଂ ୮୦ବର୍ଷ କିମ୍ବା ତଦୂର୍ଦ୍ଧ୍ୱ ବ୍ୟକ୍ତିଙ୍କୁ ୫ଶହ ଟଙ୍କା ଲେଖାଏଁ ପେନ୍‌ସନ୍ **ନିର୍ମାଣ ଶ୍ରମିକ ପେନ୍‌ସନ ଯୋଜନା**ରେ ଦିଆଯାଉଛି।

ଗଲା ବର୍ଷ କେନ୍ଦୁପତ୍ର ସଂଗ୍ରହ ବାବଦରେ ୧୫୭.୩୭ କୋଟି ଟଙ୍କା ଏବଂ ବୁଦା ସଫେଇ ବାବଦରେ ୨୩.୯୨ କୋଟି ଟଙ୍କା ୮ଲକ୍ଷ କେନ୍ଦୁପତ୍ର ତୋଳାଳି ଏବଂ ୨୪ ହଜାର ବନ୍ଧାଳିଙ୍କ ବ୍ୟାଙ୍କ ଆକାଉଣ୍ଟରେ ଜମା କରାଯାଇଛି। 'କେରି' ସଂଗ୍ରହ ମୂଲ୍ୟର ଶତ ପ୍ରତିଶତ ହାରରେ ୧୫୯.୨୩ କୋଟି ଟଙ୍କା ବୋନସ୍ ଏବଂ ବନ୍ଧାଳି ତଥା ଋତୁକାଳୀନ କର୍ମଚାରୀଙ୍କୁ ପ୍ରୋତ୍ସାହନ ବାବଦରେ ୧୫.୩୦ କୋଟି ଟଙ୍କା ଦିଆଯାଇଛି। କେନ୍ଦୁପତ୍ର ତୋଳାଳି ଓ ବନ୍ଧାଳିମାନଙ୍କ ମୃତ୍ୟୁ

ଏବଂ ଅକ୍ଷମତା କ୍ଷେତ୍ରରେ ୧ ଲକ୍ଷ ଟଙ୍କାର ଅନୁକମ୍ପାମୂଳକ ସହାୟତା, ଦୁଇ ଜଣ ପର୍ଯ୍ୟନ୍ତ ଝିଅଙ୍କ ବିବାହ ନିମନ୍ତେ ୨୫ ହଜାର ଟଙ୍କା, ଦୁରାରୋଗ୍ୟ ରୋଗର ଚିକିତ୍ସା ସକାଶେ ୨ ଲକ୍ଷ ଟଙ୍କା ପର୍ଯ୍ୟନ୍ତ ସହାୟତା ନିମନ୍ତେ ଏକ କଲ୍ୟାଣ ଟ୍ରଷ୍ଟ ପାଣ୍ଠି ଗଠନ କରାଯାଇଛି ।

ସେହିପରି ଆମ ସରକାର ଶାଳପତ୍ର ସଂଗ୍ରହ ଉପରେ କ୍ୱିଣ୍ଟାଲ ପ୍ରତି ରହିଥିବା ୮୬ ଟଙ୍କାର ରୟାଲିଟିକୁ ସଂପୂର୍ଣ୍ଣ ରୂପେ ଛାଡ କରିଛନ୍ତି । ଏହାଦ୍ୱାରା ରାଜ୍ୟର ପ୍ରାୟ ୨୫ ଲକ୍ଷ ଶାଳପତ୍ର ସଂଗ୍ରହକାରୀ ଉପକୃତ ହେଉଛନ୍ତି ।

ଆମ ସରକାର **'ବରିଷ୍ଠ ବୁଣାକାର ସହାୟତା ଯୋଜନା'**ରେ ୬୦ ବର୍ଷରୁ ୮୦ ବର୍ଷ ବୟସ୍କ ବୁଣାକାରଙ୍କ ନିମନ୍ତେ ମାସିକ ୫୦୦ ଟଙ୍କା ଏବଂ ୮୦ ବର୍ଷରୁ ଉର୍ଦ୍ଧ୍ୱ ବୟସ୍କ ବୁଣାକାରମାନଙ୍କ ପାଇଁ ମାସିକ ୭୦୦ ଟଙ୍କା ହାରରେ ଆର୍ଥିକ ସହାୟତା ପ୍ରଦାନ କରୁଛନ୍ତି ।

## ସମସ୍ତଙ୍କ ପାଇଁ ସବୁଠି ସ୍ୱାସ୍ଥ୍ୟ ସେବା




ଆମ ମୁଖ୍ୟମନ୍ତ୍ରୀ ରାଜ୍ୟବାସୀଙ୍କ ପାଇଁ ସ୍ୱାସ୍ଥ୍ୟ ସେବା ପରିସରକୁ ବ୍ୟାପକ କରିଛନ୍ତି ଏବଂ ନିଜସ୍ୱ ସମ୍ବଳରେ ଏକ ସାର୍ବଜନୀନ ସ୍ୱାସ୍ଥ୍ୟ ସେବା କାର୍ଯ୍ୟକ୍ରମ **'ବିଜୁ ସ୍ୱାସ୍ଥ୍ୟ କଲ୍ୟାଣ ଯୋଜନା'** ଶୁଭାରମ୍ଭ କରି ଏହାକୁ ସଫଳତାର ସହିତ କାର୍ଯ୍ୟକାରୀ କରାଇଛନ୍ତି ।

**'ବିଜୁ ସ୍ୱାସ୍ଥ୍ୟ କଲ୍ୟାଣ ଯୋଜନା'** ୨ଟି ଉପାୟରେ ରାଜ୍ୟବାସୀଙ୍କୁ ସ୍ୱାସ୍ଥ୍ୟସେବା ଯୋଗାଉଛି । ପ୍ରଥମଟି ହେଲା ଆମ ରାଜ୍ୟର ୭୦ଲକ୍ଷ ଆର୍ଥିକ ଅନଗ୍ରସର ପରିବାରଙ୍କୁ ବାର୍ଷିକ ୫ ଲକ୍ଷ ଟଙ୍କା ଏବଂ ପରିବାରର ମହିଳା ସଦସ୍ୟଙ୍କୁ ବାର୍ଷିକ ୭ ଲକ୍ଷ ଟଙ୍କାର ଚିକିତ୍ସା ସହାୟତା ଯୋଗାଇ ଦିଆଯାଉଛି ।

ଦ୍ୱିତୀୟଟି ହେଲା ରାଜ୍ୟରେ ଥିବା ସ୍ୱାସ୍ଥ୍ୟ ଉପକେନ୍ଦ୍ରରୁ ଆରମ୍ଭ କରି ଜିଲ୍ଲା ମୁଖ୍ୟ ଚିକିତ୍ସାଳୟ ପର୍ଯ୍ୟନ୍ତ ସବୁଠି ସମସ୍ତଙ୍କ ପାଇଁ ବିନା ଖର୍ଚ୍ଚରେ ସ୍ୱାସ୍ଥ୍ୟସେବା ସୁବିଧା ଉପଲବ୍ଧ ହେବ । ଏହି ସୁବିଧା ଏବେ ରାଜ୍ୟର ସବୁ ବଡ ମେଡିକାଲ କଲେଜ ଓ ହସ୍ପିଟାଲରେ, ରାଜ୍ୟ ଭିତରେ ଓ ବାହାରେ ଥିବା ଅନୁବନ୍ଧିତ ଘରୋଇ ହସ୍ପିଟାଲରେ ମଧ୍ୟ ମିଳୁଛି ।




ସରକାରୀ ଡାକ୍ତରଖାନାକୁ ଚିକିତ୍ସା ପାଇଁ ଆସୁଥିବା ରୋଗୀମାନଙ୍କୁ ବିନା ଦେୟରେ ମିଳିବ ସବୁ ପ୍ରକାର ଔଷଧ । ଏହାକୁ ଦୃଷ୍ଟିରେ ରଖି ଆମ ମୁଖ୍ୟମନ୍ତ୍ରୀ ଆରମ୍ଭ କରିଥିଲେ **'ନିରାମୟ'** ଯୋଜନା । ସବୁ ରୋଗ ପାଇଁ ୩୨ଟି ଜିଲ୍ଲା ମୁଖ୍ୟ ଚିକିତ୍ସାଳୟ, ୩ଟି ମେଡିକାଲ କଲେଜ ଓ ହସ୍ପିଟାଲ ଏବଂ ୩୭୭ଟି ଗୋଷ୍ଠୀ ସ୍ୱାସ୍ଥ୍ୟକେନ୍ଦ୍ରରେ ଖୋଲାଯାଇଥିବା ପ୍ରାୟ ୫୦୦ଟି ଔଷଧ ବିତରଣ କେନ୍ଦ୍ରରେ ରୋଗୀଙ୍କୁ ନିରାମୟ ଯୋଜନାରେ ଆବଶ୍ୟକ ମୁତାବକ ଔଷଧ ଯୋଗାଇ ଦିଆଯାଉଛି । ଏହି ଯୋଜନାରେ ଇତିମଧ୍ୟରେ କୋଟିଏରୁ ଅଧିକ ଲୋକ ଉପକୃତ ହେଲେଣି । ଯେପରି ସବୁ ଡାକ୍ତରଖାନାରେ ନିରାମୟ ଯୋଜନାରେ ଔଷଧ ମିଳିବ, ସେଥିପାଇଁ ଆମ ସରକାର ଅଙ୍ଗୀକାରବଦ୍ଧ ।

ବିଭିନ୍ନ ରୋଗର ନିରୂପଣ ପାଇଁ **'ନିଦାନ'** କାର୍ଯ୍ୟକ୍ରମ ୨୦୧୮ରୁ ଆରମ୍ଭ କରାଯାଇଛି । ଏହି କାର୍ଯ୍ୟକ୍ରମ ସହାୟତାରେ ଉଚ୍ଚମାନର ପାଥୋଲୋଜି ପରୀକ୍ଷା, ଡିଜିଟାଲ ଏକ୍ସରେ, ସିଟି ସ୍କାନ ଏବଂ ଏମ୍.ଆର.ଆଇ. ପ୍ରଭୃତି ପରୀକ୍ଷା ସୁବିଧାରେ କରାଯାଉଛି । ଏଥିପାଇଁ ରାଜ୍ୟ ସରକାର ୫ ବର୍ଷରେ ୬୦୦ କୋଟି ଟଙ୍କା ଖର୍ଚ୍ଚ କରିବାର ଯୋଜନା ରଖିଛନ୍ତି ।

ରୋଗୀମାନଙ୍କ ପାଇଁ ବିନା ଖର୍ଚ୍ଚରେ ଡାୟାଲିସିସ୍ ଚିକିତ୍ସା ପାଇଁ **'ସହାୟ'** କାର୍ଯ୍ୟକ୍ରମ, ସହରାଞ୍ଚଳରେ ଗୁଣାତ୍ମକ ମାନର ଚିକିତ୍ସା ସୁବିଧା ବିଶେଷଜ୍ଞ ଡାକ୍ତରଙ୍କ ପରାମର୍ଶକ୍ରମେ ପାଇଁ **'ଆମ କ୍ଲିନିକ୍'** କାର୍ଯ୍ୟକ୍ରମ ଆରମ୍ଭ କରାଯାଇଛି ।

କର୍କଟ ରୋଗର ଚିକିତ୍ସା ପାଇଁ ପ୍ରତି ଜିଲ୍ଲାର ମୁଖ୍ୟ ଚିକିତ୍ସାଳୟରେ **କେମୋଥେରାପି** ବ୍ୟବସ୍ଥା କରାଯାଇଛି ।

ସରକାରୀ ସ୍ୱାସ୍ଥ୍ୟ ଉପକେନ୍ଦ୍ରଠାରୁ ଜିଲ୍ଲା ମୁଖ୍ୟ ଚିକିତ୍ସାଳୟ ପର୍ଯ୍ୟନ୍ତ ସବୁଠି ଅତିରିକ୍ତ ସ୍ୱାସ୍ଥ୍ୟଭିତ୍ତିକ ସେବା ଯଥା ଡାକ୍ତରଖାନାଗୁଡିକରେ ପରିମଳ ବ୍ୟବସ୍ଥା, ନିରାପତ୍ତା, ଲିଫ୍ଟ ବ୍ୟବସ୍ଥା, ଲଣ୍ଡ୍ରି ଏବଂ ଉତ୍କୃଷ୍ଟ ଭିତ୍ତିଭୂମି ଯୋଗାଇ ଦେବା ସହ ସମସ୍ତଙ୍କୁ ଗୁଣାତ୍ମକ ମାନର ସ୍ୱାସ୍ଥ୍ୟ ସେବା ଯୋଗାଇ ଦେବା ଲକ୍ଷ୍ୟରେ **'ନିର୍ମଳ'** ଯୋଜନା, ସମସ୍ତଙ୍କ ପାଇଁ ଦେୟମୁକ୍ତ ଚକ୍ଷୁ ପରୀକ୍ଷା ଓ ଚିକିତ୍ସା, ମଧୁମେୟ ରୋଗୀଙ୍କ ପାଇଁ ରେଟିନୋପାଥି ଓ ଜୀବନବ୍ୟାପୀ **ଗ୍ଲୁକୋମା** ରୋଗୀଙ୍କ ଚିକିତ୍ସା ପାଇଁ **'ସୁନେତ୍ର'** ଯୋଜନା ଏବଂ ସରକାରୀ ଡାକ୍ତରଖାନାରେ ଜନ୍ମଲାଭ କରୁଥିବା ଶିଶୁ ଓ ତା'ର ମା'ଙ୍କୁ ସମସ୍ତ ପ୍ରକାର ସଂକ୍ରମଣରୁ ରକ୍ଷା କରିବା ତଥା ଉଭୟଙ୍କ ସ୍ୱାସ୍ଥ୍ୟରକ୍ଷା ପାଇଁ **'ସଂପୂର୍ଣ୍ଣା ସୁରକ୍ଷା କବଚ'** କିଟ୍ର ବ୍ୟବସ୍ଥା କରିଛନ୍ତି ।

ଗ୍ରାମାଂଚଳଠାରୁ ଆରମ୍ଭ କରି ସହରାଂଚଳ ପର୍ଯ୍ୟନ୍ତ ସ୍ୱାସ୍ଥ୍ୟ ସେବା କ୍ଷେତ୍ରରେ ଗୁରୁତ୍ୱପୂର୍ଣ୍ଣ ଯୋଗଦାନ ଦେଇଆସୁଥିବା ଆଶା କର୍ମୀଙ୍କୁ ପ୍ରୋତ୍ସାହନ ଦେବା ପାଇଁ ରାଜ୍ୟ ସରକାର **ଆଶା ଅବ୍ୟାହତି ଯୋଜନା-୨୦୧୮** ଆରମ୍ଭ କରିଛନ୍ତି ।

ଯେଉଁ ଆଶାକର୍ମୀମାନେ ଅନ୍ୟୂନ ୧୦ ବର୍ଷ ସେବା ପ୍ରଦାନ କରିଛନ୍ତି କିମ୍ବା ୬୨ ବର୍ଷ ପରେ କାର୍ଯ୍ୟରୁ ଅବ୍ୟାହତି ନେଇଛନ୍ତି, ସେମାନଙ୍କ ପାଇଁ ପୂର୍ବରୁ ଥିବା ଏକକାଳୀନ ଅବସରକାଳୀନ ପ୍ରୋତ୍ସାହନ ରାଶି ୧୦ ହଜାର ଟଙ୍କାରୁ ୨୦ ହଜାର ଟଙ୍କାକୁ ବୃଦ୍ଧି କରାଯାଇଛି ।

କାର୍ଯ୍ୟରତ ଆଶାକର୍ମୀମାନଙ୍କୁ ଛତା, ସାଇକେଲ, ଚପଲ, ଆଲମାରୀ, ଚାର୍ଜଯୋଗ୍ୟ ଟର୍ଚ୍ଚ ଲାଇଟ୍ ଆଦି ଯୋଗାଇ ଦେବା ପାଇଁ ୧୦ ହଜାର ଟଙ୍କାର ପ୍ରୋତ୍ସାହନ ରାଶି ଯୋଗାଇ ଦେବାର ବ୍ୟବସ୍ଥା କରିଛନ୍ତି ଆମ ରାଜ୍ୟ ସରକାର । ଏହି ବ୍ୟବସ୍ଥା ଦ୍ୱାରା ଉଭୟ ସହରାଂଚଳ ଓ ଗ୍ରାମାଂଚଳରେ କାର୍ଯ୍ୟ କରୁଥିବା ୪୭ ହଜାର ଆଶା କର୍ମୀ ଉପକୃତ ହୋଇଛନ୍ତି ।

ରାଜ୍ୟ ସରକାର କିଶୋରୀ ବାଳିକାମାନଙ୍କ ପାଇଁ ଏକ ପ୍ରମୁଖ ଯୋଜନା **'ଖୁସି'** ଆରମ୍ଭ କରୁଛନ୍ତି । ଏହି ଯୋଜନାରେ ରାଜ୍ୟ ସରକାର ୬ଷ୍ଠ ଶ୍ରେଣୀଠାରୁ ଦ୍ୱାଦଶ ଶ୍ରେଣୀ ପର୍ଯ୍ୟନ୍ତ ଅଧ୍ୟୟନରତ ସରକାରୀ, ସରକାରୀ ଅନୁଦାନ ପ୍ରାପ୍ତ ବିଦ୍ୟାଳୟର ଛାତ୍ରୀମାନଙ୍କୁ ସାନିଟାରୀ ନାପ୍‌କିନ୍ ମାଗଣାରେ ଯୋଗାଇଦେବାର ବ୍ୟବସ୍ଥା କରୁଛନ୍ତି । ଆମ ସରକାରଙ୍କର ଏହି ପ୍ରୟାସରେ ପ୍ରାୟ ୧୭ ଲକ୍ଷରୁ ଊର୍ଦ୍ଧ୍ୱ ବାଳିକା ଉପକୃତ ହେବେ । ଆମ ରାଜ୍ୟରେ ଡାକ୍ତରୀ ଶିକ୍ଷା ଏବଂ ସ୍ୱାସ୍ଥ୍ୟ ସେବାକୁ ଏକ ନୂଆ ଦିଶା ଦେଇଛନ୍ତି ଆମ ପ୍ରିୟ ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ନବୀନ ପଟ୍ଟନାୟକ । ୫୦ ବର୍ଷରୁ ଊର୍ଦ୍ଧ୍ୱ ସମୟର ବ୍ୟବଧାନ ମଧ୍ୟରେ ଆମ ରାଜ୍ୟରେ ପୁଣି ଥରେ ସରକାରୀ ମେଡିକାଲ କଲେଜ ଏବଂ ହସ୍ପିଟାଲ ପ୍ରତିଷ୍ଠା ହେବାରେ ନୂଆ ଧାରା ଆରମ୍ଭ ହୋଇଛି । ୨୦୧୭ ସେପ୍ଟେମ୍ବର ମାସ ୪ ଓ ୬ ତାରିଖରେ ଆମ ପ୍ରିୟ ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ନବୀନ ପଟ୍ଟନାୟକ ଜନଜାତି ବହୁଳ କୋରାପୁଟଠାରେ **ସହିଦ୍ ଲକ୍ଷ୍ମଣ ନାୟକ ମେଡିକାଲ କଲେଜ ଏବଂ ହସ୍ପିଟାଲ,** ମୟୂରଭଞ୍ଜ ଜିଲ୍ଲାର ବାରିପଦାଠାରେ **ପଣ୍ଡିତ ରଘୁନାଥ ମୁର୍ମୁ ମେଡିକାଲ କଲେଜ ଏବଂ ହସ୍ପିଟାଲ,** ୨୦୧୮ ଅଗଷ୍ଟ ୩୧ ତାରିଖରେ ବଲାଙ୍ଗୀରଠାରେ **ସନ୍ଥକବି ଭୀମଭୋଇ ମେଡିକାଲ କଲେଜ ଏବଂ ହସ୍ପିଟାଲ**ର ଶୁଭାରମ୍ଭ କରିଥିବା ବେଳେ ସେପ୍ଟେମ୍ବର ମାସ ୩ ତାରିଖରେ ବାଲେଶ୍ୱରଠାରେ **ବ୍ୟାସକବି ଫକୀରମୋହନ ମେଡିକାଲ କଲେଜ ଏବଂ ହସ୍ପିଟାଲ**ର ଲୋକାର୍ପଣ କରିଛନ୍ତି । ଆଉ ଅଧିକ ୫ଟି ମେଡିକାଲ କଲେଜ ପୁରୀ, କେଉଁଝର, ଅନୁଗୁଳ, ସୁନ୍ଦରଗଡ ଓ କଳାହାଣ୍ଡି ଭଳି ଜିଲ୍ଲାରେ ପ୍ରତିଷ୍ଠା ପାଇଁ ଆମ ସରକାର ପ୍ରସ୍ତୁତି ଚଳାଇଛନ୍ତି ।


ବ୍ୟାସକବି ଫକୀରମୋହନ ମେଡିକାଲ କଲେଜ ଏବଂ ହସ୍ପିଟାଲ୍, ବାଲେଶ୍ୱର

ରାଜ୍ୟରେ ସମସ୍ତଙ୍କ ପାଇଁ ସ୍ୱାସ୍ଥ୍ୟ ସେବା ଭଳି ଗୁରୁତ୍ୱପୂର୍ଣ୍ଣ ପ୍ରସଙ୍ଗକୁ ଦୃଷ୍ଟି ଦେଇ ରାଜ୍ୟର ପ୍ରମୁଖ ୩ ଗୋଟି ମେଡିକାଲ କଲେଜ ଯଥା ଶ୍ରୀରାମଚନ୍ଦ୍ର ଭଂଜ ମେଡିକାଲ କଲେଜ ଓ ହସ୍ପିଟାଲ, କଟକ, ବୀର ସୁରେନ୍ଦ୍ର ସାଏ ମେଡିକାଲ କଲେଜ ଓ ହସ୍ପିଟାଲ, ବୁର୍ଲା, ମହାରାଜା କୃଷ୍ଣଚନ୍ଦ୍ର ଗଜପତି ମେଡିକାଲ କଲେଜ ଓ ହସ୍ପିଟାଲ, ବ୍ରହ୍ମପୁର ସମେତ ନବ ନିର୍ମିତ ମେଡିକାଲ କଲେଜର ଭିତ୍ତିଭୂମିର ଉନ୍ନତି ପାଇଁ ସବୁପ୍ରକାର ଉଦ୍ୟମ ଏବଂ ସହାୟତା ପ୍ରଦାନ କରୁଛନ୍ତି । ସେହିପରି କଟକସ୍ଥିତ ଆଚାର୍ଯ୍ୟ ହରିହର କର୍କଟ କେନ୍ଦ୍ରକୁ ଦେଶର ଅନ୍ୟତମ ଉତ୍କର୍ଷ କେନ୍ଦ୍ର ଭାବେ ପ୍ରତିଷ୍ଠା କରାଯାଇଛି । ଏହାର ଉନ୍ନତିକରଣ ଓ ସଂପ୍ରସାରଣ ପାଇଁ ରାଜ୍ୟ ସରକାର ଆବଶ୍ୟକୀୟ ପଦକ୍ଷେପ ନେଉଛନ୍ତି ।

# ମା’ ଓ ଶିଶୁଙ୍କ ସଶକ୍ତିକରଣ




‘‘ମା’ ଓ ଶିଶୁ ସୁସ୍ଥ ରହିଲେ ପରିବାର ଖୁସିରେ ରହିବ । ଏକ ଜନମଙ୍ଗଳକାରୀ ସରକାର ମା’ ଓ ଶିଶୁଙ୍କ କଲ୍ୟାଣ ପାଇଁ ସବୁଦିନେ ଉତ୍ତରଦାୟୀ । ସେଥିପାଇଁ ଆମେ ପ୍ରସୂତି ଓ ଗର୍ଭବତୀ ମା’ମାନଙ୍କ ପାଇଁ ‘ମମତା’ ଯୋଜନା ଆରମ୍ଭ କଲୁ ।’’

– ନବୀନ ପଟ୍ଟନାୟକ

ମା’ ଓ ଶିଶୁଙ୍କ କଲ୍ୟାଣ କ୍ଷେତ୍ରରେ ସାରା ଦେଶରେ ଉଦାହରଣ ସୃଷ୍ଟି କରିଥିବା ଆମ ପ୍ରିୟ ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ନବୀନ ପଟ୍ଟନାୟକ ଗର୍ଭବତୀ ଓ ପ୍ରସୂତୀ ମା’ମାନଙ୍କ ନିମନ୍ତେ **‘ମମତା ଯୋଜନା’** ୨୦୧୧ ମସିହାରୁ ଆରମ୍ଭ କରି ସାରା ଦେଶ ପାଇଁ ଏହାକୁ ଏକ ଅନୁକରଣୀୟ ଯୋଜନାରେ ପରିଣତ କରାଇଛନ୍ତି । ଏହି ଯୋଜନାରେ ୫ ହଜାର ଟଙ୍କାର ଆର୍ଥିକ ସହାୟତା ସିଧାସଳଖ ଗର୍ଭବତୀ ବା ପ୍ରସୂତି ମହିଳାଙ୍କ ଜମାଖାତାକୁ ହସ୍ତାନ୍ତର କରାଯାଉଛି । ବର୍ତ୍ତମାନ ସୁଦ୍ଧା ଏହି ଯୋଜନାରେ ପ୍ରାୟ ୩୬ ଲକ୍ଷ ଗର୍ଭବତୀ ଓ ପ୍ରସୂତି ମହିଳାଙ୍କୁ ୧୬୫୦ କୋଟିରୁ ଉର୍ଦ୍ଧ୍ୱ ଟଙ୍କା ସେମାନଙ୍କ ବ୍ୟାଙ୍କ୍ ଆକାଉଣ୍ଟ ମାଧ୍ୟମରେ ସିଧାସଳଖ ହସ୍ତାନ୍ତର କରାଯାଇଛି । ମାତୃ ଓ ଶିଶୁ ମୃତ୍ୟୁହାର କମାଇବା ସହିତ ଆଗାମୀ ପିଢି ପାଇଁ ସୁସ୍ଥ ପୁଷ୍ଟିସଂପନ୍ନ ଶିଶୁ ଜନ୍ମ ଦେବାରେ ‘ମମତା’ ବେଶ୍ ଉପଯୋଗୀ ସାବ୍ୟସ୍ତ ହୋଇଛି ।



ଝିଅମାନେ ଆମର ଗୌରବ । ଆଜି ପ୍ରତ୍ୟେକ ଝିଅ ଗୋଟିଏ ଗୋଟିଏ ରତ୍ନ । ରାଜ୍ୟରେ କନ୍ୟା ଶିଶୁଙ୍କ ଜନ୍ମ ହାର ବୃଦ୍ଧି, ଯତ୍ନ ଓ ବିକାଶକୁ ଦୃଷ୍ଟିରେ ରଖି ସାରା ଭାରତରେ ମହିଳା ସଶକ୍ତିକରଣର ଅଗ୍ରଦୂତ ବିଜୁବାବୁଙ୍କ ସ୍ମୃତି ଉଦ୍ଦେଶ୍ୟରେ **‘ବିଜୁ କନ୍ୟାରତ୍ନ’** ନାମକ ଏକ ଯୋଜନା ୨୦୧୬ ମସିହା ମାର୍ଚ୍ଚ ୫ ତାରିଖରେ ବିଜୁ ପଟ୍ଟନାୟକଙ୍କ ଜନ୍ମ ଶତବାର୍ଷିକୀ ଅବସରରେ ଆମ ମୁଖ୍ୟମନ୍ତ୍ରୀ ଶୁଭାରମ୍ଭ କରିଥିଲେ ।

୨୦୧୬ ମସିହାରୁ **‘ବିଜୁ ଶିଶୁ ସୁରକ୍ଷା ଯୋଜନା’** କାର୍ଯ୍ୟକାରୀ କରାଯାଇଛି । ପିତୃମାତୃହୀନ ଶିଶୁ, ଏଚ୍.ଆଇ.ଭି/ ଏଡ୍ସ ଆକ୍ରାନ୍ତ ଶିଶୁଙ୍କୁ ବୈଷୟିକ ଶିକ୍ଷା ନିମନ୍ତେ ୭ ହଜାରରୁ ୪୦ ହଜାର ଟଙ୍କା ପର୍ଯ୍ୟନ୍ତ, ଶିଶୁ ସୁରକ୍ଷା ଅନୁଷ୍ଠାନରେ ରହି କୃତିତ୍ୱର ସହ ଦଶମ ଶ୍ରେଣୀ ଉତ୍ତୀର୍ଣ୍ଣ ହୋଇଥିବା ପ୍ରତି ଜିଲ୍ଲାର ପ୍ରଥମ ୩ ଜଣ ଶିଶୁଙ୍କୁ ୨ ହଜାର ଟଙ୍କାର ବୃତ୍ତି , ସୁକନ୍ୟା ସମୃଦ୍ଧି ବାବଦରେ ଜମା ପାଇଁ ବାଳିକାମାନଙ୍କୁ ୧ ହଜାର ଟଙ୍କାର ସହାୟତା, ବାଳକମାନଙ୍କୁ ୪୦ ହଜାର ଟଙ୍କା ଓ ବାଳିକାମାନଙ୍କୁ ୫୦ ହଜାର ଟଙ୍କା ସହାୟତା ରାଶି ପ୍ରଦାନ କରାଯାଉଛି ।

**‘ମାଳତୀ ଦେବୀ ପ୍ରାକ୍ ବିଦ୍ୟାଳୟ ପରିଧାନ ଯୋଜନା’**ରେ ଅଙ୍ଗନୱାଡି କେନ୍ଦ୍ରରେ ପ୍ରାକ୍ ବିଦ୍ୟାଳୟ ଶିକ୍ଷା ଗ୍ରହଣ କରୁଥିବା ପ୍ରାୟ ୧୬ ଲକ୍ଷ ପିଲାଙ୍କୁ ମାଗଣାରେ ପ୍ରାକ୍ ବିଦ୍ୟାଳୟ ୟୁନିଫର୍ମ ଯୋଗାଇ ଦିଆଯାଉଛି ।

# ଛାତ୍ରଛାତ୍ରୀଙ୍କ ସଶକ୍ତିକରଣ




''ପର୍ଯ୍ୟାପ୍ତ ଆବାସିକ ଶିକ୍ଷା ସୁବିଧା ଅନୁସୂଚିତ ଜାତି ଏବଂ ଜନଜାତି ଛାତ୍ରଛାତ୍ରୀଙ୍କୁ ପାଠପଢା ପାଇଁ ଉପଯୁକ୍ତ ସୁଯୋଗ ଏବଂ ପ୍ରକୃଷ୍ଟ ବାତାବରଣ ଯୋଗାଇପାରିବ।''

**- ନବୀନ ପଟ୍ଟନାୟକ**

ଅର୍ଥାଭାବ ବହୁ ମେଧାବୀ ପିଲାଙ୍କୁ ଉଚ୍ଚ ଶିକ୍ଷାରୁ ବଂଚିତ କରିଦିଏ। ଗରିବ ତଥା ନିମ୍ନ ମଧ୍ୟବିତ୍ତ ପରିବାରର ପିତାମାତାଙ୍କ ଋଣ ବୋଝ ଲାଘବ କରିବା ପାଇଁ ଆମ ପ୍ରିୟ ମୁଖ୍ୟମନ୍ତ୍ରୀ ୨୦୧୬ ମସିହାରୁ **'କଳିଙ୍ଗ ଶିକ୍ଷାସାଥୀ ଯୋଜନା'**ରେ ଉଚ୍ଚ ଶିକ୍ଷା ପାଇଁ ଛାତ୍ରଛାତ୍ରୀ ବ୍ୟାଙ୍କରୁ ନେଉଥିବା ୧୦ ଲକ୍ଷ ଟଙ୍କା ପର୍ଯ୍ୟନ୍ତ ଶିକ୍ଷାଋଣ ୧ ପ୍ରତିଶତ ସୁଧରେ ପରିଶୋଧ କରିବା ପାଇଁ ବ୍ୟବସ୍ଥା କରିଛନ୍ତି। ଋଣ ପରିଶୋଧ କରିବାର ସମୟ ସୀମା ଏବେ ୧୦ ବର୍ଷ ପରିବର୍ତ୍ତେ ୧୫ ବର୍ଷକୁ ବୃଦ୍ଧି କରାଯାଇଛି।



ସ୍ନାତକ ଏବଂ ସ୍ନାତକୋତ୍ତର ସ୍ତରରେ ଓଡିଆ ଭାଷାରେ ଅଧ୍ୟୟନ ପାଇଁ **ବ୍ୟାସକବି ଫକୀରମୋହନ ସେନାପତି ଭାଷାବୃତ୍ତି,** ୬ଟି ବିଶ୍ୱବିଦ୍ୟାଳୟରେ **ସିଭିଲ ସର୍ଭିସେସ୍ କୋଚିଂ ସେଣ୍ଟର,** ୪ଟି ବିଶ୍ୱବିଦ୍ୟାଳୟରେ **କ୍ୟାରିଅର ଆଣ୍ଡ କାଉନ୍‌ସେଲିଂ ସେଲ୍,** ଉତ୍କଳ ବିଶ୍ୱବିଦ୍ୟାଳୟରେ ବିଜ୍ଞାନ ଶିକ୍ଷା ଓ ଗବେଷଣାର ବିକାଶ ପାଇଁ **ସେଣ୍ଟ୍ରାଲ ଇନ୍‌ଷ୍ଟ୍ରୁମେଣ୍ଟେସନ୍ ସେଣ୍ଟର** ଏବଂ ଇଂରାଜୀ ଭାଷାରେ କାର୍ଯ୍ୟ ଦକ୍ଷତା ବୃଦ୍ଧି ପାଇଁ ୧୦୮ଟି ସରକାରୀ ଓ ବେସରକାରୀ ଅନୁଦାନପ୍ରାପ୍ତ ମହାବିଦ୍ୟାଳୟରେ **ଲାଙ୍ଗୁଏଜ୍ ଲାବ୍** ପ୍ରତିଷ୍ଠା କରାଯାଇଛି।

ମେଧାବୀ ଛାତ୍ରଛାତ୍ରୀଙ୍କୁ ପ୍ରୋତ୍ସାହନ ଦେବା ଲକ୍ଷ୍ୟରେ ଆମ ସରକାର ୨୦୧୭ ମସିହାରୁ ଶୁଭାରମ୍ଭ କରିଛନ୍ତି **ମୁଖ୍ୟମନ୍ତ୍ରୀ ମେଧାବୃତ୍ତି** ଯୋଜନା। ଏହି ଯୋଜନାରେ ଦଶମ ଶ୍ରେଣୀର ଛାତ୍ର ବା ଛାତ୍ରୀଙ୍କୁ ହାଇସ୍କୁଲ ସାର୍ଟିଫିକେଟ୍ ପରୀକ୍ଷା ଫଳାଫଳ ଭିତ୍ତିରେ ୫ ହଜାର ଟଙ୍କାର ଛାତ୍ରବୃତ୍ତି ପ୍ରଦାନ କରାଯାଉଛି। ଏହାଦ୍ୱାରା ପ୍ରତିବର୍ଷ ରାଜ୍ୟର ୪୦ ହଜାର ଛାତ୍ରଛାତ୍ରୀ ଉପକୃତ ହେଉଛନ୍ତି।

ଆମ ସରକାର ମାଟ୍ରିକ୍ ପରୀକ୍ଷାରେ ଓଡ଼ିଆ ଭାଷାରେ ଅଧିକ ନମ୍ବର ରଖିଥିବା ରାଜ୍ୟର ପ୍ରତି ବ୍ଲକରୁ ୧୦ ଜଣ ଛାତ୍ରଛାତ୍ରୀଙ୍କୁ ଜଣ ପିଛା ୫ ହଜାର ଟଙ୍କା ଲେଖାଏଁ **ଓଡ଼ିଆ ଭାଷା ମେଧାବୃତ୍ତି** ପ୍ରଦାନ କରୁଛନ୍ତି।

ଆମ ସରକାର ଯୁକ୍ତ ୨ରୁ ସ୍ନାତକ ଶିକ୍ଷା ପାଇଁ ପିତୃମାତୃହୀନ ପିଲାମାନଙ୍କୁ ବିନାଖର୍ଚ୍ଚରେ ଶିକ୍ଷା ପାଇଁ **ଗ୍ରୀନ୍ ପ୍ୟାସେଜ୍ କାର୍ଯ୍ୟକ୍ରମ** କାର୍ଯ୍ୟକାରୀ କରୁଥିବା ବେଳେ ୧ ଲକ୍ଷ ଟଙ୍କାରୁ କମ୍ ଆୟ ଥିବା ଏଡ୍‌ସ ବା ଏଚ୍.ଆଇ.ଭି ଆକ୍ରାନ୍ତ, ଦୁରାରୋଗ୍ୟ ବ୍ୟାଧି, ଭୂମିହୀନ ବା ବାସହୀନ ପରିବାରର ବୃଦ୍ଧା ବା ବିଧବା ମା' କିମ୍ବା ଘରର ଏକମାତ୍ର ରୋଜଗାରକ୍ଷମ ମହିଳାଙ୍କ ପରିବାରର ପୁଅ ବା ଝିଅମାନଙ୍କୁ ସ୍ନାତକ ଓ ସ୍ନାତକୋତ୍ତର ଶିକ୍ଷା ପାଇଁ **ଗୋପବନ୍ଧୁ ଶିକ୍ଷା ସହାୟତା ଯୋଜନା**ରେ ବାର୍ଷିକ ୨୦ ହଜାର ଟଙ୍କାର ସହାୟତା ମିଳିବା ପାଇଁ ବ୍ୟବସ୍ଥା କରିଛନ୍ତି।

**ଉଚ୍ଚଶିକ୍ଷା ପାଇଁ ଲାପ୍‌ଟପ୍ :** ୨୦୧୩ ମସିହାରୁ **'ବିଜୁ ଯୁବ ସଶକ୍ତିକରଣ ଯୋଜନା'**ରେ ଯୁକ୍ତ ୨ ଉତ୍ତୀର୍ଣ୍ଣ ଛାତ୍ରଛାତ୍ରୀଙ୍କୁ ମେଧା ଭିତ୍ତିରେ ଲାପ୍‌ଟପ୍ ଯୋଗାଇ ଦେବା ପାଇଁ ଆମ ମୁଖ୍ୟମନ୍ତ୍ରୀ ଘୋଷଣା କରିଥିଲେ। ଇତିମଧ୍ୟରେ ୯୦ ହଜାରରୁ ଅଧିକ ଲାପ୍‌ଟପ୍ ରାଜ୍ୟର ମେଧାବୀ ଛାତ୍ରଛାତ୍ରୀଙ୍କୁ ବଣ୍ଟନ କରାଯାଇଛି।

ଗ୍ରାମାଞ୍ଚଳର ପ୍ରତିଭାଶାଳୀ ଛାତ୍ରଛାତ୍ରୀମାନଙ୍କୁ ଗୁଣାତ୍ମକ ଇଂରାଜୀ ମାଧ୍ୟମ ଶିକ୍ଷାଲାଭ କରିବାର ସୁଯୋଗ ଦେବା ପାଇଁ ପ୍ରତ୍ୟେକ ବ୍ଲକରେ **ଓଡ଼ିଶା ଆଦର୍ଶ ବିଦ୍ୟାଳୟ** ପ୍ରତିଷ୍ଠା କରିଛନ୍ତି ଆମ ସରକାର। ୨୦୧୬-୧୭ ଶିକ୍ଷା ବର୍ଷରେ ୧୪ଟି ଶିକ୍ଷା ଅନଗ୍ରସର ଜିଲ୍ଲାର ୧୦୦ଟି ବ୍ଲକରେ ଏବଂ ୨୦୧୭-୧୮ ବର୍ଷରେ ୬୦ଟି ବ୍ଲକରେ ଏବଂ ଏ ବର୍ଷ ୩୦ଟି ଏହିଭଳି ମୋଟ ୧୯୦ଟି ଓଡ଼ିଶା ଆଦର୍ଶ ବିଦ୍ୟାଳୟ ପ୍ରତିଷ୍ଠା କରାଯାଇଛି। ପ୍ରତିଷ୍ଠା ହେବା ଦିନଠାରୁ ପ୍ରତିବର୍ଷ ୧୫,୨୦୦ ଛାତ୍ରଛାତ୍ରୀ ଏହି ଶିକ୍ଷା ବ୍ୟବସ୍ଥାରେ ସାମିଲ ହେଉଛନ୍ତି ଏବଂ ଏହି ଶିକ୍ଷା ବର୍ଷ ପର୍ଯ୍ୟନ୍ତ ୫୧ ହଜାରରୁ ଊର୍ଦ୍ଧ୍ୱ ଛାତ୍ରଛାତ୍ରୀଙ୍କୁ ଆମ ସରକାରଙ୍କ ଅଭିନବ ଉଦ୍ୟମ ଯୋଗୁଁ ନିଜ ବ୍ଲକରେ ଗୁଣାତ୍ମକ ଇଂରାଜୀ ମାଧ୍ୟମ ଶିକ୍ଷା ସହଜରେ ଏବଂ ସୁବିଧାରେ ମିଳିପାରୁଛି। ଏହି ଉପାଦେୟ ଶିକ୍ଷା ବ୍ୟବସ୍ଥାରେ ଷଷ୍ଠରୁ ଅଷ୍ଟମ ଶ୍ରେଣୀ ପର୍ଯ୍ୟନ୍ତ ଅଭିଭାବକମାନଙ୍କୁ ପିଲାର ପାଠପଢ଼ା ବାବଦରେ କୌଣସି ଖର୍ଚ୍ଚ କରିବାକୁ ପଡୁନାହିଁ।

ଗ୍ରାମାଞ୍ଚଳର ଅନୁସୂଚିତ ଜନଜାତି ଓ ଅନୁସୂଚିତ ଜାତିର ଛାତ୍ରଛାତ୍ରୀମାନଙ୍କୁ ନିକଟସ୍ଥ ସହରାଂଚଳରେ ଗୁଣାତ୍ମକ ଶିକ୍ଷା ଯୋଗାଇଦେବା ନିମନ୍ତେ ଆମ ସରକାର **'ଅନ୍ୱେଷା'** ନାମକ ଏକ ଯୁଗାନ୍ତକାରୀ ଉପକ୍ରମ ଆରମ୍ଭ କରିଛନ୍ତି। ଏଥିପାଇଁ ଆମ ସରକାର ପ୍ରତ୍ୟେକ ଛାତ୍ରଛାତ୍ରୀଙ୍କ ରହିବା, ଖାଇବା ସହିତ ପ୍ରତି ପିଲା ପାଇଁ ଟିଉସନ୍ ଫି ସମେତ ବାର୍ଷିକ ପ୍ରାୟ ୪୦ ହଜାର ଟଙ୍କା ବ୍ୟୟ କରୁଛନ୍ତି। ୧୭ଟି ଜିଲ୍ଲାର ୧୪୨ଟି ଉନ୍ନତ ମାନର ଇଂରାଜୀ ମାଧ୍ୟମ ଘରୋଇ ବିଦ୍ୟାଳୟରେ ୧୯ ହଜାର ପିଲା ଏହାଦ୍ୱାରା ଉପକୃତ ହେଲେଣି। ପ୍ରତିବର୍ଷ **'ଅନ୍ୱେଷା'** ମାଧ୍ୟମରେ ୫ ହଜାର ଛାତ୍ରଛାତ୍ରୀ ଗୁଣାତ୍ମକ ଇଂରାଜୀ ମାଧ୍ୟମ ଶିକ୍ଷା ଲାଭ କରିବାର ସୁଯୋଗ ପାଉଛନ୍ତି।

ଆମ ପ୍ରିୟ ମୁଖ୍ୟମନ୍ତ୍ରୀଙ୍କ ଏଇଭଳି ଏକ ଦୂରଦୃଷ୍ଟିସଂପନ୍ନ ଚିନ୍ତାଧାରାକୁ ସାକାର କରିବା ପାଇଁ ୨୦୦୯ ମସିହାରୁ ଆରମ୍ଭ ହେଲା ବ୍ୟାପକ ଛାତ୍ରାବାସ ନିର୍ମାଣ। ଆଜି ରାଜ୍ୟରେ ୬୪୦୦ରୁ ଊର୍ଦ୍ଧ୍ୱ ଛାତ୍ରାବାସ, ୪୩୦୦ ଆବାସିକ ବିଦ୍ୟାଳୟରେ ୬ ଲକ୍ଷରୁ ଊର୍ଦ୍ଧ୍ୱ ଅନୁସୂଚିତ ଜାତି ଏବଂ ଜନଜାତି ଛାତ୍ରଛାତ୍ରୀ ବିନା ଦେୟରେ ରହଣି, ଖାଦ୍ୟପେୟ ଓ ଅନ୍ୟାନ୍ୟ ଆନୁଷଙ୍ଗିକ ସୁବିଧା ସୁଯୋଗ ପାଇ ଶିକ୍ଷା ବ୍ୟବସ୍ଥାରେ ସାମିଲ ହୋଇଛନ୍ତି।

ସହରାଂଚଳରେ ରହି ଉଚ୍ଚଶିକ୍ଷା ଲାଭ କରିବା ନିମନ୍ତେ ଆମ ମୁଖ୍ୟମନ୍ତ୍ରୀ ଶୁଭାରମ୍ଭ କଲେ ସହରାଂଚଳରେ ଆବାସିକ ଛାତ୍ରାବାସ **'ଆକାଙ୍‌କ୍ଷା'**। ଭୁବନେଶ୍ୱରରେ ୨ଟି ଛାତ୍ରାବାସରେ ଏବେ ୧ ହଜାର ଛାତ୍ରଛାତ୍ରୀ ସମସ୍ତ ଆବାସିକ ସୁବିଧା ସହିତ ଯୁକ୍ତ ୨, ସ୍ନାତକ, ସ୍ନାତକୋତ୍ତର, ବୈଷୟିକ କିମ୍ବା ବୃତ୍ତିଗତ ଶିକ୍ଷା ମାଗଣାରେ ପାଉଛନ୍ତି। ବ୍ରହ୍ମପୁର, ସମ୍ବଲପୁର ଏବଂ ରାଉରକେଲାଠାରେ ଏହିଭଳି ଆଉ ୬ଟି ଛାତ୍ରାବାସ ନିର୍ମାଣାଧୀନ ରହିଛି। ୨୦୧୯ ଶିକ୍ଷା ବର୍ଷରୁ ଏହି ଅନୁଷ୍ଠାନଗୁଡ଼ିକ ପୂର୍ଣ୍ଣରୂପେ କାର୍ଯ୍ୟକାରୀ ହେବ ।

ଏଥି ସହିତ ଆମ ମୁଖ୍ୟମନ୍ତ୍ରୀ ନିଷ୍ପତ୍ତି କରିଛନ୍ତି, ରାଜ୍ୟର ସଂଖ୍ୟାଲଘୁ ପରିବାରର ଛାତ୍ରଛାତ୍ରୀମାନଙ୍କ ପାଇଁ ୪୦୦୦ ଛାତ୍ର ଆବାସିକ ଶିକ୍ଷା ସୁବିଧା ଲାଭ କରିପାରିବା ଭଳି ୪୦ଟି ଛାତ୍ରାବାସ ଏବଂ ଅନ୍ୟାନ୍ୟ ପଛୁଆ ବର୍ଗର ୧୦ ହଜାର ଛାତ୍ରଛାତ୍ରୀଙ୍କ ପାଇଁ ଆବାସିକ ସୁବିଧା ସହିତ ୧୦୦ଟି ଛାତ୍ରାବାସ ନିର୍ମାଣ କରାଯାଇ ୨୦୧୯ରୁ ଏହି ଆବାସିକ ଶିକ୍ଷାନୁଷ୍ଠାନଗୁଡ଼ିକ କାର୍ଯ୍ୟକ୍ଷମ ହେବ ।

# ଯୁବବର୍ଗଙ୍କ ସଶକ୍ତିକରଣ

"ବିଭିନ୍ନ ଜାତୀୟ ଏବଂ ଅନ୍ତର୍ଜାତୀୟ ସ୍ତରର ପ୍ରତିଯୋଗିତାରେ ମୁଁ ଆମ ଜନଜାତି ପିଲାଙ୍କୁ ବିଜୟୀ ଭାବରେ ଦେଖିବାକୁ ଚାହେଁ। ସେମାନେ ସବୁ ଦୃଷ୍ଟିରୁ ସଶକ୍ତ ହୁଅନ୍ତୁ, ତାଙ୍କ ମା' ମାଟିକୁ ସମୃଦ୍ଧ କରନ୍ତୁ।"

- ନବୀନ ପଟ୍ଟନାୟକ




ଆମ ମୁଖ୍ୟମନ୍ତ୍ରୀ ଯୁବବର୍ଗଙ୍କ ସଶକ୍ତିକରଣକୁ ସର୍ବଦା ସର୍ବାଧିକ ଗୁରୁତ୍ୱାରୋପ କରିଆସିଛନ୍ତି। **ଓଡ଼ିଶା ରାଜ୍ୟ ଯୁବ ନୀତି -୨୦୧୩**ରେ ଯୁବବର୍ଗଙ୍କ ସଶକ୍ତିକରଣ ପାଇଁ ବିସ୍ତୃତ କାର୍ଯ୍ୟକ୍ରମର ପରିକଳ୍ପନା କରାଯାଇଥିଲା, ଯେଉଁଥିରେ ବିଜୁ ଯୁବ ସଶକ୍ତିକରଣ ଯୋଜନା, ଦକ୍ଷତା ବିକାଶ, ଉଚ୍ଚ ଶିକ୍ଷା ନିମନ୍ତେ ଛାତ୍ରବୃତ୍ତି, ଯୁବତୀମାନଙ୍କୁ ଆତ୍ମରକ୍ଷା କୌଶଳ ଇତ୍ୟାଦି କାର୍ଯ୍ୟକ୍ରମ ଅନ୍ତର୍ଭୁକ୍ତ କରାଯାଇଥିଲା।

ଯୁବବର୍ଗଙ୍କ ମଧ୍ୟରେ ସ୍ୱେଚ୍ଛାସେବୀ ମନୋଭାବ, ଖେଳୁଆଡ ମନୋବୃତ୍ତି, ଜାତୀୟତାବାଦର ବିକାଶ ଏବଂ ସମାଜ ତଥା ରାଜ୍ୟର ସାମଗ୍ରିକ ବିକାଶ ଦିଗରେ ପ୍ରୋତ୍ସାହିତ ହେବା ପାଇଁ **'ବିଜୁ ଯୁବ ବାହିନୀ'** ଆରମ୍ଭ କରାଯାଇଛି।




ସମସ୍ତଙ୍କର ସମ୍ମିଳିତ ଉଦ୍ୟମରେ ଓଡ଼ିଶାକୁ ପ୍ରଗତିର ଶୀର୍ଷକୁ ନେବା ପାଇଁ **'ମୁଁ ହିରୋ...ମୁଁ ଓଡ଼ିଶା'** କାର୍ଯ୍ୟକ୍ରମର ଶୁଭାରମ୍ଭ କରାଯାଇଛି।

**'ବିଜୁ ଯୁବ ବାହିନୀ'** ଇତି ମଧ୍ୟରେ ବ୍ୟାପକ ବୃକ୍ଷରୋପଣ, ସ୍ୱେଚ୍ଛାକୃତ ରକ୍ତଦାନ, ନିଶା ନିବାରଣ, ସମାଜ ସେବା ଏବଂ ଯୁବକ ଯୁବତୀମାନଙ୍କ ମଧ୍ୟରେ କ୍ରୀଡା ଏବଂ ଯୁବ ସାମର୍ଥ୍ୟର ବିକାଶ ନିମନ୍ତେ ଏକାଧିକ ପ୍ରଶଂସନୀୟ କାର୍ଯ୍ୟକରି ରାଜ୍ୟର ଯୁବବର୍ଗଙ୍କୁ ସାମାଜିକ ଅଙ୍ଗୀକାରବଦ୍ଧତାର ଏକ ନୂତନ ଦୃଷ୍ଟିଭଙ୍ଗୀ ପ୍ରଦାନ କରିଛନ୍ତି। ଏ ଭିତରେ **'ବିଜୁ ଯୁବ ବାହିନୀ'** ରାଜ୍ୟବ୍ୟାପୀ 'ସ୍ୱେଚ୍ଛାସେବାର ଉତ୍ସବ' ବଲାଙ୍ଗୀର, ସମ୍ବଲପୁର, ଜୟପୁର, କନ୍ଧମାଳ, ବାଲେଶ୍ୱର ପ୍ରଭୃତି ସ୍ଥାନରେ



ମହାସମାରୋହରେ ପାଳିତ ହୋଇ ସ୍ୱେଚ୍ଛାସେବାର ମହତ୍ୱ ଏବଂ ମହନୀୟତା ପ୍ରତିପାଦିତ କରାଯାଇଛି । ଏହି ଯୁବସମାବେଶ ଆଗକୁ କଟକ ଓ ଖୋର୍ଦ୍ଧା ସମେତ ଅନ୍ୟ ଜିଲ୍ଲାମାନଙ୍କରେ ପାଳିତ ହେବ ।

ଏସୀୟ କ୍ରୀଡାରେ ଉଭୟ ୧୦୦ ଓ ୨୦୦ ମିଟର ଦୌଡରେ ଦୁଇଟି ଇଭେଣ୍ଟରେ ୨ ଗୋଟି ରୌପ୍ୟ ପଦକ ଲାଭ କରି ଭାରତ ସହ ଓଡ଼ିଶାକୁ ଗୌରବାନ୍ୱିତ କରିଥିବା ଦୁତି ଚାନ୍ଦଙ୍କୁ ଆମ ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ୩ କୋଟି ଟଙ୍କାର ପୁରସ୍କାର ସହିତ ଆଗାମୀ ୨୦୨୦ ଟୋକିଓ ଅଲିମ୍ପିକ୍ ନିମନ୍ତେ ପ୍ରସ୍ତୁତି ପାଇଁ ସମସ୍ତ ସହାୟତା ପ୍ରଦାନ କରିବେ ବୋଲି ଘୋଷଣା କରିଛନ୍ତି । ଏସୀୟ କ୍ରୀଡାରେ ଭାରତୀୟ ମହିଳା ହକି ଦଳରେ ପ୍ରତିନିଧିତ୍ୱ କରିଥିବା ରୌପ୍ୟ ପଦକ ବିଜେତା **ସୁନିତା ଲାକ୍ରା, ଲିଲିମା ମିଞ୍ଜ, ଦୀପଗ୍ରେସ୍ ଏକ୍କା** ଏବଂ **ନମିତା ଟପ୍ପୋ**ଙ୍କୁ ଆମ ମୁଖ୍ୟମନ୍ତ୍ରୀ ୧ କୋଟି ଟଙ୍କା ଲେଖାଏଁ ପୁରସ୍କାର ପ୍ରଦାନ କରିଥିବା ବେଳେ ବ୍ରୋଞ୍ଜ ପଦକ ଜିତିଥିବା ଭାରତୀୟ ପୁରୁଷ ହକି ଦଳର ଦୁଇ ଓଡିଆ ସଦସ୍ୟ **ବୀରେନ୍ଦ୍ର ଲାକ୍ରା** ଓ **ଅମିତ୍ ରୋହିଦାସ**ଙ୍କୁ ମଧ୍ୟ ୬୦ ଲକ୍ଷ ଟଙ୍କାର ପୁରସ୍କାର ସହିତ ସମ୍ମାନିତ କରିଛନ୍ତି ।

ଯୁବବର୍ଗଙ୍କୁ କ୍ରୀଡା ପ୍ରତି ଆଗ୍ରହୀ କରାଇବା ନିମନ୍ତେ ପୂର୍ବରୁ ଏସୀୟ କ୍ରୀଡା ପାଇଁ ବ୍ୟକ୍ତିଗତ ବର୍ଗରେ ସ୍ୱର୍ଣ୍ଣ, ରୌପ୍ୟ ଓ ବ୍ରୋଞ୍ଜ ପଦକ ବିଜେତାଙ୍କୁ ମିଳୁଥିବା ୪୦ ଲକ୍ଷ, ୨୫ ଲକ୍ଷ ଓ ୧୨.୫୦ ଲକ୍ଷ ଟଙ୍କାର ପୁରସ୍କାର ରାଶିକୁ ଆମ ମୁଖ୍ୟମନ୍ତ୍ରୀ ୩ କୋଟି, ୧.୫ କୋଟି ଓ ୭୫ ଲକ୍ଷ ଟଙ୍କାକୁ ବୃଦ୍ଧି କରିଛନ୍ତି । ସେହିପରି ଏସୀୟ କ୍ରୀଡାରେ ଦଳଗତ ଇଭେଣ୍ଟରେ ସ୍ୱର୍ଣ୍ଣ, ରୌପ୍ୟ ଓ ବ୍ରୋଞ୍ଜ ପଦକ ଜିତିଥିବା ଓଡିଆ ଖେଳାଳିଙ୍କୁ ମିଳୁଥିବା ୨୦ ଲକ୍ଷ, ୧୨.୫୦ ଲକ୍ଷ ଓ ୬ ଲକ୍ଷ ଟଙ୍କାର ପୁରସ୍କାର ରାଶିକୁ ୨ କୋଟି, ୧ କୋଟି ଓ ୬୦ ଲକ୍ଷ ଟଙ୍କାକୁ ବୃଦ୍ଧି କରାଯାଇଛି ।



ଆମ ଜନଜାତିଙ୍କ ମଧ୍ୟରେ ଅସାଧାରଣ ପ୍ରତିଭା ଏବଂ ପାରମ୍ପରିକ କ୍ରୀଡା ନୈପୁଣ୍ୟ ଭରି ରହିଛି । ଜନଜାତି କ୍ରୀଡାକୁ ପ୍ରୋତ୍ସାହିତ କରିବା ପାଇଁ ଆମ ସରକାର ପ୍ରଥମ ଥର ପାଇଁ ଆୟୋଜନ କରିଥିଲେ **ରାଜ୍ୟସ୍ତରୀୟ ଜନଜାତି କ୍ରୀଡା ମହୋତ୍ସବ**। ୨୦୧୭ ମସିହା ଡିସେମ୍ବର ୧୮ ତାରିଖରୁ ଜନଜାତି କ୍ରୀଡା ପ୍ରତିଯୋଗିତା ବ୍ଲକ ସ୍ତରରୁ ଆରମ୍ଭ ହୋଇ ପରେ ଜିଲ୍ଲା ସ୍ତର ଓ ଶେଷରେ ରାଜ୍ୟସ୍ତରୀୟ କ୍ରୀଡା ପ୍ରତିଯୋଗିତା ସହିତ ଏହା ଉଦ୍‌ଯାପିତ ହୋଇଥିଲା ।

କ୍ରୀଡାର ବିକାଶ ମାଧ୍ୟମରେ ଯୁବ ଦକ୍ଷତାର ପୂର୍ଣ୍ଣ ବିନିଯୋଗ ଏବଂ ପ୍ରତିଭାର ବିକାଶ ତଥା ଉତ୍କର୍ଷ ହାସଲ ପାଇଁ ଆମ ମୁଖ୍ୟମନ୍ତ୍ରୀଙ୍କ ଦୂରଦର୍ଶିତା ଏବଂ ପ୍ରତିବଦ୍ଧତା ଆଗାମୀ ଦିନରେ ନିଃସନ୍ଦେହରେ ଓଡ଼ିଶାକୁ କ୍ରୀଡାକ୍ଷେତ୍ରରେ ଶୀର୍ଷକୁ ନେଇଯିବ ।

# କୃଷକଙ୍କ ସଶକ୍ତିକରଣ

''ଜଣେ ବି ଯୋଗ୍ୟ ଚାଷୀ ଯେପରି କାଳିଆ ଯୋଜନାରୁ ବଞ୍ଚିତ ନହେବ, ତା' ଉପରେ ମୁଁ ନଜର ରଖିଛି।''

- ନବୀନ ପଟ୍ଟନାୟକ

କାଳିଆ
କୃଷି କଲେ ଉନ୍ନତ ସକଳ ଉନ୍ନତି

ଆମ ମୁଖ୍ୟମନ୍ତ୍ରୀ ସବୁବେଳେ କୃଷିର ଉନ୍ନତି ଏବଂ କୃଷକଙ୍କ ସଶକ୍ତିକରଣକୁ ସର୍ବାଧିକ ପ୍ରାଥମିକତା ଦେଇଆସିଛନ୍ତି। କୃଷି କ୍ଷେତ୍ରରେ ଓଡ଼ିଶା ଏବେ ଏକ ଅଗ୍ରଣୀ ରାଜ୍ୟ। ୨୦୦୦ ମସିହାରେ ଖାଦ୍ୟ ନିରାପତ୍ତା ପାଇଁ ପଞ୍ଜାବ ଓ ହରିଆନା ଭଳି ରାଜ୍ୟ ଉପରେ ଖାଦ୍ୟ ଶସ୍ୟ ପାଇଁ ନିର୍ଭର କରୁଥିବା ଓଡ଼ିଶା ଆଜି ଖାଦ୍ୟଶସ୍ୟ ଉତ୍ପାଦନରେ ଏକ ବଳକା ରାଜ୍ୟ ହୋଇପାରିଛି ଏବଂ ଦେଶର ସାଧାରଣ ବଣ୍ଟନ ବ୍ୟବସ୍ଥାକୁ ତୃତୀୟ ସର୍ବାଧିକ ଅବଦାନକାରୀ ରାଜ୍ୟ ଭାବରେ ପରିଗଣିତ ହୋଇଛି। ୨୦୦୧-୦୨ ତୁଳନାରେ ଆମ ରାଜ୍ୟ ଧାନ ଉତ୍ପାଦନ ଏବଂ ଉତ୍ପାଦକତା କ୍ଷେତ୍ରରେ ଦୁଇଗୁଣରୁ ଅଧିକ ଅଭିବୃଦ୍ଧି ହାସଲ କରିଛି। ଖାଦ୍ୟଶସ୍ୟ ଉତ୍ପାଦନ କ୍ଷେତ୍ରରେ ଉତ୍କର୍ଷତା ହାସଲ ପାଇଁ ଆମ ରାଜ୍ୟ ୭ ବର୍ଷରେ ୫ଥର କୃଷି କର୍ମଣ ପୁରସ୍କାରରେ ସମ୍ମାନିତ ହୋଇଛି।




କୃଷି ଏବଂ ଆନୁଷଙ୍ଗିକ କୃଷିର ବିକାଶ ଦିଗରେ ସ୍ୱତନ୍ତ୍ର ଭାବରେ ଧ୍ୟାନ ଦେବା ପାଇଁ ଆମ ମୁଖ୍ୟମନ୍ତ୍ରୀ ସ୍ୱତନ୍ତ୍ର କୃଷି କ୍ୟାବିନେଟ୍ ଗଠନ କରିବା ସହିତ ୨୦୧୩-୧୪ ଠାରୁ କୃଷି ପାଇଁ ସ୍ୱତନ୍ତ୍ର କୃଷି ବଜେଟ୍ ଆରମ୍ଭ କରିଛନ୍ତି।

୨୦୧୩-୧୪ ବର୍ଷରେ କୃଷି କ୍ଷେତ୍ର ପାଇଁ ୭୧୬୨ କୋଟି ଟଙ୍କା ବ୍ୟୟବରାଦ କରାଯାଇଥିବା ବେଳେ ୨୦୧୭-୧୮ ବର୍ଷରେ ଏହାକୁ ଦୁଇଗୁଣରୁ ଅଧିକ ବୃଦ୍ଧି କରାଯାଇ କୃଷି ବଜେଟ୍‌ରେ ୧୪,୯୩୦ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି।

ଆମ ଚାଷୀମାନଙ୍କର ଆୟ ଦୁଇଗୁଣ ହୋଇଛି। ଆମ ମୁଖ୍ୟମନ୍ତ୍ରୀ ଆମ ରାଜ୍ୟର ଚାଷୀ ଭାଇଙ୍କ ଉନ୍ନତି, ଚାଷର ଅଗ୍ରଗତି ଏବଂ କୃଷକଙ୍କ ସାମଗ୍ରିକ ସାମାଜିକ କଲ୍ୟାଣ ନିମନ୍ତେ ନୂଆ ପ୍ରଗତିଶୀଳ ଯୋଜନା **'କାଳିଆ'** ଶୁଭାରମ୍ଭ କରିଛନ୍ତି। ଏହା ଚାଷୀଙ୍କ ପାଇଁ ଦେଶର ସବୁଠୁ ଭଲ କାର୍ଯ୍ୟକ୍ରମ ବୋଲି ପ୍ରମୁଖ ଅର୍ଥନୀତିଜ୍ଞମାନେ ଏହାକୁ ଅନୁଧ୍ୟାନ କରି ମତ ଦେଇସାରିଲେଣି। ଆମ ସମୟରେ କୃଷକ ଏବଂ କୃଷି କ୍ଷେତ୍ରରେ ବୈପ୍ଲବିକ ପରିବର୍ତ୍ତନ ଆଣିବା ପାଇଁ ଆମ ମୁଖ୍ୟମନ୍ତ୍ରୀଙ୍କର ଏହା ଏକ ଐତିହାସିକ ପଦକ୍ଷେପ। ଆମ ରାଜ୍ୟର ପ୍ରାୟ ୯୨% ଚାଷୀ ଏବଂ ସବୁ ଭୂମିହୀନ କୃଷି ଶ୍ରମିକ ଏହି ଯୋଜନାରୁ ଲାଭ

ପାଇବେ । 'କାଳିଆ' ଉଭୟ ଋଣୀ ଓ ଅଣଋଣୀ ଚାଷୀ, ଭାଗ ଚାଷୀ ଏବଂ ଭୂମିହୀନ ଚାଷୀ ଏବଂ କୃଷି ଶ୍ରମିକଙ୍କ ପାଇଁ ଉପଯୋଗୀ ସାବ୍ୟସ୍ତ ହେବ। ଏହି ଯୋଜନାରେ ୩୦ ଲକ୍ଷରୁ ଊର୍ଦ୍ଧ୍ୱ କ୍ଷୁଦ୍ର ଓ ନାମମାତ୍ର ଚାଷୀ ପରିବାର ଆଗାମୀ ୩ ବର୍ଷରେ ୫ଟି (ଉଭୟ ଖରିଫ ଓ ରବି ୫ଟି ଫସଲ) ଋତୁ ପାଇଁ ୫ଟି କିସ୍ତିରେ ୫ ହଜାର ଟଙ୍କା ହିସାବରେ ୨୫ ହଜାର ଟଙ୍କା ଲେଖାଏଁ ଆର୍ଥିକ ସହାୟତା ପାଇବେ। ଏହି ଯୋଜନାରେ ୧୦ ଲକ୍ଷ ଭୂମିହୀନ ଚାଷୀ ପରିବାର ଛେଳି ପାଳନ, ବତକ, ମାଛ, ଛତୁ, ମହୁ ଚାଷ ଏବଂ ଅଣ୍ଡା ଉତ୍ପାଦନ ଭଳି ଆନୁଷଙ୍ଗିକ ଚାଷ କାମ ପାଇଁ ୧୨,୫୦୦ ଟଙ୍କା ଲେଖାଏଁ ଆର୍ଥିକ ସହାୟତା ପାଇବେ। ସେହିପରି ଭୂମିହୀନ କୃଷି ଶ୍ରମିକ ଏବଂ ବୃଦ୍ଧାବସ୍ଥା, ଅକ୍ଷମତା, ରୋଗ ତଥା ଅନ୍ୟାନ୍ୟ କାରଣରୁ ଚାଷ ପାଇଁ ଅସମର୍ଥ ୧୦ ଲକ୍ଷ ଚାଷୀ ପରିବାର ବର୍ଷକୁ ୧୦ ହଜାର ଟଙ୍କା ଲେଖାଏଁ ଆର୍ଥିକ ସହାୟତା ପାଇବେ। ଏହା ବ୍ୟତୀତ ୫୦ ଲକ୍ଷ ଉଭୟ ଚାଷୀ ଓ ଭୂମିହୀନ ଚାଷୀଙ୍କୁ ପ୍ରତିବର୍ଷ ୨ ଲକ୍ଷ ଟଙ୍କାର ଜୀବନ ବୀମା ଓ ଦୁର୍ଘଟଣା କ୍ଷେତ୍ରରେ ଅତିରିକ୍ତ ୨ ଲକ୍ଷ ଟଙ୍କାର ବୀମା ସୁରକ୍ଷା ମିଳିବ। ପୂର୍ବରୁ ୧ ପ୍ରତିଶତ ସୁଧରେ ଚାଷ ପାଇଁ ମିଳୁଥିବା ଋଣ ଏଣିକି ବିନା ସୁଧରେ ଆମ ଚାଷୀଙ୍କୁ ମିଳିବ।

**'କାଳିଆ'** ଯୋଜନାରେ ୧୦ ହଜାର କୋଟିରୁ ଅଧିକ ଟଙ୍କା ଚାଷ ଏବଂ ଚାଷୀଙ୍କ ଉନ୍ନତି ସାଧନ ପାଇଁ ବ୍ୟୟ କରାଯିବ । ପ୍ରତ୍ୟେକ ଚାଷୀଙ୍କୁ ତାଙ୍କ ସହାୟତା ଅର୍ଥ ଡିବିଟି ମାଧ୍ୟମରେ ସିଧାସଳଖ ତାଙ୍କ ନିଜର ବ୍ୟାଙ୍କ ଆକାଉଣ୍ଟକୁ ଚାଲିଯିବ।

କାଳିଆ ଯୋଜନା ଘୋଷଣା ପରେ ନିକଟରେ ଆମ ମୁଖ୍ୟମନ୍ତ୍ରୀ ପୁରୀ ଜିଲ୍ଲା ମାଳତୀପାଟପୁରଠାରେ ଆୟୋଜିତ କୃଷକ ସମାବେଶରେ କାଳିଆ ସହାୟତା ଅର୍ଥ ବଣ୍ଟନର ଶୁଭାରମ୍ଭ କରିଥିଲେ। ଏହି ଦିନ ରାଜ୍ୟର ୧୨ ଲକ୍ଷ ୪୫ ହଜାର କୃଷକଙ୍କ ଜମାଖାତାରେ ୫ ହଜାର ଟଙ୍କା ଲେଖାଏଁ କରି ୬୨୨ କୋଟିରୁ ଅଧିକ ଟଙ୍କାର ସହାୟତା ଜମା କରାଯାଇଛି। ଏପର୍ଯ୍ୟନ୍ତ ୫୮ ହଜାରରୁ ଅଧିକ ଭାଗଚାଷୀଙ୍କୁ ୨୮କୋଟିରୁ ଊର୍ଦ୍ଧ୍ୱ ସହାୟତା କାଳିଆ ଯୋଜନାରେ ପ୍ରଥମ ପର୍ଯ୍ୟାୟରେ ପ୍ରଦାନ କରାଯାଇଛି।

୧୩ ଲକ୍ଷରୁ ଊର୍ଦ୍ଧ୍ୱ କ୍ଷୁଦ୍ର, ନାମମାତ୍ର ଓ ଭାଗଚାଷୀଙ୍କ ଜମାଖାତାକୁ ୫ ହଜାର ଟଙ୍କା ଲେଖାଏଁ ଦିଆଯାଇଛି। **କୌଣସି ବି ଯୋଗ୍ୟ ହିତାଧିକାରୀଙ୍କୁ ଏହି ଯୋଜନାରେ ସହାୟତା ପାଇବାରୁ ବଞ୍ଚିତ କରାଯିବ ନାହିଁ, ଏହା ଆମ ମୁଖ୍ୟମନ୍ତ୍ରୀଙ୍କ ନିଷ୍ପତ୍ତି।**

**କୃଷି କଲେ ଉନ୍ନତ ସକଳ ଉନ୍ନତି,** ସ୍ୱଭାବ କବି ଗଙ୍ଗାଧର ମେହେରଙ୍କ ସ୍ୱଭାବ ସୁଲଭ କବିତା **'କୃଷିର ଗୌରବ'**ର ଏଇ ଧାଡି ଦ୍ୱାରା ଅନୁପ୍ରାଣିତ ଆମ ମୁଖ୍ୟମନ୍ତ୍ରୀଙ୍କ 'କାଳିଆ' ଯୋଜନା ରାଜ୍ୟରେ କୃଷିର ସର୍ବାଙ୍ଗୀନ ଉନ୍ନତି ମାଧ୍ୟମରେ ଓଡ଼ିଶାର ବିକାଶ ଲକ୍ଷ୍ୟରେ ସମର୍ପିତ।

ସ୍ୱଳ୍ପବୃଷ୍ଟି ହେଉଥିବା ଜନଜାତି ଅଧ୍ୟୁଷିତ ଅଂଚଳରେ ବାଜରା, ଯଅ ପ୍ରଭୃତି ଚାଷକୁ ପ୍ରୋତ୍ସାହନ ଦେବା ପାଇଁ ଆମ ସରକାର **ଓଡ଼ିଶା ମିଲେଟ୍ ମିଶନ** ଆରମ୍ଭ କରିଛନ୍ତି। ଏହାଦ୍ୱାରା ରାଜ୍ୟର ୧୪ଟି ଜିଲ୍ଲାର ୬୨ଟି ବ୍ଲକରେ ବାଜରା, ଯଅ ଏବଂ ମାଣ୍ଡିଆ ପ୍ରଭୃତି ଫସଲ କରୁଥିବା ୫ ଲକ୍ଷ ଚାଷୀ ଉପକୃତ ହେଉଛନ୍ତି। ଏଥିପାଇଁ ଆମ ସରକାର ୧୦୦ କୋଟି ଟଙ୍କାର ବ୍ୟୟ ବରାଦ କରି ଚାଷୀମାନଙ୍କଠାରୁ ଉପଯୁକ୍ତ ମୂଲ୍ୟରେ ବାଜରା ପ୍ରଭୃତି ଉତ୍ପାଦନ ଖରିଦ କରି ଏହି ପାରମ୍ପରିକ ଫସଲ ଉତ୍ପାଦନ କରୁଥିବା ଚାଷୀମାନଙ୍କୁ ପ୍ରୋତ୍ସାହିତ କରୁଛନ୍ତି।



# ଚାଷୀଙ୍କୁ ଆମ ମୁଖ୍ୟମନ୍ତ୍ରୀଙ୍କ 'କାଳିଆ' ଚିଠି

କାଳିଆ
କୃଷି କଲେ ଉନ୍ନତ ସକଳ ଉନ୍ନତି

ଜୟ ଜଗନ୍ନାଥ !

ପ୍ରିୟ ଚାଷୀଭାଇ ଓ ଭଉଣୀମାନେ,

୧୯୯୯ର ମହାବାତ୍ୟା ଓଡିଶାର ମେରୁଦଣ୍ଡ ଭାଙ୍ଗି ଦେଇଥିଲା । ସବୁଠି ହତାଶା । ଚାଷବାସ ସବୁ ନଷ୍ଟ । ହଜାର ହଜାର ଲୋକ ବେସାହାରା । ଏଇ ଅବସ୍ଥାରେ ୨୦୦୦ ମସିହାରେ ଆପଣମାନେ ମତେ ଆପଣଙ୍କ ସେବା କରିବାର ସୁଯୋଗ ଦେଇଥିଲେ । ଆଗରେ ଥିଲା ଅନେକ ଆହ୍ୱାନ । ଆପଣମାନଙ୍କ ସାହସରେ ମୁଁ ଧୈର୍ଯ୍ୟର ସହ କାମ ଆରମ୍ଭ କରିଥିଲି ।

ସେତେବେଳର କଥା ଆପଣଙ୍କର ଭଲ ଭାବରେ ମନେ ଥିବ । ଆମ ପାଖରେ ରିଲିଫ୍ ଦେବା ପାଇଁ ଚାଉଳ ନଥିଲା । ଚାଉଳ ପାଇଁ ବାରମ୍ବାର କେନ୍ଦ୍ରକୁ ଫୋନ୍ କରିବାକୁ ପଡୁଥିଲା । କେବଳ ସେତିକି ନୁହେଁ, ଚାଉଳ ଆସିବା ପାଇଁ ରେଳ ୱାଗନ୍ ମଧ ମାଗିବାକୁ ପଡୁଥିଲା । ବାହାର ରାଜ୍ୟର ବଳକା ଚାଉଳ ଆସିଲେ ଆମ ଲୋକେ ରିଲିଫ୍ ପାଉଥିଲେ । ଗରିବଙ୍କୁ ଖାଦ୍ୟ ସୁରକ୍ଷା ଯୋଗାଇବା ପାଇଁ ମଧ ଆମ ପାଖରେ ଯଥେଷ୍ଟ ଚାଉଳ ନଥିଲା । ଏ କଥା ମୋତେ ବହୁତ କଷ୍ଟ ଦେଇଥିଲା ।

ଆମେ କାହା ଆଗରେ ହାତ ନ ପତେଇ ନିଜେ ଯଥେଷ୍ଟ ଫସଲ ଫଳେଇବା, ସେଥିପାଇଁ ମୁଁ ଏକ ସଂକଳ୍ପ ନେଇଥିଲି । ୨୦୦୭ରୁ ପରିସ୍ଥିତି ବଦଳିଗଲା । ଜଳସେଚନର ଉନ୍ନତି, ବୈଜ୍ଞାନିକ ଉପାୟରେ ଚାଷ ଏବଂ ସହଜରେ ଋଣ ମିଳିବା ଯୋଗୁଁ କୃଷି କ୍ଷେତ୍ରରେ ପରିବର୍ତ୍ତନ ଆସିଲା । ମହାପ୍ରଭୁଙ୍କ ଆଶୀର୍ବାଦ ଓ ଆମ ଚାଷୀଭାଇଙ୍କ କଠିନ ପରିଶ୍ରମ ଯୋଗୁଁ ଆମେ ଆଜି ଖାଦ୍ୟ ଉତ୍ପାଦନରେ ଏକ ବଳକା ରାଜ୍ୟ ହୋଇପାରିଛେ । କେବଳ ସେତିକି ନୁହେଁ, ଆଜି ଆମେ ଅନ୍ୟ ରାଜ୍ୟକୁ ଖାଦ୍ୟ ଯୋଗାଉଛୁ । ଆଜି ଦେଶର ସାଧାରଣ ବଣ୍ଟନ ବ୍ୟବସ୍ଥାରେ ଅଧିକ ଯୋଗଦାନ ଓଡିଶାର । ଏ ସବୁ ଆପଣମାନଙ୍କ ଯୋଗୁଁ ସମ୍ଭବ ହୋଇଛି । ମୋ ପାଇଁ ବଡ ଖୁସିର କଥା ଯେ ଆମ ଚାଷୀ ଭାଇଙ୍କ ଯୋଗୁଁ ଆମ ରାଜ୍ୟ ଆଜି ପାଞ୍ଚ ପାଞ୍ଚ ଥର କୃଷି କର୍ମଣ ପୁରସ୍କାର ପାଇଛି ।

ଆପଣ ଜାଣି ଖୁସି ହେବେ ଯେ ଜଳସେଚନ କ୍ଷେତ୍ରରେ ଆମେ ଆଜି ଅନେକ ଆଗରେ । ଗତ ୪ ବର୍ଷରେ ଆମେ ଜଳସେଚନ ପାଇଁ ୩୦ ହଜାର କୋଟି ଟଙ୍କା ଖର୍ଚ୍ଚ କରିଛୁ । ବର୍ତ୍ତମାନ ସୁଦ୍ଧା ଆମେ ଅଧିକ ୮ ଲକ୍ଷ ହେକ୍ଟର ଜମିକୁ ପାଣି ଯୋଗାଇପାରିଛୁ । ଆମେ କୃଷି ପାଇଁ ସ୍ୱତନ୍ତ୍ର କୃଷି ବଜେଟ୍ ଏବଂ କୃଷି କ୍ୟାବିନେଟ୍ ଭଳି ଗୁରୁତ୍ୱପୂର୍ଣ୍ଣ ନିଷ୍ପତ୍ତି ନେଇ କୃଷି କ୍ଷେତ୍ରରେ ବହୁଳ ପରିବର୍ତ୍ତନ ଆଣିଛେ । ୨୦୧୪ ମସିହାରେ ଆମେ କହିଥିବା ୧୦ ଲକ୍ଷ ହେକ୍ଟର ଅଧିକ ଚାଷ ଜମିକୁ ଜଳସେଚନ ଆମେ ଆସନ୍ତା ଏପ୍ରିଲ ସୁଦ୍ଧା ଯୋଗାଇଦେବୁ ।

ଗରିବୀ ଆଜି ଆଉ ଓଡିଶାର ପରିଚୟ ହୋଇ ରହିନାହିଁ । ଗରିବୀ କମାଇବା ହାରରେ ଓଡିଶା ସବୁଠାରୁ ଆଗରେ । ୨୦୦୪-୦୫ ମସିହାରୁ ୨୦୧୧-୧୨ ମସିହା ଭିତରେ ଆମେ ୮୦ ଲକ୍ଷ ଲୋକଙ୍କୁ ଗରିବୀ ସୀମାରେଖା ଉପରକୁ ଆଣିଛୁ ।

ଆମ ଚାଷୀ ଭାଇଭଉଣୀଙ୍କ କଲ୍ୟାଣ ଏବଂ ଚାଷରେ ଉନ୍ନତି ପାଇଁ ଆପଣଙ୍କ ସରକାର 'କାଳିଆ' ଯୋଜନା ଆରମ୍ଭ କରିଛି । ସାରା ଦେଶରେ ଏହା ଏକ ଭଲ ଯୋଜନା । ଏହା କୃଷି ଶ୍ରମିକ, ଭୂମିହୀନ ଭାଗଚାଷୀ, କ୍ଷୁଦ୍ର ଓ ନାମମାତ୍ର ଚାଷୀଙ୍କୁ ଚାଷ ପାଇଁ ସବୁ ସୁବିଧା ଯୋଗାଇଦେବା ସହିତ ଗରିବୀ ଦୂର କରିବାରେ ଏକ ଅମୋଘ ଅସ୍ତ୍ର ଭାବରେ କାମ କରିବ । ଆପଣ 'କାଳିଆ' ଯୋଜନାରେ ସାମିଲ ହେଉଥିବାର ଜାଣି ମୁଁ ବହୁତ ଖୁସି ।

'କାଳିଆ' ଯୋଜନାରେ ଆମର ୯୨ ଭାଗ ଚାଷୀଭାଇ ଉପକାର ପାଇବେ । ଖରିଫ୍ ଓ ରବି ଉଭୟ ଫସଲ ଋତୁ ପାଇଁ ଆପଣ ପାଞ୍ଚ ହଜାର ଟଙ୍କା ଲେଖାଏଁ ପାଇବେ । ଆପଣ ବିନା ସୁଧରେ ପଚାଶ ହଜାର ଟଙ୍କା ପର୍ଯ୍ୟନ୍ତ ଫସଲ ଋଣ ପାଇବେ । ଭୂମିହୀନ ଚାଷୀଙ୍କ ଜୀବନଜୀବିକା ପାଇଁ ୧୨,୫୦୦ ଟଙ୍କାର ସହାୟତା କାଳିଆ ଯୋଜନାରେ ଅଛି । ଚାଷ କାମ କରିପାରୁନଥିବା ଚାଷୀ ଏବଂ ଭୂମିହୀନ କୃଷି ଶ୍ରମିକଙ୍କ ପାଇଁ ୧୦ ହଜାର ଟଙ୍କା ସାହାଯ୍ୟ ମିଳିବାର ବ୍ୟବସ୍ଥା ମଧ  କାଳିଆ ଯୋଜନାରେ କରାଯାଇଛି ।

ଆପଣ ଜାଣି ଖୁସି ହେବେ ଯେ ପ୍ରତିବର୍ଷ ଅକ୍ଷୟ ତୃତୀୟା ଦିନ ଖରିଫ୍ ଏବଂ ନୂଆଖାଇ ଦିନ ରବି ଫସଲ ପାଇଁ ୫,୦୦୦ ଟଙ୍କା ଲେଖାଏଁ ଆପଣଙ୍କ ବ୍ୟାଙ୍କ୍ ଆକାଉଣ୍ଟରେ ଜମା ହେବ ବୋଲି ମୁଁ ନିଷ୍ପତ୍ତି କରିଛି । ମୁଁ ଆଶା କରୁଛି, ଏହି ଟଙ୍କାକୁ ଆପଣ ଚାଷ କାମରେ ଲଗାଇବେ ଏବଂ କୃଷି କ୍ଷେତ୍ରରେ ଓଡିଶାକୁ ଆହୁରି ଆଗକୁ ନେବେ ।

ମୁଁ  ସବୁବେଳେ ଆପଣଙ୍କ ସୁଖ ଦୁଃଖରେ ଅଛି । ଆପଣଙ୍କ ସାଥିରେ ଅଛି । ଆପଣଙ୍କ ପାଇଁ କାମ କରୁଛି  ଓ କରିଚାଲିବି । ଜଣେ ବି ଯୋଗ୍ୟ ଚାଷୀ ଯେପରି 'କାଳିଆ' ଯୋଜନାରୁ ବଞ୍ଚିତ ନହୁଅନ୍ତି, ତା' ଉପରେ ମୁଁ ନଜର ଦେବି । ଆପଣମାନେ ଚାଷ ବାସ କରି ଭଲରେ ରହିଲେ ମୁଁ ସବୁଠାରୁ ବେଶି ଖୁସି ହେବି ।

ବନ୍ଦେ ଉତ୍କଳ ଜନନୀ

କୃଷି କଲେ ଉନ୍ନତ ସକଳ ଉନ୍ନତି
କୃଷି ବିନା ନା କନ୍ଥା ନା ପନ୍ଥା
କାହିଁ ବା ଅନ୍ୟ ଗତି ହେ !
**-ସ୍ୱଭାବ କବି ଗଙ୍ଗାଧର ମେହେର**

ଆପଣଙ୍କର

ନବୀନ ପଟ୍ଟନାୟକ




**"୨୦୧୪ ମସିହାରେ ୧୦ ଲକ୍ଷ ହେକ୍ଟର ଅଧିକ ଚାଷଜମିକୁ ଜଳସେଚନ ଯୋଗାଇବାପାଇଁ ମୁଁ ନିଷ୍ପତ୍ତି କରିଥିଲି। ଏ ଭିତରେ ଆମେ ୮ଲକ୍ଷ ହେକ୍ଟରରୁ ଅଧିକ ଚାଷଜମିକୁ ଜଳସେଚିତ କରିସାରିଛୁ। ବାକି ଲକ୍ଷ୍ୟ ଏପ୍ରିଲ ୨୦୧୯ ସୁଦ୍ଧା ନିଶ୍ଚିତ ପୂରଣ ହେବ।"**

**- ନବୀନ ପଟ୍ଟନାୟକ**

ରାଜ୍ୟର କୃଷି ଏବଂ କୃଷକଙ୍କ ନିମନ୍ତେ ସମବାୟ ବିଭାଗ ଦ୍ୱାରା ଧାନ ସଂଗ୍ରହଣକୁ ବ୍ୟବସ୍ଥିତ କରିବା ପାଇଁ ଅନଲାଇନ୍ ଚାଷୀ ପଞ୍ଜୀକରଣ, ସଂଗ୍ରହଣ, ଗୁଣାତ୍ମକ ମାନ ନିର୍ଦ୍ଧାରଣ ଏବଂ ଧାର୍ଯ୍ୟ ସହାୟକ ମୂଲ୍ୟ ସହିତ ଉତ୍ତମ ବିପଣନ ବ୍ୟବସ୍ଥା ଅନୁସୃତ ହେବା ଲକ୍ଷ୍ୟରେ ରାଜ୍ୟ ସଂଗ୍ରହଣ କେନ୍ଦ୍ର ପ୍ରତିଷ୍ଠା କରାଯାଇଛି।

୨୦୧୪ ମସିହାଠାରୁ ଏ ପର୍ଯ୍ୟନ୍ତ ଜଳସେଚନ ବାବଦରେ ୨୬,୮୮୯ କୋଟି ଟଙ୍କା ଖର୍ଚ୍ଚ କରାଯାଇଛି ଏବଂ ଏ ବର୍ଷ ରେକର୍ଡ ୧୦,୧୯୬ କୋଟି ଟଙ୍କା ଜଳସେଚନ ବାବଦରେ ଆମ ସରକାର ବ୍ୟୟ କରୁଛନ୍ତି। ଆମ ସରକାର ଆମ ନିଜ ଯୋଜନାରୁ ୪୬ଟି ବୃହତ୍ ଉଠା ଜଳସେଚନ ପ୍ରକଳ୍ପ ମାଧ୍ୟମରେ ୫୪,୪୭୨ ହେକ୍ଟର, ୫୩,୫୭୬ଟି ଗଭୀର ସେଚ କୂପ ମାଧ୍ୟମରେ ୨,୬୭,୮୮୦ ହେକ୍ଟର, ୫୮୩୭ ଗୋଷ୍ଠୀ ଉଠା ଜଳସେଚନ ପ୍ରକଳ୍ପ ମାଧ୍ୟମରେ ୧,୨୯,୭୬୪ ହେକ୍ଟର, ୮୩୩୫ଟି ଚେକ୍ ଡ୍ୟାମ ମାଧ୍ୟମରେ ୯୭,୬୯୪ ହେକ୍ଟର ଜଳସେଚନ ସୁବିଧା ଇତିମଧ୍ୟରେ ଯୋଗାଇ ଦେଇଛନ୍ତି।

ଆମ ରାଜ୍ୟରେ ଚାଷ ଜମିକୁ ଜଳସେଚନ ସୁବିଧା ପାଇଁ 'ପାର୍ବତୀ ଗିରି ବୃହତ୍ ଉଠା ଜଳସେଚନ ଯୋଜନା', ଜଳନିଧି-୧ ଓ ଜଳନିଧି-୨ ଯୋଜନା, ଗଙ୍ଗାଧର ମେହେର ଲିଫ୍ଟ କେନାଲ ସିଷ୍ଟମ୍ ଏବଂ ମୁଖ୍ୟମନ୍ତ୍ରୀ ଆଡିବନ୍ଧ ତିଆରି ଯୋଜନା ଭଳି ଲକ୍ଷ୍ୟଭିତ୍ତିକ ଜଳସେଚନ କାର୍ଯ୍ୟକ୍ରମ ଆମ ଚାଷୀ ଭାଇମାନଙ୍କର ବେଶ୍ ଆଦର ଲାଭ କରିଛି।

ରାଜ୍ୟର ଯେଉଁ ଚାଷ ଜମି ପାଇଁ ବିଦ୍ୟୁତ୍ ସଂଯୋଗ କରାଯାଇ ପାରୁନାହିଁ, ସେହି ଜମିରେ ଜଳସେଚନ ଓ ଚାଷ ସୁବିଧା ପାଇଁ ଆମ ପ୍ରିୟ ମୁଖ୍ୟମନ୍ତ୍ରୀ ନିକଟରେ କୃଷକମାନଙ୍କ ପାଇଁ ସୌର ଜଳନିଧି ଯୋଜନାର ଶୁଭାରମ୍ଭ କରିଛନ୍ତି।

ଆମ ପ୍ରିୟ ମୁଖ୍ୟମନ୍ତ୍ରୀଙ୍କ ନିରନ୍ତର ଉଦ୍ୟମ ଯୋଗୁଁ ଜଳସେଚନ ସୁବିଧା ସୃଷ୍ଟି ଏବଂ ସେ ବାବଦରେ ବ୍ୟୟ କରିବାରେ ଓଡ଼ିଶା ଆଜି ଆମ ଦେଶର ଏକ ପ୍ରମୁଖ ରାଜ୍ୟ ଭାବରେ ପରିଗଣିତ।

# ମହିଳା ସଶକ୍ତିକରଣ

ଆମ ଗାଁ ଆମ ବିକାଶ କାର୍ଯ୍ୟକ୍ରମରେ ଆମ ମୁଖ୍ୟମନ୍ତ୍ରୀ ଗାଁ ଲୋକଙ୍କ ସହିତ ସିଧାସଳଖ ସେମାନଙ୍କ ଆବଶ୍ୟକତା ବିଷୟରେ ଆଲୋଚନା କରୁଥିବା ବେଳେ ମାଲକାନଗିରି ଜିଲ୍ଲା କାଲିମେଳା ବ୍ଲକର **ମମତା ପଡିଆମୀ** ମୁଖ୍ୟମନ୍ତ୍ରୀଙ୍କୁ କହିଥିଲେ ଯେ, ଆପଣ ବିଜୁ ସ୍ୱାସ୍ଥ୍ୟ କଲ୍ୟାଣ ଯୋଜନାରେ ପରିବାର ପାଇଁ ୫ ଲକ୍ଷ ଟଙ୍କାର ଚିକିତ୍ସା ସୁବିଧା ଘୋଷଣା କରିଛନ୍ତି । ମାତ୍ର ଘରେ ମା'ମାନଙ୍କର ସ୍ୱାସ୍ଥ୍ୟଗତ ସମସ୍ୟା ଅଧିକ । ଏଣୁ ମା'ମାନଙ୍କର ସମସ୍ୟା ପ୍ରତି ଧ୍ୟାନ ଦେଇ ବିଜୁ ସ୍ୱାସ୍ଥ୍ୟ କଲ୍ୟାଣ ଯୋଜନାରେ ମହିଳାମାନଙ୍କ ପାଇଁ ସ୍ୱତନ୍ତ୍ର ଭାବରେ ଅର୍ଥ ବ୍ୟବସ୍ଥା କରନ୍ତୁ । ମମତାଙ୍କ କଥାରେ ମୁଖ୍ୟମନ୍ତ୍ରୀ ମହିଳାଙ୍କ ପାଇଁ ବିଜୁ ସ୍ୱାସ୍ଥ୍ୟ କଲ୍ୟାଣ ଯୋଜନାରେ ଚିକିତ୍ସା ପାଇଁ ୭ ଲକ୍ଷ ଟଙ୍କାର ଅର୍ଥ ବ୍ୟବସ୍ଥା କଲେ ।




ସେମିତି ଏଇ ନିକଟରେ ଶେଷ ହୋଇଥିବା 'ମେକ୍ ଇନ୍ ଓଡ଼ିଶା'ରେ ଜଣେ ସଫଳ ମହିଳା ଉଦ୍ୟୋଗୀ ଭାବରେ ନିଜ ସଂଗ୍ରାମ ଏବଂ ସଫଳତାର କାହାଣୀ କହି ଦେଶର ପ୍ରମୁଖ ଶିଳ୍ପପତିମାନଙ୍କୁ ଆଶ୍ଚର୍ଯ୍ୟାନ୍ୱିତ କରିଦେଇଥିବା ସୁନ୍ଦରଗଡ ଜିଲ୍ଲାର **'କଲ୍ୟାଣୀ ସ୍ୱୟଂ ସହାୟିକା ଗୋଷ୍ଠୀ'**ର ସଭାପତି **ଜୟନ୍ତୀ ଏକ୍କା**, ଆଜି ରାଜ୍ୟର ୭୦ ଲକ୍ଷ ମହିଳାଙ୍କ ନୀରବ ବିପ୍ଳବର ପ୍ରତୀକ ପାଲଟିଥିବା **'ମିଶନ ଶକ୍ତି'**ର ଏହି ଲୌହ ମାନବୀ ଜୟନ୍ତୀ, ନିର୍ଭୀକ ଭାବରେ ବିଶ୍ୱର ବିଶିଷ୍ଟ ଶିଳ୍ପପତିମାନଙ୍କ ନିକଟରେ ବଖାଣିଥିବା ନିଜ ଛୋଟିଆ ସ୍ୱପ୍ନର ଅଭୂତପୂର୍ବ ବାସ୍ତବତା, ଆଜି ମହିଳା ସଶକ୍ତିକରଣର ଏକ ଅନନ୍ୟ ଉଦାହରଣ ହୋଇ ରହିଯାଇଛି । ଏଇ ନୀରବ ବିପ୍ଳବର ସଫଳ କର୍ଣ୍ଣଧାର ହେଉଛନ୍ତି ଆମ ପ୍ରିୟ ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ନବୀନ ପଟ୍ଟନାୟକ ।

ଅବଶ୍ୟ 'ମିଶନ ଶକ୍ତି'ରେ ସ୍ୱାବଲମ୍ବୀ ମହିଳାମାନଙ୍କର ସଫଳତାର ଗାଥା ଏବେ ଆଉ ମମତା କିମ୍ବା ଜୟନ୍ତୀଙ୍କ ଭିତରେ ସୀମିତ ହୋଇ ରହିନାହିଁ। ଏଇ ନିକଟରେ ପୁରୀରେ ଆୟୋଜିତ ହୋଇଥିବା 'ମିଶନ ଶକ୍ତି' ମହା ସମାବେଶରେ ଆମ ମୁଖ୍ୟମନ୍ତ୍ରୀ ଉପସ୍ଥିତ ୬୦ ହଜାର ସଶକ୍ତ ମହିଳାଙ୍କଠାରୁ ଶୁଣିଥିଲେ ତାଙ୍କ ସଶକ୍ତିକରଣର କଥା, ତାଙ୍କ ସଫଳତାର କଥା। ଏମିତି ଲମ୍ବିଥିଲା ସଶକ୍ତିକରଣ ଏବଂ ସହାୟତାର ଗାଥା। ଆଉ ଏଇ ୭୦ ଲକ୍ଷ ସ୍ୱାବଲମ୍ବୀ ମହିଳାଙ୍କ ପାଇଁ ଆମ ମୁଖ୍ୟମନ୍ତ୍ରୀ ଘୋଷଣା କରିଥିଲେ ନୂଆ ସହାୟତା, କହିଥିଲେ ମହିଳାମାନଙ୍କ ପାଇଁ ବିଧାନସଭା ଏବଂ ଲୋକସଭାରେ ଏକ ତୃତୀୟାଂଶ ସ୍ଥାନ ସଂରକ୍ଷଣ ପାଇଁ ସେ ନେଇଥିବା ଦୃଢ ନିଷ୍ପତ୍ତିର କଥା।

**ଏଣିକି ବିନା ସୁଧରେ ମିଳିବ ସ୍ୱୟଂ ସହାୟକ ଗୋଷ୍ଠୀକୁ ୩ ଲକ୍ଷ ଟଙ୍କା ପର୍ଯ୍ୟନ୍ତ ଋଣ । ସ୍ୱୟଂ ସହାୟକ ଗୋଷ୍ଠୀଙ୍କୁ ୧୫ ହଜାର ଟଙ୍କା ଲେଖାଏଁ ସିଡ୍ ମନି, ବ୍ଲକ ମହିଳା ସ୍ୱୟଂ ସହାୟକ ଗୋଷ୍ଠୀ ପାଇଁ ୨୫ ଲକ୍ଷ ଟଙ୍କାର ଆର୍ଥିକ ପ୍ରୋତ୍ସାହନ** ଏବଂ ସ୍ୱାବଲମ୍ବୀ ମହିଳାଙ୍କୁ **ଡିଜିଟାଲ ସ୍ମାର୍ଟ କରିବା ପାଇଁ** ମିଳିବ **୩ ହଜାର ଟଙ୍କା ଲେଖାଏଁ**

**ସହାୟତା** । ଆର୍ଥିକ ସ୍ତରରେ ସୁଦୃଢ ହେବେ ମହିଳା । ନିଜ ଘର ସଂସାର, ପରିବାର ଏବଂ ରାଜ୍ୟକୁ ନୂଆ କରି ଗଢିବା ପାଇଁ ମହିଳା ହିଁ ହେବେ ପ୍ରେରଣାର ନୂଆ ମାଧ୍ୟମ,ଏହାହିଁ ଆନ୍ତରିକ ଇଚ୍ଛା ଆମ ମୁଖ୍ୟମନ୍ତ୍ରୀଙ୍କର । ସାକାର ହେବ **'ସଶକ୍ତ ମହିଳା, ସୁଦୃଢ ଓଡ଼ିଶା'** ନିର୍ମାଣର ଅଭିଳାଷ ।

ରାଜ୍ୟର ଅଗଣିତ ମହିଳାଙ୍କୁ ସ୍ୱାବଲମ୍ବୀ କରାଯିବା ସହିତ ସେମାନଙ୍କ ଅର୍ଥନୈତିକ ବିକାଶ ଓ ସାମାଜିକ ଅଭିବୃଦ୍ଧି ପ୍ରକିୟାକୁ ତ୍ୱରାନ୍ୱିତ କରିବା ପାଇଁ ଏକ ସଂକଳ୍ପ ନେଇ ୨୦୦୧ ମସିହାରେ ମିଶନ ଶକ୍ତି ଆରମ୍ଭ କରିଥିଲେ ଆମ ମୁଖ୍ୟମନ୍ତ୍ରୀ, ଯାହା ଆଜି ୭୦ ଲକ୍ଷରୁ ଉର୍ଦ୍ଧ୍ୱ ମହିଳାଙ୍କୁ ନେଇ ୭ଲକ୍ଷରୁ ଉର୍ଦ୍ଧ୍ୱ ସ୍ୱୟଂ ସହାୟିକା ଗୋଷ୍ଠୀର ଏକ ମହାଦ୍ରୁମରେ ପରିଣତ ହୋଇଛି । **'ମିଶନ ଶକ୍ତି' ନିର୍ଦ୍ଦେଶାଳୟ** ମାଧ୍ୟମରେ ସଂଗଠିତ ଏହି ମହିଳାମାନଙ୍କର ସଶକ୍ତିକରଣ ଦିଗରେ ସେ ନିରନ୍ତର ପ୍ରଚେଷ୍ଟା ଜାରି ରଖିଛନ୍ତି ।

ମିଶନ ଶକ୍ତି ଜରିଆରେ ଅର୍ଥନୈତିକ ସ୍ୱାବଲମ୍ବନ ସହିତ ବାଳିକା ଓ ମହିଳାମାନଙ୍କ ସାମଗ୍ରିକ ବିକାଶ ନିମନ୍ତେ ସ୍ୱତନ୍ତ୍ର ନୀତି ପ୍ରଣୟନ, ପଞ୍ଚାୟତିରାଜ ଏବଂ ପୌରପାଳିକାରେ ୫୦% ସ୍ଥାନ ସଂରକ୍ଷଣ ମାଧ୍ୟମରେ ସେମାନଙ୍କର ରାଜନୈତିକ ସଶକ୍ତିକରଣ ସହିତ ସାମାଜିକ ନିରାପତ୍ତା ଯୋଗାଇ ଦିଆଯାଇ ମହିଳାମାନଙ୍କର ପୂର୍ଣ୍ଣ ସଶକ୍ତିକରଣ ନିଶ୍ଚିତ କରାଯାଉଛି ।

ମହିଳା ଓ ଶିଶୁ ବିକାଶ ବିଭାଗ ଦ୍ୱାରା କାର୍ଯ୍ୟକାରୀ କରାଯାଉଥିବା ଅନୁପୂରକ ପୁଷ୍ଟି ଯୋଜନାର ବିକେନ୍ଦ୍ରୀକରଣ କରିବାରେ ଓଡ଼ିଶା ସମଗ୍ର ଦେଶରେ ଅଗ୍ରଣୀ ରାଜ୍ୟ ଭାବରେ ପରିଗଣିତ ହୋଇଛି ଏବଂ ଦେଶର ଅନ୍ୟ ରାଜ୍ୟମାନଙ୍କ ପାଇଁ ଅନୁକରଣୀୟ ହୋଇପାରିଛି । ଏ ଦିଗରେ ଆମ ଅଙ୍ଗନୱାଡି କର୍ମୀମାନଙ୍କ କର୍ତ୍ତବ୍ୟନିଷ୍ଠା ପ୍ରଶଂସନୀୟ ।

## ଜନଜାତିଙ୍କ ସଶକ୍ତିକରଣ

> ''ଜନଜାତି ପିଲାଏ ପାଠପଢାଠୁ ଆରମ୍ଭ କରି ଖେଳ ପର୍ଯ୍ୟନ୍ତ ସବୁଥିରେ ଆଗୁଆ ହୁଅନ୍ତୁ । ଆମ ସମସ୍ତଙ୍କ ପାଇଁ ଗର୍ବ ଓ ଗୌରବର କାରଣ ହୁଅନ୍ତୁ ।''
>
> **- ନବୀନ ପଟ୍ଟନାୟକ**



ଜନଜାତି •ସଂସ୍କୃତି •ପ୍ରଗତି

ଓଡ଼ିଶାର ବିକାଶ ଯାତ୍ରାରେ ଜନଜାତିଙ୍କ ସଶକ୍ତିକରଣ ଆମ ମୁଖ୍ୟମନ୍ତ୍ରୀଙ୍କ ପାଇଁ ସବୁଠୁ ବେଶି ଗୁରୁତ୍ୱପୂର୍ଣ୍ଣ ଏବଂ ସେଥିପାଇଁ ଜନଜାତି ଛାତ୍ରଛାତ୍ରୀଙ୍କୁ ଆବାସିକ ଶିକ୍ଷା ସୁବିଧା ଯୋଗାଇବାରେ ଆଜି ଓଡ଼ିଶା ଅଗ୍ରଣୀ । ଜନଜାତିଙ୍କ କଲ୍ୟାଣ ନିମନ୍ତେ ଉଦ୍ଦିଷ୍ଟ ଯୋଜନାଗୁଡିକୁ ସଫଳତାର ସହିତ କାର୍ଯ୍ୟକାରୀ କରାଇ ଜନଜାତିଙ୍କୁ ସମର୍ଥ ଓ ସଶକ୍ତ କରିବା ସହିତ ସେମାନଙ୍କ ସାମାଜିକ ଓ ଅର୍ଥନୈତିକ ଜୀବନରେ ଦ୍ରୁତ ପରିବର୍ତ୍ତନ ଆଣିବାରେ ଆମ ରାଜ୍ୟ ଦେଶର ଅନ୍ୟତମ ପ୍ରମୁଖ ରାଜ୍ୟ ।

ବିଗତ ୪ ବର୍ଷ ମଧ୍ୟରେ ଆବାସିକ ଶିକ୍ଷା ସୁବିଧା ପାଇଁ ୧୮୦୦ଟି ନୂତନ ଛାତ୍ରାବାସ କାର୍ଯ୍ୟକ୍ଷମ ହୋଇଛି । ଆଉ ଅଧିକ ୭୦୦ଟି ଛାତ୍ରାବାସ ଯଥାଶୀଘ୍ର ସଂପୂର୍ଣ୍ଣ ହେବ ।

ଛାତ୍ରଛାତ୍ରୀମାନଙ୍କୁ ଅଗ୍ରଣୀ ଘରୋଇ ବିଦ୍ୟାଳୟରେ ଇଂରାଜୀ ମାଧ୍ୟମ ଗୁଣାତ୍ମକ ଶିକ୍ଷା ସୁବିଧା ଯୋଗାଇଦେବା ନିମନ୍ତେ **'ଅନ୍ୱେଷା'** ଯୋଜନା, ସହରାଞ୍ଚଳରେ ରହି ଉଚ୍ଚଶିକ୍ଷା ଲାଭ କରିବା ନିମନ୍ତେ ଅଭିନବ ପ୍ରକଳ୍ପ **'ଆକାଂକ୍ଷା'**, ଦୁର୍ଗମ ଅଞ୍ଚଳର

ଛାତ୍ରଛାତ୍ରୀମାନଙ୍କୁ ଉତ୍ତମ ଶିକ୍ଷା ଦାନ ପାଇଁ ଅନୁକୂଳ ବାତାବରଣ ସୃଷ୍ଟି ନିମନ୍ତେ ୧୧ ଗୋଟି ମହାବିଦ୍ୟାଳୟର ଭିତ୍ତିଭୂମି ବିକାଶ ଭଳି ସଂଖ୍ୟାଧିକ ଗୁରୁତ୍ୱପୂର୍ଣ୍ଣ ପଦକ୍ଷେପ ଗ୍ରହଣ କରିଛନ୍ତି ଆମ ସରକାର।

ଜଙ୍ଗଲ ଜମି ଅଧିକାର ଆଇନ୍‌କୁ ସଫଳତାର ସହିତ କାର୍ଯ୍ୟକାରୀ କରାଯାଇ ଜଙ୍ଗଲ ଜମି ଉପରେ ଚାଷ ଓ ବାସ ପାଇଁ ନିର୍ଭର କରି ଚଳୁଥିବା ଜନଜାତି ଲୋକମାନଙ୍କୁ କିଭଳି ଜଙ୍ଗଲ ଜମି ଅଧିକାର ଦେଇ ସଶକ୍ତ କରାଯାଏ, ସାରା ଭାରତରେ ତା'ର ଶ୍ରେଷ୍ଠ ଉଦାହରଣ ହେଉଛି ଆମ ରାଜ୍ୟ ଓଡ଼ିଶା। ଅଧିକାର ମିଳିଥିବା ଜଙ୍ଗଲ ଜମି ସହିତ ବିଭିନ୍ନ ଜନହିତକାରୀ ଯୋଜନା ସଂଯୋଗ କରାଯାଇ ୪ ଲକ୍ଷ ୧୫ ହଜାରରୁ ଉର୍ଦ୍ଧ୍ୱ ଜନଜାତିଙ୍କୁ ୬ ଲକ୍ଷ ୧୫ ହଜାର ଏକର **ଜଙ୍ଗଲ ଜମି ଉପରେ ସ୍ୱତ୍ୱ ପ୍ରଦାନ** କରିଥିବା ଆମ ରାଜ୍ୟ ଓଡ଼ିଶା ଆଜି ସମଗ୍ର ଦେଶରେ ପ୍ରଥମ । ସେହିଭଳି ୬୩୦୦ ଗୋଷ୍ଠୀ ଅଧିକାର ସ୍ୱତ୍ୱ ସହିତ ଆପଦଗ୍ରସ୍ତ ଜନଜାତି ପରିବାରଙ୍କୁ ୧୮ ହଜାର ୪୮୦ଟି ବ୍ୟକ୍ତିଗତ ସ୍ୱତ୍ୱ ପ୍ରଦାନ କରି ଆମ ସରକାର ଅନ୍ୟ ରାଜ୍ୟମାନଙ୍କ ପାଇଁ ଅନୁକରଣୀୟ ହୋଇପାରିଛନ୍ତି ।



ଜନଜାତି ପୂଜାପୀଠର ରକ୍ଷଣାବେକ୍ଷଣ ଓ ଉନ୍ନତି ପାଇଁ ଆମ ସରକାର ଆରମ୍ଭ କରିଛନ୍ତି **'ପବିତ୍ର ପୂଜାପୀଠ ସ୍ଥଳୀର ସଂରକ୍ଷଣ'** ଯୋଜନା।

୧୩ ଟି ନିର୍ଦ୍ଦିଷ୍ଟ ଆପଦଗ୍ରସ୍ତ ଜନଜାତି ଗୋଷ୍ଠୀ ସହିତ ୬୨ଟି ବର୍ଗର ଜନଜାତିଙ୍କ ସଂସ୍କୃତି, ପରଂପରା, ଐତିହ୍ୟ ଓ ପରିଚିତି ସୁରକ୍ଷା ସହ ସେମାନଙ୍କର ସାମଗ୍ରିକ ବିକାଶ ଲକ୍ଷ୍ୟରେ ଆମ ସରକାର ୯ଟି ଆଦିବାସୀ ବହୁଳ ଜିଲ୍ଲା ପାଇଁ **'ସ୍ୱତନ୍ତ୍ର ଉନ୍ନୟନ ପରିଷଦ'** ଗଠନ କରି ଏକ ଐତିହାସିକ ପଦକ୍ଷେପ ଗ୍ରହଣ କରିଛନ୍ତି। ପ୍ରତ୍ୟେକ ସ୍ୱତନ୍ତ୍ର ଉନ୍ନୟନ ପରିଷଦ ବ୍ଲକ୍‌କୁ ୧ କୋଟି ୫୦ ଲକ୍ଷ ଟଙ୍କା ପ୍ରଦାନ ବ୍ୟବସ୍ଥା କରିଛନ୍ତି। ୯ଟି ଜନଜାତି ବହୁଳ ସୁନ୍ଦରଗଡ, ଗଜପତି, ମୟୂରଭଞ୍ଜ, କେନ୍ଦୁଝର, ରାୟଗଡା, କୋରାପୁଟ, ନବରଙ୍ଗପୁର, ମାଲକାନଗିରି ଏବଂ କନ୍ଧମାଳ ଜିଲ୍ଲାର ୧୧୭ ବ୍ଲକ, ୨୦ ହଜାର ୨୨୨ଟି ଗ୍ରାମପଞ୍ଚାୟତ, ୧୮ ହଜାର ୬୮୭ ଗ୍ରାମ ଓ ୧୪ ଲକ୍ଷ ଜନଜାତି ପରିବାର ଏହି ଉନ୍ନୟନ ପରିଷଦରେ ସାମିଲ ହୋଇଛନ୍ତି।

ଏଥର ଭୁବନେଶ୍ୱର ଆଦିବାସୀ ପଡିଆର ନୂଆ ପରିଚୟ ହେବ **'ଜନଜାତି ହାଟ'** । କେବଳ ବର୍ଷକୁ ଥରେ ହେଉଥିବା ଆଦିବାସୀ ମେଳା ନୁହେଁ, ସେଠାରେ ସବୁଦିନେ ମିଳିବ ଜନଜାତିଙ୍କ ଦ୍ୱାରା ପ୍ରସ୍ତୁତ ସାମଗ୍ରୀ। ସାଢେ ୫ ଏକର ଜାଗାରେ ୧୦ କୋଟି ଟଙ୍କାରେ ନିର୍ମିତ ହେବାକୁ ଥିବା ଏହି ଜନଜାତି ହାଟ ୨୦୨୦ ମାର୍ଚ୍ଚ ମାସ ସୁଦ୍ଧା ଖୋଲାଯିବାକୁ ଲକ୍ଷ୍ୟ ରଖାଯାଇଛି। ଏହା ଜନଜାତିଙ୍କ ରୋଜଗାର ବଢେଇବା ପାଇଁ ନୂଆ ସମ୍ଭାବନା ସୃଷ୍ଟି କରିବ।

# ନାଗରିକ ସଶକ୍ତିକରଣ

ଆମ ସରକାର ସାଧାରଣ ନାଗରିକ, ବରିଷ୍ଠ ନାଗରିକ, ଭିନ୍ନକ୍ଷମ, କିନ୍ନର, ଅସହାୟ ଓ ଗୃହହୀନମାନଙ୍କର ଅର୍ଥନୈତିକ ବିକାଶ ଓ ସେମାନଙ୍କୁ ସମ୍ମାନର ସହିତ ଜୀବନଯାପନ କରିବା ପାଇଁ ନିରନ୍ତର ଉଦ୍ୟମ ଜାରି ରଖିଛନ୍ତି ।

**ସୂଚନା ଅଧିକାର ଆଇନ୍ ୨୦୦୫** ଆମ ନାଗରିକମାନଙ୍କୁ ସଶକ୍ତ କରିଛି । ଜନସାଧାରଣଙ୍କ ଆବେଦନକ୍ରମେ ଯେକୌଣସି ସରକାରୀ ନଥିପତ୍ରର ନକଲ ନିର୍ଦ୍ଧାରିତ ସମୟସୀମା ମଧ୍ୟରେ ମିଳିପାରୁଛି । ଏହି ଆଇନ୍ କାର୍ଯ୍ୟକାରୀ ହେବା ଫଳରେ ଶାସନ ଆହୁରି ଲୋକାଭିମୁଖୀ ହେବା ସହିତ ସରକାରୀ କାର୍ଯ୍ୟ ପ୍ରଣାଳୀରେ ସ୍ୱଚ୍ଛତା ଓ ଉତ୍ତରଦାୟିତ୍ୱ ବୃଦ୍ଧି ପାଇଛି ।



ନାଗରିକମାନଙ୍କୁ ନିର୍ଦ୍ଧାରିତ ସମୟ ସୀମା ମଧ୍ୟରେ ଲୋକସେବା ତଥା ତତ୍ ସଂବନ୍ଧିତ ଆନୁଷଙ୍ଗିକ ସେବା ଯୋଗାଇଦେବା ନିମିତ୍ତ **ଲୋକସେବା ଅଧିକାର ଅଧିନିୟମ ୨୦୧୨** ପ୍ରଣୟନ କରାଯାଇଛି । ପ୍ରଥମ ପର୍ଯ୍ୟାୟରେ ରାଜ୍ୟ ସରକାରଙ୍କ ବିଭିନ୍ନ ବିଭାଗ ଦ୍ୱାରା କାର୍ଯ୍ୟକାରୀ ହେଉଥିବା ୩୪ ପ୍ରକାର ସେବାକୁ ଏହାର ଅନ୍ତର୍ଭୁକ୍ତ କରାଯାଇଛି ଏବଂ ନିର୍ଦ୍ଧାରିତ ସମୟ ସୀମା ମଧ୍ୟରେ ଉଦ୍ଦିଷ୍ଟ ସେବା ଯୋଗାଇଦେବା କ୍ଷେତ୍ରରେ ସରକାରୀ ପଦାଧିକାରୀମାନଙ୍କର ଉତ୍ତରଦାୟିତ୍ୱ ଏହାଦ୍ୱାରା ବୃଦ୍ଧି ପାଇଛି ।

୨୦୧୪ ମସିହାଠାରୁ ଏ ଭିତରେ ରାଜ୍ୟରେ ୨୨୦ଟି **ନୂତନ କୋର୍ଟ ପ୍ରତିଷ୍ଠା** କରାଯାଇ ରାଜ୍ୟବାସୀଙ୍କୁ ସୁବିଧାରେ ନ୍ୟାୟ ପ୍ରଦାନ ଓ ଆଇନ୍ ସେବା ଯୋଗାଇଦେବା ବ୍ୟବସ୍ଥା କରାଯାଉଛି । ମହିଳାମାନଙ୍କ ଉପରେ ହେଉଥିବା ହିଂସା ସଂପର୍କିତ ମାମଲାଗୁଡିକର ତୁରନ୍ତ ଫଇସଲା ନିମନ୍ତେ ୩୦ଟି **ସ୍ୱତନ୍ତ୍ର କୋର୍ଟ** ଏବଂ ଅନୁସୂଚିତ ଜନଜାତି ଓ ଅନୁସୂଚିତ ଜାତି ମାମଲାଗୁଡିକର ଫଇସଲା ନିମନ୍ତେ ସ୍ୱତନ୍ତ୍ର କୋର୍ଟ ସ୍ଥାପନ କରାଯାଇଛି ।

ବରିଷ୍ଠ ନାଗରିକମାନଙ୍କର ସାମାଜିକ, ଆର୍ଥିକ ଏବଂ ଶାରୀରିକ ସୁରକ୍ଷା ପାଇଁ ପର୍ଯ୍ୟାପ୍ତ ବ୍ୟବସ୍ଥା କରିବା ସହିତ ସେମାନେ ଯେପରି ସମାଜରେ ସମ୍ମାନର ସହିତ ବଂଚିବେ ଏବଂ ସେମାନଙ୍କର ଅଧିକାର ସାବ୍ୟସ୍ତ କରିବା ପାଇଁ ସକ୍ଷମ ହେବେ, ସେଥିପାଇଁ ଆମ ମୁଖ୍ୟମନ୍ତ୍ରୀଙ୍କ ଦିଗ୍ଦର୍ଶନରେ **ଓଡ଼ିଶା ବରିଷ୍ଠ ନାଗରିକ ନୀତି ୨୦୧୬** ପ୍ରଣୟନ କରାଯାଇଛି ।



ଦେଶର ପ୍ରମୁଖ ତୀର୍ଥସ୍ଥାନ ଭ୍ରମଣ କରିବା ପାଇଁ ବରିଷ୍ଠ ନାଗରିକମାନଙ୍କୁ ସୁଯୋଗ ଦେବା ଉଦ୍ଦେଶ୍ୟରେ ଆମ ମୁଖ୍ୟମନ୍ତ୍ରୀ **ବରିଷ୍ଠ ନାଗରିକ ତୀର୍ଥଯାତ୍ରା ଯୋଜନା** ୨୦୧୬ ମସିହା ଜୁଲାଇ ୨୫ ତାରିଖରୁ ଆରମ୍ଭ କରିଛନ୍ତି। ବରିଷ୍ଠ ନାଗରିକମାନଙ୍କୁ ଟ୍ରେନ୍‌ରେ ଖାଦ୍ୟପେୟ, ଆନୁଷଙ୍ଗିକ ସୁବିଧାସୁଯୋଗ ସମେତ ବ୍ୟକ୍ତିଗତ କିଟ୍ ପ୍ରଦାନ କରାଯାଉଥିବା ବେଳେ ଚିକିତ୍ସା ସେବାର ବ୍ୟବସ୍ଥା ରହିଛି। ପ୍ରତିବର୍ଷ ୩ଟି ଟ୍ରେନ୍ ତୀର୍ଥଯାତ୍ରୀଙ୍କୁ ନେଇ ଯାତ୍ରା କରୁଥିବାବେଳେ ଏଣିକି ୬ଟି ଟ୍ରେନ୍ ଯାତ୍ରା କରିବାର ବ୍ୟବସ୍ଥା କରାଯାଉଛି। ଏହି ଯୋଜନାରେ ଆମ ସରକାର ପ୍ରତିବର୍ଷ ୧୧ କୋଟି ଟଙ୍କା ବଜେଟ୍ ବ୍ୟବସ୍ଥା କରିଛନ୍ତି।

ନିରାଶ୍ରୟ ବରିଷ୍ଠ ନାଗରିକମାନଙ୍କ ନିମନ୍ତେ ପ୍ରତି ଜିଲ୍ଲାରେ ସମସ୍ତ ଅତ୍ୟାଧୁନିକ ମାନର ସୁବିଧା ସୁଯୋଗ ସହିତ **ଜରା ନିବାସ (ଓଲ୍ଡ ଏଜ୍ ହୋମ)** ସ୍ଥାପନ କରାଯାଇଛି।

ଆମ ସରକାର ନିଜସ୍ୱ ପାଣ୍ଠିରୁ ୨୦୧୭-୧୮ ଆର୍ଥିକ ବର୍ଷରେ ୪୪ ହଜାରରୁ ଊର୍ଦ୍ଧ୍ୱ ଭିନ୍ନକ୍ଷମ ଛାତ୍ରଛାତ୍ରୀଙ୍କୁ **ବାଣୀଶ୍ରୀ ଶିକ୍ଷାବୃତ୍ତି** ମଂଜୁର କରିଛନ୍ତି। ୮୦୧୬ ଜଣ ଭିନ୍ନକ୍ଷମ ହିତାଧିକାରୀଙ୍କୁ ବ୍ୟାଙ୍କ ଋଣ ଓ ମୁଖ୍ୟମନ୍ତ୍ରୀଙ୍କ ସହାୟତା ପାଣ୍ଠି ଜରିଆରେ ସ୍ୱାବଲମ୍ବୀ କରାଯାଇଛି। ୪ଟି ନିଯୁକ୍ତି ମେଳା ଆୟୋଜନ କରାଯାଇ ୧୨୩୨ ଭିନ୍ନକ୍ଷମଙ୍କୁ ନିଯୁକ୍ତି ନିମନ୍ତେ ମନୋନୟନ କରାଯାଇଛି। ୧୯ ଜଣ ଭିନ୍ନକ୍ଷମଙ୍କୁ ବିଭିନ୍ନ କ୍ଷେତ୍ରରେ କୃତିତ୍ୱ ହାସଲ କରିଥିବାରୁ ଆମ ସରକାର ସେମାନଙ୍କୁ ପୁରସ୍କୃତ କରିଛନ୍ତି। ଭୁବନେଶ୍ୱରଠାରେ **ଭିନ୍ନକ୍ଷମଙ୍କ ନିମନ୍ତେ ଏକ ସ୍ୱତନ୍ତ୍ର ପାଠାଗାର** ଓ ସ୍ୱ-ରୋଜଗାର ନିମନ୍ତେ **ତାଲିମ ତଥା ଉତ୍ପାଦନ କେନ୍ଦ୍ର** ପ୍ରତିଷ୍ଠା କରାଯିବା ସହିତ ରମାଦେବୀ ମହିଳା ବିଶ୍ୱବିଦ୍ୟାଳୟ ପରିସରରେ ଏକ **ଭିନ୍ନକ୍ଷମ ଛାତ୍ରୀ ନିବାସ** କାର୍ଯ୍ୟକ୍ଷମ ହୋଇଛି ଏବଂ ଜଟଣୀଠାରେ ଏକ **ସ୍ୱତନ୍ତ୍ର ଶିଳ୍ପ ତାଲିମ କେନ୍ଦ୍ର** ପ୍ରତିଷ୍ଠା କରାଯାଇଛି। ୨୦୧୭-୧୮ ଆର୍ଥିକ ବର୍ଷରୁ ଭିନ୍ନକ୍ଷମମାନଙ୍କ ପାଇଁ ସରକାରୀ ଏବଂ ସାଧାରଣ ଉଦ୍ୟୋଗରେ ନିଯୁକ୍ତି ପାଇଁ ସ୍ଥାନ ସଂରକ୍ଷଣ ୩ ପ୍ରତିଶତରୁ ୪ ପ୍ରତିଶତକୁ ବୃଦ୍ଧି କରାଯାଇଛି। ରାଜ୍ୟର ବିଭିନ୍ନ ଜିଲ୍ଲା ଏବଂ ବ୍ଲକ ସ୍ତରରେ ୩୬୯ଟି **ଭୀମଭୋଇ ଭିନ୍ନକ୍ଷମ ସାମର୍ଥ୍ୟ ଅଭିଯାନ ଶିବିର** ଆୟୋଜନ କରାଯାଇ ୨ ଲକ୍ଷ ୧୩ ହଜାର ୮୪୦ ଜଣ ଭିନ୍ନକ୍ଷମଙ୍କ ଗତିଶୀଳତା ବୃଦ୍ଧି କରିବା ପାଇଁ ବିଭିନ୍ନ ପ୍ରକାରର ସହାୟତା ଯୋଗାଇ ଦିଆଯାଉଛି। ସେମାନଙ୍କୁ ବୟସ ନିର୍ବିଶେଷରେ ପ୍ରତି ମାସରେ ଭତ୍ତା ଦିଆଯାଉଛି।



# ବସ୍ତି ବାସିନ୍ଦାଙ୍କ ସଶକ୍ତିକରଣ




‘‘ଆମକୁ ସହରାଞ୍ଚଳରେ ଥିବା ବସ୍ତିବାସିନ୍ଦାଙ୍କ ପାଇଁ ଏକ କଠୋର ନିଷ୍ପତ୍ତି ନେବାକୁ ଥିଲା । ଆମ ପାଖରେ ଗୋଟିଏ ବାଟ ଥିଲା ଯେ ସେମାନଙ୍କୁ ଉଚ୍ଛେଦ କରିବାର ପ୍ରଥା ଜାରି ରଖିବା ଏବଂ ସେମାନଙ୍କୁ ଜବରଦଖଲକାରୀ ଭାବେ ପରିଗଣିତ କରି ଲକ୍ଷ ଲକ୍ଷ ପରିବାରକୁ ଭୟ ଓ ଅସହାୟତାର ବାତାବରଣ ମଧ୍ୟରେ ରଖିବା । ଆଉ ଗୋଟିଏ ବାଟ ଥିଲା, ସହରର ଦୈନନ୍ଦିନ ଜୀବନରେ ସେମାନଙ୍କର ଗୁରୁତ୍ୱପୂର୍ଣ୍ଣ ଯୋଗଦାନକୁ ଗ୍ରହଣ କରି ସେମାନଙ୍କୁ ଜମି ଅଧିକାର ପ୍ରଦାନ କରିବା ।

ଲୋକଙ୍କୁ ପ୍ରାଥମିକତା ଦେଇ ଆମେ ଦ୍ୱିତୀୟ ପଥଟି ଅନୁସରଣ କଲୁ । ଏହି ନିଷ୍ପତ୍ତି ଦେଶରେ ପ୍ରଥମ ଥର ପାଇଁ ନିଆଯାଇଛି ଏବଂ କୁହାଯାଉଛି ଯେ ଏହା ଐତିହାସିକ ଓ ପଥ ପ୍ରଦର୍ଶକ ।’’

– ନବୀନ ପଟ୍ଟନାୟକ

ବସ୍ତି ବାସିନ୍ଦାଙ୍କୁ **ସହରରେ ବାସୋପଯୋଗୀ ଜମି ଅଧିକାର ପ୍ରଦାନ** ଆମ ମୁଖ୍ୟମନ୍ତ୍ରୀଙ୍କର ଏକ ଐତିହାସିକ ପଦକ୍ଷେପ ।

‘ଜାଗା’ ଯୋଜନାର ଶୁଭାରମ୍ଭ କରି ପ୍ରଥମ ଦିନ ଗଞ୍ଜାମ ଜିଲ୍ଲାର ଛତ୍ରପୁରଠାରେ ଅନୁଷ୍ଠିତ ସ୍ୱତନ୍ତ୍ର କାର୍ଯ୍ୟକ୍ରମରେ




ଆମ ମୁଖ୍ୟମନ୍ତ୍ରୀ ୧୦୦ ଜଣ ବସ୍ତି ବାସିନ୍ଦାଙ୍କୁ **ଜମି ଅଧିକାର ପ୍ରମାଣପତ୍ର** ପ୍ରଦାନ କରିଥିଲେ । ପର୍ଯ୍ୟାୟ କ୍ରମେ ଏହି ସୁବିଧା ରାଜ୍ୟର ଅନ୍ୟ ସହରାଂଚଳକୁ ପରିବ୍ୟାପ୍ତ ହୋଇଛି । ଅଭିଜ୍ଞତା ସମ୍ପନ୍ନ ଟାଟା ଟ୍ରଷ୍ଟଙ୍କ ସହଭାଗିତା ଓ ଆନ୍ତର୍ଜାତିକ ଖ୍ୟାତିସଂପନ୍ନ ସ୍ଥପତି ନର୍ମାନ୍ ଫଷ୍ଟର ଫାଉଣ୍ଡେସନର ସଭାପତି ନର୍ମାନ୍ ଫଷ୍ଟରଙ୍କ ବୈଷୟିକ ସହଯୋଗ କ୍ରମେ ବସ୍ତି ବାସିନ୍ଦାଙ୍କୁ ଜମି ଅଧିକାର ପ୍ରମାଣପତ୍ର ପ୍ରଦାନ ପରେ ସରକାରଙ୍କ ତରଫରୁ ସେମାନଙ୍କୁ ସୁଲଭ ବାସଗୃହ ସହିତ ଉତ୍ତମ ସହରୀ ସୁବିଧା ଯୋଗାଇ ଦେବା ପାଇଁ ଆମ ପ୍ରିୟ ମୁଖ୍ୟମନ୍ତ୍ରୀ ପୁରୀରୁ ଏଇ ନିକଟରେ ଶୁଭାରମ୍ଭ କରିଥିଲେ **‘ଜାଗା ମିଶନ’** । ଏହି ମିଶନ ଜରିଆରେ ଆମ ରାଜ୍ୟର ଚିହ୍ନଟ ହୋଇଥିବା ସ୍ୱୀକୃତିପ୍ରାପ୍ତ ପ୍ରାୟ ୩ ହଜାର ବସ୍ତିରେ ରହୁଥିବା ୧୮ ଲକ୍ଷ ଲୋକ ଉପକୃତ ହେବେ । ବସ୍ତିବାସିନ୍ଦାଙ୍କ ବସତି ସୁବିଧା ନିମନ୍ତେ ଉମିଦ୍‌ୱାର ନେଟ୍‌ୱର୍କ ଓ ଚିକାଗୋ ବିଶ୍ୱବିଦ୍ୟାଳୟ ମଧ୍ୟ ବୈଷୟିକ ସହାୟତା ନିମନ୍ତେ ହାତ ବଢାଇଛନ୍ତି ।

ଏବେ ବସ୍ତି ବାସିନ୍ଦାଙ୍କ ଅଧିକାର ହୋଇଛି ବଂଶାନୁକ୍ରମିକ। ସେମାନଙ୍କୁ ଦିଆଯାଉଥିବା ଜାଗା ହସ୍ତାନ୍ତର ହୋଇପାରିବ ନାହିଁ। ଏପର୍ଯ୍ୟନ୍ତ 'ଜାଗା' ଯୋଜନାରେ ପୁରୀରେ ୧୦ହଜାର ଜମି ପଟ୍ଟା ବଣ୍ଟନ କରାଯାଇଥିବା ବେଳେ ଗଞ୍ଜାମ ଏନ୍.ଏ.ସି.ରେ ୨ ହଜାର ପଟ୍ଟା ଦିଆଯାଇଛି। ୨୦୧୯ ମାର୍ଚ୍ଚ ମାସ ସୁଦ୍ଧା ଆଉ ୩୦ ହଜାର ପଟ୍ଟା ଯୋଗାଇଦେବାକୁ ଲକ୍ଷ୍ୟ ରଖାଯାଇଛି। ରାଜ୍ୟର ସମସ୍ତ ୧୦୯ଟି ପୌରାଞ୍ଚଳରେ ଜମି ଅଧିକାର ସାର୍ଟିଫିକେଟ୍ ପ୍ରଦାନ କରାଯାଉଥିବା ବେଳେ **'ଜାଗା ମିଶନ'** ସମସ୍ତ ୧୧୪ଟି ସହରାଞ୍ଚଳ ପାଇଁ କାର୍ଯ୍ୟକ୍ଷମ ହେବ।

**ବାସୋପଯୋଗୀ ବସତି ମିଶନ** ଯୋଜନା ଅଧୀନରେ ଜଣେ ବସ୍ତି ବାସିନ୍ଦାଙ୍କୁ ସର୍ବାଧିକ ୨ ଲକ୍ଷ ଟଙ୍କାର ଗୃହ ନିର୍ମାଣ ଋଣ ଯୋଗାଇ ଦିଆଯିବାର ବ୍ୟବସ୍ଥା ହୋଇଛି । ୫ଟି ମହାନଗର ନିଗମକୁ ଛାଡି ରାଜ୍ୟର ସମସ୍ତ ପୌରାଞ୍ଚଳ ଓ



ବିଜ୍ଞାପିତ ଅଂଚଳ ପରିଷଦରେ ରହୁଥିବା ବସ୍ତି ବାସିନ୍ଦା ସର୍ବାଧିକ ୬୪୬ ବର୍ଗଫୁଟ ଓ ପୌରାଂଚଳରେ ରହୁଥିବା ଜଣେ ବସ୍ତି ବାସିନ୍ଦା ସର୍ବାଧିକ ୪୮୪ ବର୍ଗଫୁଟ ଜାଗା ପାଇବାର ବ୍ୟବସ୍ଥା ହୋଇଛି । ରହୁଥିବା ବସ୍ତି ବାସୋପଯୋଗୀ ହୋଇନଥିଲେ ସ୍ଥାନାନ୍ତର ସମୟରେ ପ୍ରତ୍ୟେକ ବାସିନ୍ଦା ସର୍ବାଧିକ ୩୨୩ ବର୍ଗଫୁଟ ଜମି ପାଉଛନ୍ତି। ବସ୍ତି ବାସିନ୍ଦାଙ୍କ ସହମତି ଭିତ୍ତିରେ ସେମାନଙ୍କୁ ସ୍ଥାନାନ୍ତର କରାଯାଉଛି।

**'ଜାଗା'** ଯୋଜନା **ବିଶ୍ୱର ସର୍ବବୃହତ୍ ଭୂମି ଅଧିକାର ଅଭିଯାନ**। ଜାତୀୟସ୍ତରରେ ଓ ଅନ୍ତର୍ଜାତୀୟ ସ୍ତରରେ ଏହି ଯୋଜନା ଉଚ୍ଚ ପ୍ରଶଂସିତ ହୋଇଛି। ବସ୍ତିବାସିନ୍ଦା ଏବେ ଜବରଦଖଲକାରୀ ନୁହେଁ, ବରଂ ସମ୍ମାନର ସହ ବଂଚିବାର ଅଧିକାର ପାଇଛନ୍ତି । ସେମାନଙ୍କର ଜମିର ଅଧିକାର ଓ ସ୍ୱପ୍ନର ଘର ଆଶା ପୂରଣ ହେଉଛି । ସେମାନଙ୍କର ବସ୍ତି ଏବେ ହୋଇଛି ବସତି। ବସ୍ତି ବାସିନ୍ଦାଙ୍କ ପାଇଁ ଆଦର୍ଶ ବସତି ସ୍ଥାପନ ବ୍ୟବସ୍ଥାରେ ବିଧିବଦ୍ଧ ଯୋଜନା କରାଯାଇ ଏଠାରେ ପିଲାମାନଙ୍କ ପାଇଁ ବିଦ୍ୟାଳୟ, ରାସ୍ତା, ଡ୍ରେନ୍, କମ୍ୟୁନିଟି ସେଣ୍ଟର, ଆଲୋକୀକରଣ, ପାର୍କିଂ, ଅଙ୍ଗନୱାଡି କେନ୍ଦ୍ର ଓ ଜୀବିକାର୍ଜନ ପାଇଁ ପଦକ୍ଷେପ ନେଉଛନ୍ତି ଆମ ସରକାର ।

ବସ୍ତି ବାସିନ୍ଦାଙ୍କୁ ଭୂମି ଅଧିକାର ପ୍ରଦାନ ଆମ ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକଙ୍କ ନେତୃତ୍ୱରେ ପରିଚାଳିତ ସରକାରଙ୍କର ଅନ୍ୟତମ ଲୋକାଭିମୁଖୀ କାର୍ଯ୍ୟକ୍ରମ। ବସ୍ତି ବାସିନ୍ଦାଙ୍କୁ ସାମାଜିକ ସୁରକ୍ଷା ଯୋଗାଇ ସହରର ବିକାଶରେ ଭାଗୀଦାର କରିବା ପାଇଁ ରାଜ୍ୟ ସରକାର ପ୍ରତିଶ୍ରୁତିବଦ୍ଧ ।

# ଆମ ଗାଁ ଆମ ବିକାଶ

ଆମ ମୁଖ୍ୟମନ୍ତ୍ରୀ ରାଜ୍ୟର ବିଭିନ୍ନ ଅଞ୍ଚଳକୁ ଗସ୍ତ କରିବା ସମୟରେ ଲୋକେ ତାଙ୍କୁ ଭେଟି କେତେକ ଅତ୍ୟାବଶ୍ୟକ ମୌଳିକ ଭିତ୍ତିଭୂମିର ଅଭାବ ବିଷୟରେ ତାଙ୍କର ଦୃଷ୍ଟି ଆକର୍ଷଣ କରିଥିଲେ । ଏସବୁକୁ ଗୁରୁତ୍ୱର ସହ ବିଚାର କରି ଆମ ମୁଖ୍ୟମନ୍ତ୍ରୀ ଲୋକଙ୍କ ପରାମର୍ଶକ୍ରମେ ଏହିଭଳି ପ୍ରକଳ୍ପଗୁଡିକୁ ମଞ୍ଜୁର କରିବାକୁ ନିଷ୍ପତ୍ତି ନେଇ ୨୦୧୮ ମସିହା ମାର୍ଚ୍ଚ ୫ ତାରିଖ ପ୍ରବାଦ ପୁରୁଷ ବିଜୁ ପଟ୍ଟନାୟକଙ୍କ ଜୟନ୍ତୀରୁ ଆରମ୍ଭ କଲେ **'ଆମ ଗାଁ, ଆମ ବିକାଶ'** କାର୍ଯ୍ୟକ୍ରମ ।




ଗାଁ ଗଣ୍ଡାରେ ରହିଥିବା ଅସୁବିଧାଗୁଡିକ ଦୂର କରିବା ପାଇଁ ଦରକାର ହେଉଥିବା କାମ, ଯାହା ଅନ୍ୟ କୌଣସି ଯୋଜନାରେ କରାଯାଇ ପାରୁନଥିବ, ସେହିଭଳି କାମଗୁଡିକୁ 'ଆମ ଗାଁ ଆମ ବିକାଶ' ଯୋଜନାରେ ମୁଖ୍ୟମନ୍ତ୍ରୀଙ୍କ ଅନୁମୋଦନ ଦ୍ୱାରା କରାଯାଉଛି । ଇତି ମଧ୍ୟରେ 'ଆମ ଗାଁ ଆମ ବିକାଶ' ସବୁ ଗାଁ କୁ ପହଞ୍ଚିପାରିଛି । ଆମ ରାଜ୍ୟର ୩୧୪ ବ୍ଲକ୍‌ର ୬୭୯୮ଟି ଗ୍ରାମପଞ୍ଚାୟତରେ ୬୨ହଜାର ୮୫୭ଟି ପ୍ରକଳ୍ପ କାର୍ଯ୍ୟ ପାଇଁ ୧୫୫୪ କୋଟି ୪୧ ଲକ୍ଷ ଟଙ୍କା ସିଧାସଳଖ ଗାଁ ଲୋକଙ୍କ ସହିତ ଆଲୋଚନା କରି ମଞ୍ଜୁର କରିଛନ୍ତି ଆମ ମୁଖ୍ୟମନ୍ତ୍ରୀ । ଆମ ମୁଖ୍ୟମନ୍ତ୍ରୀଙ୍କ ୩ଟ ମନ୍ତ୍ରର ସଫଳ ପ୍ରୟୋଗ ଦ୍ୱାରା କରାଯାଉଥିବା ଆମ ଗାଁ ଆମ ବିକାଶ କାର୍ଯ୍ୟକ୍ରମ ଗ୍ରାମାଞ୍ଚଳ ଲୋକଙ୍କ ଜନଜୀବନରେ ଆଖିଦୃଶିଆ ପରିବର୍ତ୍ତନ ଆଣିବାରେ ଲାଗିଛି । ତୃଣମୂଳସ୍ତରରୁ ଗ୍ରାମ ପଞ୍ଚାୟତଗୁଡିକୁ ସଶକ୍ତ କରିବା ଓ ଗାଁର ବିକାଶ ପ୍ରବାଦପୁରୁଷ ବିଜୁ ବାବୁଙ୍କ ସ୍ୱପ୍ନ ଥିଲା, ଯାହା ଆମ ମୁଖ୍ୟମନ୍ତ୍ରୀଙ୍କ 'ଆମ ଗାଁ ଆମ ବିକାଶ' କାର୍ଯ୍ୟକ୍ରମ ଜରିଆରେ ଫଳପ୍ରସୂ ହୋଇଛି ।

ଓଡ଼ିଶାବାସୀଙ୍କୁ ବିଭିନ୍ନ ଯୋଜନା ସଂପର୍କରେ ସଚେତନ କରାଇବା ସହିତ ସେମାନଙ୍କ ପାଇଁ ଉଦ୍ଦିଷ୍ଟ ବିଭିନ୍ନ ସେବାକୁ ସିଧାସଳଖ ସେମାନଙ୍କ ନିକଟରେ ପହଁଚାଇବା ପାଇଁ ଆମ ପ୍ରିୟ ମୁଖ୍ୟମନ୍ତ୍ରୀ ଏବେ ନୂଆ କାର୍ଯ୍ୟକ୍ରମ 'ପିଠା' ଆରମ୍ଭ କରିଛନ୍ତି । ସମସ୍ତ ୩୧୪ଟି ବ୍ଲକର ପ୍ରାୟ ୭ ହଜାର ପଞ୍ଚାୟତରେ ପ୍ରତିମାସ ୧୫ରୁ ୨୦ ତାରିଖ ମଧ୍ୟରେ 'ପିଠା' କ୍ୟାମ୍ପର ଆୟୋଜନ କରାଯାଇ ହିତାଧିକାରୀଙ୍କୁ ସିଧାସଳଖ ସହାୟତା ବଣ୍ଟନ କରାଯିବା ସହିତ ବିଭିନ୍ନ ସରକାରୀ ସୁବିଧା ସମ୍ପର୍କରେ ସଚେତନ କରାଯାଉଛି । 'ପିଠ' କ୍ୟାମ୍ପର ଆୟୋଜନ ପରେ ପ୍ରତି ବ୍ଲକ ଓ ଜିଲ୍ଲାସ୍ତରରେ **ଶ୍ରେଷ୍ଠ ପଞ୍ଚାୟତ** ପାଇଁ ଆମ ମୁଖ୍ୟମନ୍ତ୍ରୀ **୫ ଲକ୍ଷ ଟଙ୍କାର ପୁରସ୍କାର** ବ୍ୟବସ୍ଥା କରିଛନ୍ତି । ସେହିପରି **ରାଜ୍ୟସ୍ତରରେ ମଧ୍ୟ ଶ୍ରେଷ୍ଠ ପଞ୍ଚାୟତ, ଶ୍ରେଷ୍ଠ ବ୍ଲକ ଓ ଶ୍ରେଷ୍ଠ**

**ଜିଲ୍ଲାକୁ ପୁରସ୍କୃତ କରାଯିବା ପାଇଁ ନିଷ୍ପତ୍ତି** ଗ୍ରହଣ କରାଯାଇଛି । 'ପିଠା' କାର୍ଯ୍ୟକ୍ରମ ଦ୍ୱାରା ଜନସାଧାରଣଙ୍କୁ ସଶକ୍ତ କରିବା ଏବଂ ପ୍ରଶାସନ ଅଧିକ ଉତ୍ତରଦାୟୀ ହେବା ସହିତ ସରକାରଙ୍କର ବିଭିନ୍ନ ଜନକଲ୍ୟାଣକାରୀ ଯୋଜନା କାର୍ଯ୍ୟକାରୀ କରିବାରେ ସ୍ୱଚ୍ଛତା ବୃଦ୍ଧି ପାଇଛି ।

ଆମ ପ୍ରିୟ ମୁଖ୍ୟମନ୍ତ୍ରୀ ସହରାଞ୍ଚଳ ସମେତ ଗ୍ରାମାଞ୍ଚଳରେ ମଧ୍ୟ **'ବସୁଧା'** ଯୋଜନା କାର୍ଯ୍ୟକାରୀ କରାଉଛନ୍ତି । ଇତିମଧ୍ୟରେ ସେ ପୁରୀ ଓ ଗଞ୍ଜାମ ଜିଲ୍ଲାର ୧୪୭ଟି ଗାଁ ପାଇଁ ବୃହତ୍ ପାନୀୟ ଜଳ ପ୍ରକଳ୍ପର ଶିଳାନ୍ୟାସ କରିଛନ୍ତି । ଋଷିକୁଲ୍ୟା ନଦୀରୁ ବିଶୋଧିତ ପ୍ରକ୍ରିୟାରେ ପାଇପ୍ ଯୋଗେ ଯୋଗାଇ ଦିଆଯାଉଥିବା ପିଇବା ପାଣି ଦ୍ୱାରା ପୁରୀ ଜିଲ୍ଲା




କୃଷ୍ଣ ପ୍ରସାଦ ବ୍ଲକର ୯୨ଟି ଗାଁ ଓ ଗଞ୍ଜାମ ଜିଲ୍ଲାର ୫୫ଟି ଗାଁର ଲୁଣିପାଣି ଦ୍ୱାରା ପ୍ରଭାବିତ ଲୋକେ ଉପକୃତ ହେବେ । ସେହିପରି ପୁରୀ ଜିଲ୍ଲା କଣାସ ବ୍ଲକର ୧୨୬ଟି ଗାଁ, ବ୍ରହ୍ମଗିରି ବ୍ଲକର ୧୮ଟି ଗାଁ, ସତ୍ୟବାଦୀ ବ୍ଲକର ୧୪ଟି ଗାଁର ଲୋକଙ୍କ ପାଇଁ ମଧ୍ୟ 'ବସୁଧା' ଯୋଜନାରେ ଜଳଯୋଗାଣ ପାଇଁ ମୁଖ୍ୟମନ୍ତ୍ରୀ ଅନୁମୋଦନ କରିଛନ୍ତି । ଏହାଦ୍ୱାରା ପୁରୀ ଓ ଗଞ୍ଜାମ ଜିଲ୍ଲାର ପ୍ରାୟ ୩ ଲକ୍ଷ ଲୋକ ଉପକୃତ ହେବେ ଓ ଏଥିପାଇଁ ୩୮୭.୫୯ କୋଟି ଟଙ୍କା ଆମ ସରକାର ବ୍ୟୟ ବରାଦ କରିଛନ୍ତି । ଆହୁରି ମଧ୍ୟ କେନ୍ଦ୍ରାପଡା ଜିଲ୍ଲା ମହାକାଳପଡା ବ୍ଲକର ୧୪୮ଟି ଗାଁ ଏବଂ ମାର୍ଶାଘାଇ ବ୍ଲକର ୫୨ଟି ଲୁଣିପାଣି ପ୍ରଭାବିତ ଗାଁର ୨.୫ ଲକ୍ଷ ଲୋକଙ୍କ ପାଇଁ ୨୪୧ କୋଟି ଟଙ୍କାରେ ନିର୍ମିତ ହେବାକୁ ଥିବା 'ବସୁଧା' ପାନୀୟ ଜଳ ପ୍ରକଳ୍ପର ଶିଳାନ୍ୟାସ ନିକଟରେ ଆମ ମୁଖ୍ୟମନ୍ତ୍ରୀଙ୍କ ଦ୍ୱାରା କରାଯାଇଛି । 'ବସୁଧା' ଯୋଜନାରେ ଏହିଭଳି ସଂଖ୍ୟାଧିକ ବୃହତ୍ ପାନୀୟ ଜଳ ପ୍ରକଳ୍ପ ଆମ ରାଜ୍ୟର ଜଳ ସମସ୍ୟା ଥିବା ଅଞ୍ଚଳରେ କରାଇ ଆମ ମୁଖ୍ୟମନ୍ତ୍ରୀ ଗ୍ରାମାଞ୍ଚଳରେ ନିରାପଦ ପିଇବା ପାଣି ସୁନିଶ୍ଚିତ କରାଉଛନ୍ତି ।

## ଆମ ସହର ଆମ ଉନ୍ନତି




ସମଗ୍ର ଦେଶରେ ସ୍ମାର୍ଟ ସିଟି ପାଇଁ ପ୍ରତିଯୋଗୀ ୧୦୦ଟି ସହର ମଧ୍ୟରେ ଆମ ରାଜଧାନୀ ଭୁବନେଶ୍ୱର ପ୍ରଥମ ହେବା ଏବଂ ଷ୍ଟିଲ୍ ସିଟି ରାଉରକେଲା ସ୍ଥାନ ପାଇବା ଆମ ସମସ୍ତଙ୍କ ପାଇଁ ଖୁସିର କଥା । ଏହି ଦୁଇଟି ସହରକୁ ରାଜ୍ୟ ସରକାର ସ୍ମାର୍ଟ ସହର ଭାବେ ପୂର୍ଣ୍ଣ ବିକଶିତ କରିବା ପାଇଁ ପ୍ରତିବଦ୍ଧ ।

୧୯୯୯ ମସିହା ମହାବାତ୍ୟାର ବିପର୍ଯ୍ୟୟ ପରେ ରାଜଧାନୀ ଭୁବନେଶ୍ୱରର ଯେଉଁ କ୍ଷୟକ୍ଷତି ଘଟିଥିଲା, ଏହାକୁ ପୁଣି ଏକ ବିଶ୍ୱସ୍ତରୀୟ ନଗରୀ ଭାବରେ ଗଢି ତୋଳିବାକୁ ଏକ ଆହ୍ୱାନ ଭାବରେ ଗ୍ରହଣ କରି ଆମ ସରକାର ବିଭିନ୍ନ ସହରାଞ୍ଚଳ ଭିତ୍ତିଭୂମି ଉନ୍ନୟନ ଯୋଜନା ହାତକୁ ନେଇ ସଫଳତାର ସହିତ ଅତ୍ୟାଧୁନିକ ଭୁବନେଶ୍ୱର ପୁଣି ଥରେ ଠିଆ କରେଇଲେ । ଆମର ସାଂସ୍କୃତିକ ପରଂପରା, ଅତିଥିପରାୟଣତା ତଥା ସ୍ମାର୍ଟ ଏବଂ ଅଭିନବ ସହରୀ ସୁବିଧା ଆଜି ଆମ ରାଜଧାନୀବାସୀଙ୍କୁ ଏକ ଅନୁପମ ଅନୁଭବ ଆଣିଦେଇଛି ।

ଆଧୁନିକତା ସହିତ ଐତିହ୍ୟକୁ ଅକ୍ଷୁଣ୍ଣ ରଖିବା ପାଇଁ ସବୁବେଳେ ଗୁରୁତ୍ୱ ଦିଆଯାଉଛି । ଫଳରେ ରାଜଧାନୀ ଭୁବନେଶ୍ୱର ଦିନକୁ ଦିନ ସାର୍ବଜନୀନ ସହରରେ ପରିଣତ ହେବାରେ ଲାଗିଛି ।

ଭୁବନେଶ୍ୱର ସହର ଦେଶର ୧୮ ତମ **ଇଜ୍ ଅଫ୍ ଲିଭିଙ୍ଗ ସିଟି** ହୋଇଛି । କେବଳ ଓଡ଼ିଶା ନୁହେଁ, ଅନ୍ୟ ରାଜ୍ୟର ଅଧିବାସୀଙ୍କ ଏହା ପ୍ରଥମ ପସନ୍ଦ ହୋଇଛି । କେଉଁ କେଉଁ ସହରରେ ଲୋକମାନେ ରହିବା ପାଇଁ ବେଶ୍ ଉପଯୁକ୍ତ, ତାହା ଜାଣିବା ପାଇଁ କେନ୍ଦ୍ର ଗୃହ ଓ ସହରାଞ୍ଚଳ ବିକାଶ ମନ୍ତ୍ରାଳୟ ପକ୍ଷରୁ ଦେଶର ୧୧୧ଟି ସହରକୁ ନେଇ ୪ଟି ମାନଦଣ୍ଡ ଉପରେ ଇଜ୍-ଅଫ୍ ଲିଭିଂ ଇଣ୍ଡେକ୍ସ ସର୍ବେକ୍ଷଣ କରାଯାଇଥିଲା, ଯେଉଁଥିରେ କି ଆମ ରାଜଧାନୀ ଭୁବନେଶ୍ୱର ଓ ରାଉରକେଲା ସହର ସ୍ଥାନ ପାଇଛି । ଏହିସବୁ ସୁବିଧା ସୁଯୋଗ ବୃଦ୍ଧି ପାଇଥିବା ଯୋଗୁଁ ଗତ ୧୦ ବର୍ଷ ମଧ୍ୟରେ ଭୁବନେଶ୍ୱରର ଲୋକସଂଖ୍ୟା ବଢ଼ି ଏବେ ପ୍ରାୟ ୧୪ ଲକ୍ଷରେ ପହଞ୍ଚିଛି ।



୨୦୧୮ ମସିହାରେ ରାଜଧାନୀ ଭୁବନେଶ୍ୱରର ପ୍ରତିଷ୍ଠା ଦିବସ ଅବସରରେ ଆମ ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ନବୀନ ପଟ୍ଟନାୟକ ସ୍ମାର୍ଟ ସିଟି ଲୋଗୋ ସହିତ www.smartcitybhubaneswar.gov.in ୱେବ୍ ସାଇଟ୍‌କୁ ଲୋକାର୍ପଣ କରିଛନ୍ତି, ଯାହା ଫଳରେ କି ଏହି ସହରର ଗୌରବମୟ ଐତିହ୍ୟ, କ୍ରୀଡା ଭିତ୍ତିଭୂମି, କଳା, ସ୍ଥାପତ୍ୟ, ପର୍ଯ୍ୟଟନସ୍ଥଳୀ ଆଦି ସଂପର୍କିତ ତଥ୍ୟ ଗୋଟିଏ ସ୍ଥାନରେ ଉପଲବ୍ଧ ହୋଇପାରିଛି ।

ସହରବାସୀମାନଙ୍କ ଚିତ୍ତ ବିନୋଦନ ସହିତ ଆଗାମୀ ପିଢ଼ିକୁ ଓଡ଼ିଶାର କଳା ଓ ଭାସ୍କର୍ଯ୍ୟ ପ୍ରତି ଆଗ୍ରହୀ କରାଇବା ଲକ୍ଷ୍ୟରେ ଭୁବନେଶ୍ୱରରେ ଅନୁଷ୍ଠିତ ହୋଇଆସୁଥିବା ରାହାଗିରି ବା ପଥୋତ୍ସବ ଖୁବ୍ ଲୋକପ୍ରିୟ ହୋଇପାରିଛି ଏବଂ ରାଜ୍ୟର ଅନ୍ୟାନ୍ୟ ସହରକୁ ପରିବ୍ୟାପ୍ତ ହୋଇଛି ।

ଓଡ଼ିଶାର ରାଜଧାନୀ ଭୁବନେଶ୍ୱର ସମେତ କଟକ, ପୁରୀ, ବ୍ରହ୍ମପୁର, ରାଉରକେଲା, ସମ୍ବଲପୁର, ବାଲେଶ୍ୱର, ଭଦ୍ରକ ଓ ବାରିପଦା ଆଦି ୯ଟି ସହରର ଜନସାଧାରଣଙ୍କୁ ଅଗ୍ରାଧିକାର ଭିତ୍ତିରେ ପାଇପ୍ ଯୋଗେ ପାନୀୟ ଜଳ ଯୋଗାଣ, ବର୍ଜ୍ୟଜଳ ନିଷ୍କାସନ, ପାର୍କର ପୁନରୁଦ୍ଧାର(ନିର୍ମାଣ) ଉଦ୍ଦେଶ୍ୟରେ ୧୮୧୦ କୋଟି ଟଙ୍କା ବ୍ୟୟରେ **'ଅମୃତ ଯୋଜନା'** କାର୍ଯ୍ୟକାରୀ ହେଉଛି ।

ସହରାଞ୍ଚଳ ଭିତ୍ତିଭୂମିର ବିକାଶ ଓ ପ୍ରଶାସନିକ ସଂସ୍କାର ସହ ଅମୃତ ଯୋଜନାକୁ ଦକ୍ଷତାର ସହିତ କାର୍ଯ୍ୟକାରୀ କରିବାରେ ଓଡିଶା ସମଗ୍ର ଦେଶରେ ଏକ ଅଗ୍ରଣୀ ରାଜ୍ୟର ମାନ୍ୟତା ଲାଭ କରିଛି ।

ସମଗ୍ର ରାଜ୍ୟରେ ସହରାଞ୍ଚଳଗୁଡିକର ଭିତ୍ତିଭୂମି ଉନ୍ନତିକରଣ ତଥା ସାମଗ୍ରିକ ବିକାଶ ପାଇଁ ଆମ ସରକାର **'ଉନ୍ନତି'** ଯୋଜନା କାର୍ଯ୍ୟକାରୀ କରୁଛନ୍ତି । ଏହି ଯୋଜନାରେ ରାଜ୍ୟର ପ୍ରତ୍ୟେକ ଏନ୍.ଏ.ସି.ର ପ୍ରତି ୱାର୍ଡ ପାଇଁ ୧୫ ଲକ୍ଷ ଟଙ୍କା,




ମ୍ୟୁନିସିପାଲିଟିର ପ୍ରତ୍ୟେକ ୱାର୍ଡ ପାଇଁ ୨୫ ଲକ୍ଷ ଟଙ୍କା ଏବଂ ମହାନଗର ନିଗମର ପ୍ରତ୍ୟେକ ୱାର୍ଡ ପାଇଁ ୫୦ ଲକ୍ଷ ଟଙ୍କା ହିସାବରେ ଅର୍ଥ ପ୍ରତ୍ୟେକ ୱାର୍ଡରେ ମୌଳିକ ଭିତ୍ତିଭୂମି ବାବଦରେ ବ୍ୟୟ କରାଯିବା ପାଇଁ ଯୋଗାଇ ଦିଆଯାଇଛି। ଏହି ଯୋଜନାରେ ସହରାଞ୍ଚଳବାସୀଙ୍କୁ ପାଇପ୍ ଯୋଗେ ପାନୀୟ ଜଳ ଯୋଗାଣ ଓ ଏଲ୍.ଇ.ଡି. ଷ୍ଟ୍ରିଟ୍ ଲାଇଟ୍‌ର ବ୍ୟବସ୍ଥା ହୋଇଛି। ଏ ବାବଦରେ ସରକାର ପାଖାପାଖି ୮୮୨ କୋଟି ଟଙ୍କା ଖର୍ଚ୍ଚ କରିବେ। ବର୍ଷକ ମଧ୍ୟରେ ରାଜ୍ୟରେ ୧୦୭ଟି ସହରାଞ୍ଚଳରେ ୧.୧୨ ଲକ୍ଷ **ଏଲ୍.ଇ.ଡି. ଆଲୋକ** ଲଗାଯିବାକୁ ଯୋଜନା ରହିଛି। ଏହାଦ୍ୱାରା ବର୍ଷକୁ ୨୬.୯୭ କୋଟି ଟଙ୍କା ମୂଲ୍ୟର ୩୫.୯୭ ୟୁନିଟ୍ ବିଦ୍ୟୁତ୍ ଶକ୍ତି ସଂଚୟ କରାଯାଇପାରିବ।

ସ୍ମାର୍ଟ ସହରଗୁଡିକରେ ନାଗରିକ ସମସ୍ୟାର ସ୍ମାର୍ଟ ସମାଧାନ ଅନ୍‌ଲାଇନ୍ ମାଧ୍ୟମରେ କରାଯାଉଛି । ଆମ କଳା, ସଂସ୍କୃତି ଓ ଐତିହ୍ୟକୁ ପ୍ରାଧାନ୍ୟ ଦିଆଯାଇ ସହରର ସୌନ୍ଦର୍ଯ୍ୟକରଣ କରାଯାଉଛି।

**'ସିଟି ବସ୍ ସେବା'** ସହରରେ ସାଧାରଣ ଯାତ୍ରୀ ଗମନାଗମନ ବ୍ୟବସ୍ଥାକୁ ସୁଗମ କରିଛି। ଭୁବନେଶ୍ୱର ସହରବାସୀଙ୍କ ପାଇଁ **'ମୋ ବସ୍'** ସେବା ଏବଂ **'ମୋ ସାଇକେଲ'** ଯୋଜନା ବିଶ୍ୱକପ୍ ହକି-୨୦୧୮ ଆୟୋଜନ ଅବସରରେ ଆରମ୍ଭ କରାଯାଇଥିଲା। ଏବେ 'ମୋ ବସ୍' ସେବା କଟକ ସହରକୁ ସମ୍ପ୍ରସାରିତ ହୋଇଛି।




**ବସୁଧା:** ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ, 'ବସୁଧା' ଯୋଜନାରେ ରାଜ୍ୟବାସୀଙ୍କ ପାଇଁ ୪୦୮ କୋଟି ଟଙ୍କା ବ୍ୟୟରେ ୫୦୦ଟି ପାନୀୟ ଜଳ ଯୋଗାଣ ପ୍ରକଳ୍ପର ଶୁଭାରମ୍ଭ କରିଛନ୍ତି। ଖୋର୍ଦ୍ଧା ଜିଲ୍ଲା ଜଟଣୀଠାରେ ଆୟୋଜିତ ଏକ କାର୍ଯ୍ୟକ୍ରମରେ ପାଇକ ବିଦ୍ରୋହର ୨୦୦ତମ ବାର୍ଷିକୀ ପାଳନର ସ୍ମୃତିସ୍ୱରୂପ ଶୁଭାରମ୍ଭ ହୋଇଥିବା ଏହି ସହରାଞ୍ଚଳ ପାନୀୟ ଜଳ ପ୍ରକଳ୍ପଗୁଡିକ ଦ୍ୱାରା ରାଜ୍ୟର ୯୫ଟି ସହରର ୩୩ ଲକ୍ଷ ଲୋକ ଉପକୃତ ହେବେ। ଏତଦ୍‌ବ୍ୟତୀତ ୧୮୭ କୋଟି ଟଙ୍କା ବ୍ୟୟରେ ନିର୍ମିତ ଓ ପରିଚାଳିତ ପାନୀୟ ଜଳ ଯୋଗାଣ ପ୍ରକଳ୍ପକୁ ମୁଖ୍ୟମନ୍ତ୍ରୀ ଉଦ୍‌ଘାଟନ କରିଛନ୍ତି, ଯାହାଦ୍ୱାରା ଆଇ.ଆଇ.ଟି., ଭୁବନେଶ୍ୱର, ନାଇଜର, ଇଡ୍‌କୋ, ଖୋର୍ଦ୍ଧା, ଜଟଣୀ ମ୍ୟୁନିସିପାଲିଟି ଆଦିର ପ୍ରାୟ ୧ କୋଟି ୧୦ ଲକ୍ଷ ଲୋକ ଉପକୃତ ହେବେ।

ରାଜ୍ୟରେ ଦୀର୍ଘସ୍ଥାୟୀ ପରିମଳ ବ୍ୟବସ୍ଥାକୁ ନିଶ୍ଚିତ କରିବା ଦିଗରେ ଆମ ସରକାର ପ୍ରୟାସ ଜାରି ରଖିଛନ୍ତି। ବୈଜ୍ଞାନିକ ପଦ୍ଧତିରେ ମଳ ବିଶୋଧନ ନିମନ୍ତେ ଭୁବନେଶ୍ୱର, ପୁରୀ ସମେତ ୬ଟି ସହର ପାଇଁ ୬ଟି ସେପ୍ଟେଜ ବିଶୋଧନାଗାର ଲୋକାର୍ପିତ ହୋଇଛି ଏବଂ ଆଉ ଅଧିକ ୫ଟି ସହର ପାଇଁ ଏହି ବିଶୋଧନାଗାର ନିର୍ମାଣାଧୀନ ଅଛି । ଏହାଦ୍ୱାରା ୬୦ ପ୍ରତିଶତରୁ ଊର୍ଦ୍ଧ୍ୱ ସହରାଂଚଳ ବାସିନ୍ଦା ଉପକୃତ ହେବେ।

# ଭିତ୍ତିଭୂମିର ବିକାଶ

ଆମ ମୁଖ୍ୟମନ୍ତ୍ରୀ ସହରାଞ୍ଚଳଠାରୁ ଆରମ୍ଭକରି ଗ୍ରାମାଞ୍ଚଳ ପର୍ଯ୍ୟନ୍ତ ଉତ୍ତମ ମାନର ରାସ୍ତା ଓ ସେତୁ ନିର୍ମାଣ କରାଇ ଓଡ଼ିଶାର ଜନସାଧାରଣଙ୍କୁ ଗମନାଗମନ ସୁବିଧା ସୁଯୋଗ ଯୋଗାଇ ଦେଉଛନ୍ତି।

ଅନ୍ୟ କୌଣସି ସଡକ ଯୋଜନାରେ ଅନ୍ତର୍ଭୁକ୍ତ ହୋଇନଥିବା ୧୦୦ କିମ୍ବା ତାହାଠାରୁ ଅଧିକ ଜନସଂଖ୍ୟା ବିଶିଷ୍ଟ ବସତିଗୁଡ଼ିକୁ ସବୁଦିନିଆ ରାସ୍ତା ନିର୍ମାଣ କରିବା ପାଇଁ ଆମ ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ନବୀନ ପଟ୍ଟନାୟକ ଆରମ୍ଭ କରିଥିଲେ **'ମୁଖ୍ୟମନ୍ତ୍ରୀ ସଡକ ଯୋଜନା'**। ଏହି ଯୋଜନାରେ ୮୨୦ କୋଟିରୁ ଊର୍ଦ୍ଧ୍ୱ ଟଙ୍କା ବିନିଯୋଗରେ ୧୨୫୪ କିଲୋମିଟର ରାସ୍ତା ନିର୍ମାଣ କରାଯାଇ ୩୦୩ ଗ୍ରାମକୁ ସବୁଦିନିଆ ରାସ୍ତା ତିଆରି କରାଯାଇଛି।




ପ୍ରଧାନମନ୍ତ୍ରୀ ଗ୍ରାମ ସଡକ ଯୋଜନା କାର୍ଯ୍ୟକାରିତା କ୍ଷେତ୍ରରେ **ଓଡ଼ିଶା ସମଗ୍ର ଦେଶରେ ପ୍ରଥମ** ହୋଇ କେନ୍ଦ୍ର ଗ୍ରାମ୍ୟ ଉନ୍ନୟନ ମନ୍ତ୍ରଣାଳୟ ତରଫରୁ ୩ଟି ପୁରସ୍କାରରେ ସମ୍ମାନିତ ହୋଇଛି।

୨୦୧୭–୧୮ରେ ଓଡ଼ିଶା ୭,୧୭୬ କିଲୋମିଟର ରାସ୍ତା ନିର୍ମାଣ କରି ସମଗ୍ର ଦେଶରେ ପ୍ରଥମ ସ୍ଥାନ ଅଧିକାର କରିଛି। ଏଥିପାଇଁ ୨ ହଜାର ୬୭୬ କୋଟି ଟଙ୍କା ଖର୍ଚ୍ଚ କରାଯାଇଥିବା ବେଳେ ଏଥିରେ ରାଜ୍ୟ ସରକାର ତାଙ୍କ ଅଂଶ ବାବଦରେ ୧ ହଜାର ୭୦ କୋଟି ୫୩ ଲକ୍ଷ ଟଙ୍କା ଯୋଗାଇ ଦେଇଛନ୍ତି। ଏହାଦ୍ୱାରା ୧ ହଜାର ୭୭୬ଟି ଜନବସତିକୁ ସଂଯୋଗୀକରଣ କରାଯାଇପାରିଛି।

ଅସଂଯୋଜିତ ଜନ ବସତିକୁ ସଂଯୋଗ କରିବାରେ ଓଡ଼ିଶା ସମଗ୍ର ଭାରତରେ ଦ୍ୱିତୀୟ ସ୍ଥାନ ଅଧିକାର କରିଛି।

ଗ୍ରାମାଞ୍ଚଳ ରାସ୍ତା ନିର୍ମାଣ କ୍ଷେତ୍ରରେ ସବୁଜ ଜ୍ଞାନକୌଶଳ ପ୍ରୟୋଗ କରି ୮୫୫ କିଲୋମିଟର ରାସ୍ତା ନିର୍ମାଣରେ ଓଡ଼ିଶା ଦେଶରେ ପ୍ରଥମ ସ୍ଥାନ ଅଧିକାର କରିଛି । ୨୦୧୮–୧୯ରେ ୪ ହଜାର ୧୬୬ କୋଟି ୬୭ ଲକ୍ଷ ଟଙ୍କା ଖର୍ଚ୍ଚ କରାଯାଇ ୮ ହଜାର କିଲୋମିଟର ରାସ୍ତା ନିର୍ମାଣ ଦ୍ୱାରା ୨୫ ଶହ ଗ୍ରାମକୁ ସଂଯୋଗ କରାଯିବାକୁ ଲକ୍ଷ୍ୟ ରଖାଯାଇଛି। ଏଥି ମଧ୍ୟରୁ ୧୭୦୦ କିଲୋମିଟର ରାସ୍ତା ଆଧୁନିକ ସବୁଜ ଜ୍ଞାନ କୌଶଳରେ ନିର୍ମାଣ ପାଇଁ ଲକ୍ଷ୍ୟ ଧାର୍ଯ୍ୟ କରାଯାଇଛି।

୨୦୧୧–୧୨ରେ ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ନବୀନ ପଟ୍ଟନାୟକଙ୍କ ଦ୍ୱାରା ଗ୍ରାମାଞ୍ଚଳର ସବୁ ଗାଁ ଗଣ୍ଡାକୁ ସବୁଦିନିଆ ଯୋଗାଯୋଗ ବ୍ୟବସ୍ଥା ସହିତ ଆବଶ୍ୟକ ସ୍ଥାନରେ ସେତୁ ନିର୍ମାଣ ପାଇଁ **'ବିଜୁ ସେତୁ ଯୋଜନା'** ଆରମ୍ଭ କରାଯାଇଥିଲା। ଏହି ବ୍ୟବସ୍ଥାକୁ ମିଶନ ମୋଡ୍‌ରେ ନେଇ ବର୍ଷକୁ ହାରାହାରି ୨୦୦ ସେତୁ ନିର୍ମାଣର ଲକ୍ଷ୍ୟ ରଖାଯାଇ ବିଗତ ୪ ବର୍ଷ ମଧ୍ୟରେ ଆମ ରାଜ୍ୟରେ ୬୦୦ରୁ ଊର୍ଦ୍ଧ୍ୱ ସେତୁ ନିର୍ମାଣ କରାଯାଇଛି।

୨୦୧୪ ମସିହାରେ ଆମ ସରକାର **ଗୁରୁପ୍ରିୟା ସେତୁ** ନିର୍ମାଣ ପାଇଁ ଦୃଢ ନିଷ୍ପତ୍ତି ନେଇ ୪ବର୍ଷ ମଧ୍ୟରେ ଏହା ସଂପୂର୍ଣ୍ଣ କଲେ। ଏହି ସେତୁ ନିର୍ମାଣରେ ୧୮୭ କୋଟି ଟଙ୍କା ଆମ ସରକାର ବ୍ୟୟ କରିଛନ୍ତି।

ଏହି ସେତୁ ନିର୍ମାଣ ହେବା ଦ୍ୱାରା ମାଲକାନଗିରି ଜିଲ୍ଲାବାସୀଙ୍କ ବହୁ ଦିନର ସ୍ୱପ୍ନ ପୂରଣ ହୋଇଛି । ଏହି ଜିଲ୍ଲାର ୮ଗୋଟି ପଞ୍ଚାୟତର ୧୫୧ଟି ଗାଁ ଏବେ ମୂଳ ଭୂଖଣ୍ଡ ସହ ଯୋଡ଼ି ହୋଇଛନ୍ତି। ଗୁରୁପ୍ରିୟା ସେତୁ ସମାପନ ଓ ଲୋକାର୍ପଣ ନେଇ ଅତ୍ୟନ୍ତ ଖୁସି ବ୍ୟକ୍ତ କରିଛନ୍ତି ଆମ ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ନବୀନ ପଟ୍ଟନାୟକ। ଏହାଦ୍ୱାରା ଏହି ଅଂଚଳରେ ଜନସାଧାରଣଙ୍କର ଶିକ୍ଷା, ସ୍ୱାସ୍ଥ୍ୟ, ବିଦ୍ୟୁତିକରଣ, ଜନସେବା, ଅର୍ଥନୈତିକ ବିକାଶ ଏବଂ ଜୀବନଧାରଣର ମାନରେ ଅଭିବୃଦ୍ଧି ଘଟିବ ବୋଲି ସେ ଆଶାବ୍ୟକ୍ତ କରିବା ସହିତ ଅଞ୍ଚଳକୁ ବିଚ୍ଛିନ୍ନାଞ୍ଚଳ ପରିବର୍ତ୍ତେ **ସ୍ୱାଭିମାନ ଅଞ୍ଚଳ** ଏବଂ ଗୁରୁପ୍ରିୟା ସେତୁକୁ **ସ୍ୱାଭିମାନର ସେତୁ** ବୋଲି ସେ ଭାବବିହ୍ୱଳ ହୋଇ ବର୍ଣ୍ଣନା କରିଛନ୍ତି। ଗୁରୁପ୍ରିୟା ସେତୁ ଲୋକାର୍ପଣ ପରେ ନିଜେ ସେତୁର ଅନ୍ୟପଟେ ଥିବା ଗାଁଗୁଡ଼ିକୁ ଯାଇ ଲୋକଙ୍କ ସହିତ ମିଶି, ସେମାନଙ୍କ ଜୀବନଜୀବିକାରେ ଉନ୍ନତି ଆଣିବା ପାଇଁ ୧୦୦ କୋଟି ଟଙ୍କାର ଏକ **ସ୍ୱତନ୍ତ୍ର ପ୍ୟାକେଜ୍** ତୁରନ୍ତ କାର୍ଯ୍ୟକାରୀ କରାଯିବା ପାଇଁ ଘୋଷଣା କରିଛନ୍ତି। ଏହି ସ୍ୱତନ୍ତ୍ର ପ୍ୟାକେଜ୍ ଦ୍ୱାରା ସ୍ୱାଭିମାନ ଅଞ୍ଚଳ ଓ ସମଗ୍ର ମାଲକାନଗିରି ଜିଲ୍ଲାରେ ବିକାଶ ଦ୍ରୁତ ଗତିରେ ହୋଇପାରିବ ବୋଲି ସେ ଆଶା ପ୍ରକାଶ କରିଛନ୍ତି।



କାଠଯୋଡ଼ି ନଦୀରେ କଟକର ଓଡ଼ିଶା ଜୁଡିସିଆଲ ଏକାଡେମୀ ନିକଟସ୍ଥ ବେଲଭ୍ୟୁ ପଏଣ୍ଟଠାରୁ ତ୍ରିଶୁଳିଆକୁ ସଂଯୋଗ କରୁଥିବା ୧୧୧୪ କୋଟି ଟଙ୍କା ବ୍ୟୟରେ ତିଆରି ହୋଇଥିବା ୨.୮୮ କି.ମି ବିଶିଷ୍ଟ ଓଡ଼ିଶାର ଦୀର୍ଘତମ ସେତୁ **'ନେତାଜୀ ସୁଭାଷ ଚନ୍ଦ୍ର ବୋଷ ସେତୁ'** ଆମ ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ନବୀନ ପଟ୍ଟନାୟକଙ୍କ ଦ୍ୱାରା ୨୦୧୭ ମସିହା ଜୁଲାଇ ୧୯ ତାରିଖରେ ଲୋକାର୍ପିତ ହୋଇଛି।

ସେହିପରି ମହାନଦୀ ଉପରେ ୧୫୭ କୋଟି ଟଙ୍କା ବ୍ୟୟରେ ତିଆରି ୨.୫ କି.ମି. ଦୈର୍ଘ୍ୟ ବିଶିଷ୍ଟ **'ଉତ୍କଳଗୌରବ ମଧୁସୂଦନ ସେତୁ'**କୁ ୨୦୧୮ ମସିହା ଉତ୍କଳ ଦିବସରେ ଆମ ମୁଖ୍ୟମନ୍ତ୍ରୀ ଲୋକାର୍ପିତ କରିଛନ୍ତି ।

ବିଗତ ୪ ବର୍ଷ ମଧ୍ୟରେ ମହାନଦୀ ଉପରେ ୮ଟି ଓ ବ୍ରାହ୍ମଣୀ ନଦୀ ଉପରେ ୫ଟି ସେତୁର ନିର୍ମାଣ କାର୍ଯ୍ୟ ଶେଷ ହୋଇଛି। ବୃହତ୍ ସେତୁ ନିର୍ମାଣ କରାଯାଇ ଜନସାଧାରଣଙ୍କ ପାଇଁ ସବୁଦିନିଆ ଗମନାଗମନ ସୃଷ୍ଟି କରିବାରେ ଆମ ମୁଖ୍ୟମନ୍ତ୍ରୀଙ୍କ ଆନ୍ତରିକତା ପ୍ରତିଫଳିତ ହୋଇଛି।

ଏ ଭିତରେ ବହୁ ସଡକ ପଥ ବହୁ ଲେନ୍ ବିଶିଷ୍ଟ ହୋଇଛି। ୨୦୦୦ ମସିହାରେ ଦୁଇ ଲେନ୍ ବ୍ୟବସ୍ଥା ୧୮୪୯ କି.ମି. ରାସ୍ତାରେ ଥିବା ବେଳେ ୨୦୧୭ ମସିହା ସୁଦ୍ଧା ଏହା ୩.୬ ଗୁଣା ବୃଦ୍ଧି ପାଇ ୬,୬୮୫ କି.ମି ହୋଇଛି। ସେହିପରି ୨ ଲେନ୍ ଓ ବହୁଲେନ୍ ବିଶିଷ୍ଟ ସଡକ ପଥ ୨୦୦୦ ମସିହାରେ ୨,୩୩୪ କି.ମି ଥିବା ବେଳେ ଏହା ପ୍ରାୟ ୫ ଗୁଣା ହୋଇ ୧୨,୦୪୧ କି.ମି.କୁ ବୃଦ୍ଧି ପାଇଛି।

''ପାରାଦୀପ-ଦୈତାରୀ ଏକ୍ସପ୍ରେସ୍ ହାଇୱେ ପରେ 'ବିଜୁ ଏକ୍ସପ୍ରେସ୍ ୱେ' ଆମ ରାଜ୍ୟର ଅନ୍ୟତମ ଏକ୍ସପ୍ରେସ୍ ହାଇୱେ। ଏହା ଓଡ଼ିଶାର ନୂତନ ଅର୍ଥନୈତିକ ଜୀବନରେଖା ଭାବେ କାର୍ଯ୍ୟ କରିବ।''

- ନବୀନ ପଟ୍ଟନାୟକ






ଏଥି ସହିତ ଇବ୍, ବୈତରଣୀ, ବଂଶଧାରା, କୋଏଲ୍, କୁଶଭଦ୍ରା, ଖରସ୍ରୋତା, ବିରୂପା, ଲୁଣା, ଓଙ୍ଗ, କୁଶେଇ, ଚିତ୍ରୋତ୍ପଳା, ବୁଢ଼ାବଳଙ୍ଗ, ସୁବର୍ଣ୍ଣରେଖା, ସାବେରୀ ଏବଂ ଅନ୍ୟାନ୍ୟ ନଦୀ ଉପରେ ସବୁଦିନିଆ ସଡକ ଯୋଗାଯୋଗ ନିଶ୍ଚିତ କରିବା ପାଇଁ ସଂଖ୍ୟାଧିକ ସେତୁ ନିର୍ମିତ ହୋଇଛି।

ପଥଚାରୀମାନଙ୍କୁ ସାମୟିକ ପଥପାର୍ଶ୍ୱ ରହଣି ସୁବିଧା ଯୋଗାଇଦେବା ପାଇଁ ସମସ୍ତ ସୁବିଧା ଥିବା ୩୫ଟି **ପଥପାର୍ଶ୍ୱ ସୁବିଧା କେନ୍ଦ୍ର** ନିର୍ମାଣ କରାଯାଇଛି।

୨୦୧୪ ମସିହା ମଇ ମାସ ୨୧ ତାରିଖରେ ଚତୁର୍ଥ ଥର ପାଇଁ ଶାସନଭାର ହାତକୁ ନେଇଥିବା ଆମ ପ୍ରିୟ ମୁଖ୍ୟମନ୍ତ୍ରୀ ତାଙ୍କର ୧୦୦ ଦିନର ବିଧାନସଭା କାର୍ଯ୍ୟକାଳ ପୂର୍ତ୍ତି ଅବସରରେ ଦକ୍ଷିଣରୁ ପଶ୍ଚିମକୁ ଯୋଡୁଥିବା **ବିଜୁ ଏକ୍ସପ୍ରେସ୍ ୱେ** ତିଆରି କରିବା ପାଇଁ ଘୋଷଣା କରିଥିଲେ। ୬୫୦.୬୪ କିଲୋମିଟର ବିଶିଷ୍ଟ ଅତ୍ୟାଧୁନିକ ଶୈଳୀରେ ନିର୍ମିତ ଏହି ସଡକ, ଓଡ଼ିଶାର କୋରାପୁଟ ଜିଲ୍ଲାର ଗାଁ ଚାନ୍ଦିଲିଠାରୁ ଆରମ୍ଭ ହୋଇ ନବରଙ୍ଗପୁର, କଳାହାଣ୍ଡି, ନୂଆପଡା, ବରଗଡ, ସମ୍ବଲପୁର, ସୁନ୍ଦରଗଡ, ଝାରସୁଗୁଡା ଆଦି ରାଜ୍ୟର ୮ଟି ଦୁର୍ଗମ ତଥା ପଛୁଆ ଜିଲ୍ଲାଗୁଡିକର ସୀମାବର୍ତ୍ତୀ ସହରଗୁଡିକ ଦେଇ ଯାଇଥିବା ଅଞ୍ଚଳର ଅର୍ଥନୈତିକ ଜୀବନରେଖା ଭାବରେ ପରିଗଣିତ ହେବ। ୩୬୦୦ କୋଟିରୁ ଅଧିକ ଟଙ୍କା ବ୍ୟୟରେ ହେବାକୁ ଥିବା ଏହି ଏକ୍ସପ୍ରେସ୍ ୱେ ଜୁନ୍ ୨୦୧୯ ସୁଦ୍ଧା ସରିବା ନେଇ ଲକ୍ଷ୍ୟ ଧାର୍ଯ୍ୟ କରାଯାଇଛି।



ଇତିମଧ୍ୟରେ ଆମ ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ବିଜୁ ଏକ୍ସପ୍ରେସ୍ ୱେ ର ୧୬୫ କି.ମି. ଦୀର୍ଘ ଚାରିଲେନ୍ ବିଶିଷ୍ଟ ସମ୍ବଲପୁର-ରାଉରକେଲା ରାସ୍ତା ରାଜ୍ୟର ଜନସାଧାରଣଙ୍କ ଉଦ୍ଦେଶ୍ୟରେ ଲୋକାର୍ପଣ କରିସାରିଛନ୍ତି।

# ମେକ୍ ଇନ୍ ଓଡ଼ିଶା

ବିଗତ ୧୮ ବର୍ଷ ମଧ୍ୟରେ ଆମ ରାଜ୍ୟର ବନ୍ଦର କ୍ଷମତା, ବିଦ୍ୟୁତ୍ ଉତ୍ପାଦନ କ୍ଷମତା, ରାସ୍ତାଘାଟର ବିକାଶରେ ଉଲ୍ଲେଖନୀୟ ଅଭିବୃଦ୍ଧି ଘଟିଛି । ଏହାକୁ ଲକ୍ଷ୍ୟକରି ଆମ ପ୍ରିୟ ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ନବୀନ ପଟ୍ଟନାୟକ ରାଜ୍ୟରେ ଉତ୍ପାଦନ ଶିଳ୍ପ ପ୍ରତିଷ୍ଠା ନିମନ୍ତେ ପୁଞ୍ଜିନିବେଶକାରୀଙ୍କୁ ଆକୃଷ୍ଟ କରିବା ଉଦ୍ଦେଶ୍ୟରେ **'ମେକ୍ ଇନ୍ ଓଡ଼ିଶା କନ୍‌କ୍ଲେଭ୍'** ଆୟୋଜନ କରି ପୁଞ୍ଜିପତିମାନଙ୍କୁ ଓଡ଼ିଶାରେ ପୁଞ୍ଜିନିବେଶ କରିବା ପାଇଁ ପ୍ରତ୍ୟକ୍ଷ ଆଲୋଚନା ମାଧ୍ୟମରେ ଆହ୍ୱାନ କରୁଛନ୍ତି ।




୨୦୧୬ ମସିହାରେ ଭୁବନେଶ୍ୱରଠାରେ **ମେକ୍ ଇନ୍ ଓଡ଼ିଶା କନ୍‌କ୍ଲେଭ୍** ପ୍ରଥମେ ଅନୁଷ୍ଠିତ ହୋଇଥିଲା ଓ ଏଠାରେ ଏହାର ୨ୟ ସଂସ୍କରଣ ୨୦୧୮ ମସିହା ନଭେମ୍ବର ୧୧ରୁ ୧୫ ତାରିଖ ପର୍ଯ୍ୟନ୍ତ ଅନୁଷ୍ଠିତ ହୋଇଥିଲା । ଏହା ଓଡ଼ିଶା ପାଇଁ ଆଣି ଦେଇଛି ଏକ ବଡ ଧରଣର ସଫଳତା । ମେକ୍ ଇନ୍ ଓଡ଼ିଶାର ୨ୟ ସଂସ୍କରଣରୁ ୪ ଲକ୍ଷ ୨୦ ହଜାର କୋଟି ଟଙ୍କା ନିବେଶ ପ୍ରସ୍ତାବ ମିଳିଛି । ଦେଶ ବିଦେଶର ୫୦୭୪ ଶିଳ୍ପ ପ୍ରତିନିଧି ଏଥିରେ ଯୋଗ ଦେଇଥିଲେ । ୧୫ଟି ବିଭିନ୍ନ କ୍ଷେତ୍ରରେ ଏହି କଂପାନୀଗୁଡିକ ତରଫରୁ ୧୮୩ଟି ପ୍ରକଳ୍ପରେ ପୁଞ୍ଜି ନିବେଶ ପାଇଁ ସୁଯୋଗ ସୃଷ୍ଟି ହୋଇଛି । ଏହାଦ୍ୱାରା ପ୍ରାୟ ୬ ଲକ୍ଷ ନିଯୁକ୍ତି ସୁଯୋଗ ସୃଷ୍ଟି ହେବ । ମେକ୍ ଇନ୍ ଓଡ଼ିଶା ସାରା ବିଶ୍ୱରେ ଶିଳ୍ପୋଦ୍ୟୋଗୀଙ୍କ ଦୃଷ୍ଟି ଆକର୍ଷଣ କରିବାରେ ସଫଳ ହୋଇପାରିଛି । ଓଡ଼ିଶାରେ ଖଣିଜ ସଂପଦ, ପର୍ଯ୍ୟଟନ, ଖାଦ୍ୟ ପ୍ରକ୍ରିୟାକରଣ, ଅକ୍ଷୟ ଶକ୍ତି, କେମିକାଲ, ପେଟ୍ରୋକେମିକାଲ ଓ ଇଲେକ୍ଟ୍ରୋନିକ୍ସ କ୍ଷେତ୍ରରେ ପୁଞ୍ଜି ନିବେଶ ପାଇଁ ପ୍ରସ୍ତାବ ମିଳିଛି । ଗତ ୬ ମାସ ମଧ୍ୟରେ ୧୭ ହଜାର କୋଟି ଟଙ୍କା ପୁଞ୍ଜି ନିବେଶ କରାଯାଇ ୫୦ଟି ପ୍ରକଳ୍ପ ଆରମ୍ଭ କରାଯାଇଛି ।

ଆସୋଚାମ (ଆସୋସିଏଟେଡ୍ ଚାମ୍ବର୍ସ ଅଫ କମର୍ସ ଆଣ୍ଡ ଇଣ୍ଡଷ୍ଟ୍ରି ଅଫ୍ ଇଣ୍ଡିଆ) ଓଡ଼ିଶାକୁ ନିବେଶ କ୍ଷେତ୍ରରେ ୩ଟି ରାଜ୍ୟ ମଧ୍ୟରେ ୧ ନମ୍ବର ରାଜ୍ୟ ଭାବେ ସ୍ଥାନିତ କରିଛି । ରାଜ୍ୟରେ ଔଦ୍ୟୋଗିକ ଅଭିବୃଦ୍ଧି ନିମନ୍ତେ ୧,୭୭,୬୮୫ କୋଟି ଟଙ୍କା ବିନିଯୋଗରେ ୧,୩୧,୪୭୬ ନିଯୁକ୍ତି ସୁଯୋଗ ସୃଷ୍ଟି ସହିତ ୧୨୭ଟି ବୃହତ୍ ଶିଳ୍ପ ପ୍ରସ୍ତାବ ଅନୁମୋଦିତ ହୋଇଛି । ୧ ଲକ୍ଷ ୨୫ ହଜାର ୭୯୦ ଏକର ପରିମିତ ଜମିରେ **ଭୂ-ବ୍ୟାଙ୍କ** ପ୍ରତିଷ୍ଠା କରାଯାଇଛି ।

'ମେକ୍ ଇନ୍ ଓଡ଼ିଶା' ଆମ ରାଜ୍ୟ ପାଇଁ ପୁଞ୍ଜିନିବେଶ ଏବଂ ନିଯୁକ୍ତି ସୁଯୋଗ ସୃଷ୍ଟି କ୍ଷେତ୍ରରେ ଆଶାନୁରୂପ ସମ୍ଭାବନା ସୃଷ୍ଟି କରିଛି । ଓଡ଼ିଶାରେ ବ୍ୟବସାୟ ପାଇଁ ଏକ ଉନ୍ନତ ଓ ଅନୁକୂଳ ପରିବେଶ ସୃଷ୍ଟି ହୋଇଥିବା କଥା ସମସ୍ତେ ଅନୁଭବ କରିପାରୁଛନ୍ତି ।

# ସ୍କିଲ୍ଡ ଇନ୍ ଓଡ଼ିଶା

ଆମ ଓଡ଼ିଶାର ଯୁବକଯୁବତୀମାନଙ୍କ ମଧ୍ୟରେ ବିଭିନ୍ନ କ୍ଷେତ୍ରରେ କାର୍ଯ୍ୟ ଦକ୍ଷତା ପ୍ରତିପାଦନ କରିବା ପାଇଁ ଅସାଧାରଣ କ୍ଷମତା ରହିଛି । ସେମାନେ କେଉଁ କାମ କରିବାରେ ଦକ୍ଷ ବା ସ୍କିଲ୍ଡ, ତାହା ଉପଯୁକ୍ତ ଭାବରେ ଚିହ୍ନଟ କରି ଯୁବ ପ୍ରତିଭାକୁ ରାଜ୍ୟ ଓ ବିଶ୍ୱସ୍ତରରେ ପରିଚିତ କରାଇବାକୁ ହେବ । ଏହାକୁ ଦୃଷ୍ଟିରେ ରଖି ଯୁବଗୋଷ୍ଠୀଙ୍କ ଦକ୍ଷତା ବିକାଶ ମାଧ୍ୟମରେ ରାଜ୍ୟରେ ଦକ୍ଷ ମାନବ ସମ୍ବଳର ବିକାଶ କରି **ସ୍କିଲଡ ଇନ୍ ଓଡ଼ିଶା**କୁ ବିଶ୍ୱସ୍ତରୀୟ ବ୍ରାଣ୍ଡରେ ପରିଣତ କରିବାକୁ ଆମ ମୁଖ୍ୟମନ୍ତ୍ରୀ ଅଗ୍ରାଧିକାର ଦେଇଛନ୍ତି ।




ଏ ଦିଗରେ **ଓଡ଼ିଶା ଦକ୍ଷତା ବିକାଶ** ପ୍ରାଧିକରଣ ପ୍ରମୁଖ ଭୂମିକା ନିର୍ବାହ କରୁଛନ୍ତି । ଏହା ଅଧୀନରେ ରାଜ୍ୟର ପ୍ରତି ଜିଲ୍ଲାରେ ଗୋଟିଏ ଲେଖାଏଁ ଏବଂ ଖୋର୍ଦ୍ଧାର ବେଗୁନିଆ ଏବଂ ଅନୁଗୋଳ ଜିଲ୍ଲାର ପାଲଲହଡାଠାରେ ଅତିରିକ୍ତ ୨ଟି ଏହିପରି ମୋଟ ୩୨ଟି **ଦକ୍ଷତା ବିକାଶ କେନ୍ଦ୍ର** ପ୍ରତିଷ୍ଠା କରାଯାଇଛି । ସେହିପରି ଦକ୍ଷତା ପ୍ରଶିକ୍ଷଣ ପ୍ରଦାନ ନିମନ୍ତେ ପ୍ରତ୍ୟେକ ସରକାରୀ **ଆଇ.ଟି.ଆଇ** ଏବଂ **ପଲିଟେକ୍‌ନିକ୍ ଶିକ୍ଷାନୁଷ୍ଠାନ**ରେ ୩୮ଟି **ଦକ୍ଷତା ବିକାଶ ସଂପ୍ରସାରଣ କେନ୍ଦ୍ର** ପ୍ରତିଷ୍ଠା ହୋଇଛି । ଭାରତରେ ପ୍ରଥମ ଥର ପାଇଁ ଓଡ଼ିଶାର ପ୍ରତ୍ୟେକ ଶିଳ୍ପ ତାଲିମ କେନ୍ଦ୍ରରେ ଅଧ୍ୟୟନରତ ଛାତ୍ରଛାତ୍ରୀଙ୍କ ଦକ୍ଷତା ବିକାଶ ନିମନ୍ତେ ଭିତ୍ତିଭୂମିର ଉନ୍ନତିକରଣ ସହ ଛାତ୍ରଛାତ୍ରୀଙ୍କ ପାଇଁ ସ୍ମାର୍ଟ କ୍ଲାସ୍‌ରୁମ୍, ସ୍ୱତନ୍ତ୍ର ୟୁନିଫର୍ମ ଏବଂ **ଇ-ଲାଇବ୍ରେରୀ** ବ୍ୟବସ୍ଥା କରାଯାଇଛି ।

**ମୁଖ୍ୟମନ୍ତ୍ରୀ ନିଯୁକ୍ତି ସୃଷ୍ଟି ଯୋଜନା** ଜରିଆରେ ପ୍ରତ୍ୟେକ ଗ୍ରାମପଞ୍ଚାୟତରୁ ୧୫୦ ଜଣ ଯୁବଗୋଷ୍ଠୀଙ୍କୁ ରୋଜଗାର ପ୍ରଦାନକାରୀ ଦକ୍ଷତା ପ୍ରଶିକ୍ଷଣ ମାଧ୍ୟମରେ ନିଯୁକ୍ତି ଯୋଗ୍ୟ କରାଯାଉଛି । ୨୦୧୪-୧୫ ଠାରୁ ଏପର୍ଯ୍ୟନ୍ତ ୯ ଲକ୍ଷ ୫୦ ହଜାରରୁ ଅଧିକ ଯୁବକଯୁବତୀଙ୍କୁ ପ୍ରଶିକ୍ଷଣ ପ୍ରଦାନ କରାଯାଇଛି ।

ଖୋର୍ଦ୍ଧା ଜିଲ୍ଲା ଜଟଣୀଠାରେ ରାଜ୍ୟର ଭିନ୍ନକ୍ଷମମାନଙ୍କ ନିମନ୍ତେ ପ୍ରଥମ **ସ୍ୱତନ୍ତ୍ର ଶିଳ୍ପ ତାଲିମ ଅନୁଷ୍ଠାନ** କାର୍ଯ୍ୟକ୍ଷମ ହୋଇଛି । ଭାରତରେ ପ୍ରଥମ ଥର ପାଇଁ ସିଙ୍ଗାପୁରର ବିଶ୍ୱ ବିଖ୍ୟାତ ଆଇ.ଟି.ଇ ସଂସ୍ଥାରେ ସରକାରୀ ଆଇ.ଟି.ଆଇର ୧୦୦ ଜଣ ପ୍ରଶିକ୍ଷକଙ୍କୁ ନେଇ ଦୁଇ ସପ୍ତାହର ନେତୃତ୍ୱ ବିକାଶ ପ୍ରଶିକ୍ଷଣ କାର୍ଯ୍ୟକ୍ରମ କରାଯାଇଛି । ଦେଶରେ ପ୍ରଥମ ଥର ପାଇଁ **ଆଇ.ଟି.ଆଇ ଫେଷ୍ଟ-୨୦୧୮** ଭୁବନେଶ୍ୱରଠାରେ ଆୟୋଜନ କରାଯାଇ ଦକ୍ଷତା ବିକାଶ ନିମନ୍ତେ ରାଜ୍ୟର ସମସ୍ତ ସରକାରୀ ଆଇ.ଟି.ଆଇର ପ୍ରଶିକ୍ଷକ ଏବଂ ପ୍ରଶିକ୍ଷାର୍ଥୀଙ୍କ ମଧ୍ୟରେ ମନୋବଳ ବୃଦ୍ଧି କରାଯାଇଛି ।

ରାଜ୍ୟର ପ୍ରଥମ **ସ୍କିଲ ମ୍ୟୁଜିୟମ୍ (ଦକ୍ଷତା ସଂଗ୍ରହାଳୟ)** କଟକ ସହରର ଖପୁରିଆସ୍ଥିତ ସରକାରୀ ଆଇ.ଟି.ଆଇରେ ଉଦ୍ଘାଟିତ ହୋଇଛି । ୨୬୦୦ ବର୍ଗଫୁଟ ପରିମିତ ଏହି ସଂଗ୍ରହାଳୟରେ ବିଶ୍ୱସ୍ତରୀୟ ପ୍ରଦର୍ଶନ କ୍ଷେତ୍ର ଏବଂ ପ୍ରେକ୍ଷାଳୟ ରହିଛି ।




ଦଶମ ଶ୍ରେଣୀ ପାସ୍ ଛାତ୍ରୀମାନଙ୍କୁ ବୈଷୟିକ ଶିକ୍ଷା ପ୍ରତି ଆକୃଷ୍ଟ କରି ରାଜ୍ୟରେ ବିଭିନ୍ନ ଶିଳ୍ପ ତାଲିମ କେନ୍ଦ୍ର(ଆଇ.ଟି.ଆଇ)ରେ ନାମ ଲେଖାଇବା ପାଇଁ ଆମ ସରକାର ଆରମ୍ଭ କରିଛନ୍ତି **ସୁଦକ୍ଷା ଯୋଜନା**।

୨୦୧୯ରେ ଋଷିଆର କାଜାନ୍ ସହରଠାରେ ହେବାକୁ ଥିବା ବିଶ୍ୱ ଦକ୍ଷତା ପ୍ରତିଯୋଗିତାରେ ଅଂଶଗ୍ରହଣ କରି ସେଠାରେ ସବୁଠାରୁ ଭଲ ପ୍ରଦର୍ଶନ କରିବା ଲକ୍ଷ୍ୟ ନେଇ ଓଡ଼ିଶା ଦକ୍ଷତା ବିକାଶ ପ୍ରାଧିକରଣ ପକ୍ଷରୁ ପ୍ରତିଭା ଅନ୍ୱେଷଣ କାର୍ଯ୍ୟକ୍ରମ କରାଯାଇଥିଲା। ୨୦୧୮ରେ ଓଡ଼ିଶା ପ୍ରଥମ ଥର ପାଇଁ ଦକ୍ଷତା ପ୍ରତିଯୋଗିତା ଆୟୋଜନ କରିଥିଲା, ଯେଉଁଥିରେ କି ରାଜ୍ୟର ୭୦୦୦ କୁଶଳୀ ଯୁବକ ଓ ଯୁବତୀ ଭାଗ ନେଇଥିଲେ। ସେଥିମଧ୍ୟରୁ ଓଡ଼ିଶାରୁ ଆଞ୍ଚଳିକ ସ୍ତରରେ ବିଜେତା ହୋଇଥିବା ୨୮ଜଣ ଜାତୀୟ ସ୍ତରକୁ ମନୋନୀତ ହୋଇଥିଲେ। ୨୦୧୮ ଅକ୍ଟୋବର ୩ ରୁ ୫ ତାରିଖ ମଧ୍ୟରେ ନୂଆଦିଲ୍ଲୀର ଏରୋସିଟି ମଇଦାନରେ ଅନୁଷ୍ଠିତ **ଇଣ୍ଡିଆ ସ୍କିଲ୍‌ସ**ର ଉଦ୍‌ଯାପନୀ ସମାରୋହରେ ଓଡ଼ିଶାରୁ ଅଂଶ ଗ୍ରହଣ କରିଥିବା ଯୁବକଯୁବତୀମାନେ **୪ଟି ସ୍ୱର୍ଣ୍ଣ, ୯ଟି ରୌପ୍ୟ** ଏବଂ **୬ଟି ବ୍ରୋଞ୍ଜ** ପଦକ ଲାଭ କରି ୨୦୧୯ରେ ଋଷିଆର କାଜାନ୍ ସହରରେ ଅନୁଷ୍ଠିତ ହେବାକୁ ଥିବା ୪୫ ତମ ୱାର୍ଲ୍ଡ ସ୍କିଲ୍‌ସ ପ୍ରତିଯୋଗିତାରେ ଭାରତର ପ୍ରତିନିଧିତ୍ୱ କରିବାର ଗୌରବ ଅର୍ଜନ କରିଛନ୍ତି।

ଦୀନ ଦୟାଲ ଉପାଧ୍ୟାୟ କୌଶଳ ବିକାଶ କାର୍ଯ୍ୟକ୍ରମରେ ବିଗତ ୩ ବର୍ଷରେ ଆମ ରାଜ୍ୟରୁ ପ୍ରାୟ ୫୪ ହଜାର ଯୁବକଯୁବତୀ ପ୍ରଶିକ୍ଷଣ ପରେ ରାଜ୍ୟରେ ଏବଂ ରାଜ୍ୟ ବାହାରେ ନିଯୁକ୍ତି ପାଇଛନ୍ତି। କ୍ରମାଗତ ଭାବେ ଏହି ଯୋଜନା କାର୍ଯ୍ୟକାରୀ କରିବାରେ ଓଡ଼ିଶା ଦ୍ୱିତୀୟ ଥର ପାଇଁ ଦେଶରେ ପ୍ରଥମ ସ୍ଥାନ ଅଧିକାର କରି ଭାରତ ସରକାରଙ୍କ ଗ୍ରାମ୍ୟ ଉନ୍ନୟନ ବିଭାଗ ପକ୍ଷରୁ ପୁରସ୍କୃତ ହୋଇଛି।



ଅନ୍ତର୍ଜାତୀୟ ସ୍ତରରେ ଓଡ଼ିଶାକୁ ଦକ୍ଷ ମାନବ ସମ୍ବଳର କେନ୍ଦ୍ରସ୍ଥଳୀ ଭାବେ ପ୍ରତିଷ୍ଠା କରାଇବା ଲକ୍ଷ୍ୟରେ ଭୁବନେଶ୍ୱର ମଞ୍ଚେଶ୍ୱର ଶିଳ୍ପାଞ୍ଚଳଠାରେ **ବିଶ୍ୱ ଦକ୍ଷତା କେନ୍ଦ୍ର (ୱାର୍ଲ୍ଡ ସ୍କିଲ୍ ସେଣ୍ଟର)** ୨୦୧୯ ସୁଦ୍ଧା କାର୍ଯ୍ୟକ୍ଷମ ହେବାକୁ ଯାଉଛି । ଇଡ୍‌କୋ ଦ୍ୱାରା ନିର୍ମିତ ୧୮ ମହଲା ବିଶିଷ୍ଟ ଏହି ଅତ୍ୟାଧୁନିକ ଅଟ୍ଟାଳିକା ପ୍ରାୟ ୫ ଲକ୍ଷ ବର୍ଗଫୁଟ ପରିବ୍ୟାପ୍ତ ଅଞ୍ଚଳରେ କରାଯାଇଛି, ଯେଉଁଠାରେ କି ବିଶ୍ୱସ୍ତରୀୟ ବୈଷୟିକ ଜ୍ଞାନକୌଶଳ ସୁବିଧା ଉପଲବ୍ଧ ହେବ।

# ଆମ ସଂସ୍କୃତି ଆମ ଐତିହ୍ୟ

ଭାଷାଭିତ୍ତିକ ରାଜ୍ୟ ଭାବରେ ଗଠିତ ହେବାରେ ଆମ ଓଡ଼ିଶା ପ୍ରଥମ ରାଜ୍ୟ । ଏବେ ଦେଶର ଷଷ୍ଠ ଶାସ୍ତ୍ରୀୟ ଭାଷା ଭାବେ ଓଡିଆ ଭାଷା ମାନ୍ୟତା ପାଇଛି । ଆମ ମୁଖ୍ୟମନ୍ତ୍ରୀ ଓଡିଆ ଭାଷା, ସାହିତ୍ୟ ଓ ସଂସ୍କୃତିର ସୁରକ୍ଷା ତଥା ପ୍ରସାର ପାଇଁ ସବୁ ପ୍ରକାର ଉଦ୍ୟମ ଅବ୍ୟାହତ ରଖିଛନ୍ତି । ରାଜ୍ୟ ସଂସ୍କୃତି ବିଭାଗକୁ **ଓଡିଆ ଭାଷା, ସାହିତ୍ୟ ଓ ସଂସ୍କୃତି ବିଭାଗ** ଭାବରେ ନାମିତ କରିଛନ୍ତି । ୨୦୧୭ ମସିହା ଡିସେମ୍ବର ୨୬ ତାରିଖରେ ଓଡ଼ିଶାର ସାଂସ୍କୃତିକ ରାଜଧାନୀ ଭାବେ ବିଦିତ ପୁରୀଠାରେ ଅନୁଷ୍ଠିତ ରାଜ୍ୟର ପ୍ରଥମ ଐତିହ୍ୟ କ୍ୟାବିନେଟ୍‌ରେ ଓଡିଆ ଭାଷା, ସାହିତ୍ୟ ଓ ସଂସ୍କୃତିର ସୁରକ୍ଷା ତଥା ଅନ୍ତର୍ଜାତୀୟ ସ୍ତରରେ ଏହାର ପ୍ରଚାର ପ୍ରସାର ଉଦ୍ଦେଶ୍ୟରେ ନିଷ୍ଠାର ସହ କାର୍ଯ୍ୟ କରାଯିବା ଉପରେ ଆମ ମୁଖ୍ୟମନ୍ତ୍ରୀ ଗୁରୁତ୍ୱ ଆରୋପ କରିଛନ୍ତି ।



ପଞ୍ଚସଖାଙ୍କ ସ୍ମୃତିରେ ସତ୍ୟବାଦୀଠାରେ **ଓଡିଆ ବିଶ୍ୱବିଦ୍ୟାଳୟ** ସ୍ଥାପନ ନିମନ୍ତେ ଆମ ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ନବୀନ ପଟ୍ଟନାୟକ ଭିତ୍ତିପ୍ରସ୍ତର ସ୍ଥାପନ କରିଛନ୍ତି । ଏହି ବିଶ୍ୱବିଦ୍ୟାଳୟ ଓଡିଆ ଭାଷା ଓ ସାହିତ୍ୟର ଐତିହ୍ୟ ଏବଂ ଉତ୍କର୍ଷ ହାସଲ ନିମନ୍ତେ କାର୍ଯ୍ୟ କରିବ ।

ଇଲେକ୍ଟ୍ରୋନିକ୍ ଓ ସୂଚନା-ପ୍ରଯୁକ୍ତି ବିଦ୍ୟା ଉପଯୋଗ କରି ବିରଳ ଏବଂ କାଳଜୟୀ ଓଡିଆ ପୁସ୍ତକଗୁଡିକର ଡିଜିଟାଇଜେସନ ସହିତ ଓଡିଆ ଭାଷା ଏବଂ ସାହିତ୍ୟକୁ ବିଶ୍ୱବ୍ୟାପୀ କରିବା ଲକ୍ଷ୍ୟରେ **ଓଡିଆ ଭର୍ଚୁଆଲ ଏକାଡେମୀ** ପ୍ରତିଷ୍ଠା କରାଯାଇଛି । ସମଗ୍ର ବିଶ୍ୱରେ ବସବାସ କରୁଥିବା ଓଡିଆମାନଙ୍କୁ ଇଣ୍ଟରନେଟ୍ ସହାୟତାରେ ଓଡିଆ ଭାଷାର କାଳଜୟୀ ପୁସ୍ତକ ସମ୍ଭାର ସହିତ ପରିଚିତ କରାଇ ନିଜ ଭାଷା ଓ ସାହିତ୍ୟ ପ୍ରତି ଆଦର ବଢାଇବା ଏହାର ମୌଳିକ ଉଦ୍ଦେଶ୍ୟ ।

୧୮୫୭ ମସିହା ସିପାହୀ ବିଦ୍ରୋହର ୪୦ ବର୍ଷ ପୂର୍ବରୁ ୧୮୧୭ ମସିହାରେ ଓଡ଼ିଶାର ଖୋର୍ଦ୍ଧା ଅଂଚଳରେ ବକ୍ସି ଜଗବନ୍ଧୁଙ୍କ ନେତୃତ୍ୱରେ ବ୍ରିଟିଶ୍ ସାମ୍ରାଜ୍ୟ ବିରୁଦ୍ଧରେ ସଂଘଠିତ ଐତିହାସିକ ସଂଗ୍ରାମ **'ପାଇକ ବିଦ୍ରୋହ'** ନାମରେ ଖ୍ୟାତ । ଜାତୀୟ ତଥା ଅନ୍ତର୍ଜାତୀୟ ସ୍ତରର ବହୁ ଐତିହାସିକଙ୍କ ମତରେ ଏହାହିଁ ଥିଲା ବ୍ରିଟିଶରାଜ ବିରୁଦ୍ଧରେ ଭାରତର ପ୍ରଥମ ସ୍ୱାଧୀନତା ସଂଗ୍ରାମ । ଏହି ଐତିହାସିକ ସତ୍ୟତାକୁ ଭାରତର ପ୍ରଥମ ସ୍ୱାଧୀନତା ସଂଗ୍ରାମର ମାନ୍ୟତା ଦେବା ପାଇଁ ଆମ ମୁଖ୍ୟମନ୍ତ୍ରୀ କେନ୍ଦ୍ର ସରକାରଙ୍କ ନିକଟରେ ଦୃଢ ଦାବୀ ଉପସ୍ଥାପନ କରିଛନ୍ତି । ୨୦୧୭ ମସିହାରେ ପାଇକ ବିଦ୍ରୋହର ୨ଶହ ବର୍ଷ ପୂର୍ତ୍ତି ଉପଲକ୍ଷେ ଆମ ସରକାର ବର୍ଷ ବ୍ୟାପୀ ଉତ୍ସବ ରାଜ୍ୟସ୍ତରରେ ପାଳନ କରିଛନ୍ତି ।

ଆମ ଓଡ଼ିଶାର କଳା, ସଂସ୍କୃତି ଏବଂ ଐତିହ୍ୟର ସ୍ୱକୀୟ ପରମ୍ପରା ଓ ସମୃଦ୍ଧି ରହିଛି । ଆମର ଗୌରବମୟ ଐତିହ୍ୟ ଓ ସଂସ୍କୃତିକୁ ସଂରକ୍ଷଣ କରି ରଖିବା ସହିତ ଏହାର ପ୍ରଚାର ଓ ପ୍ରସାର ତଥା ବିଶ୍ୱ ଆଦୃତି ନିମନ୍ତେ ଏଗୁଡ଼ିକୁ ଏକ ମନୋଜ୍ଞ ପରିବେଶରେ ପ୍ରଦର୍ଶିତ କରିବା ଉଦ୍ଦେଶ୍ୟରେ ଆମ ସରକାର ଭୁବନେଶ୍ୱର ପୋଖରୀପୁଟ-ଖଣ୍ଡଗିରି ରାସ୍ତାର ଶିଳ୍ପୀ ବିହାରଠାରେ ୧୨.୬୮ ଏକର ଜମିରେ ୩୪.୮୫ କୋଟି ଟଙ୍କାରେ ନିର୍ମାଣ କରିଛନ୍ତି ଓଡ଼ିଶା ହସ୍ତଶିଳ୍ପ ସଂଗ୍ରହାଳୟ **'କଳାଭୂମି'** । ଏହା ଏବେ ଜନ ଆଦୃତି ଲାଭ କରିବା ସହିତ ଦେଶୀ ଏବଂ ବିଦେଶୀ ପର୍ଯ୍ୟଟକମାନଙ୍କ ପାଇଁ ଆକର୍ଷଣର ପ୍ରମୁଖ କେନ୍ଦ୍ର ପାଲଟିଛି ।

ପ୍ରବାଦପୁରୁଷ ବିଜୁ ପଟ୍ଟନାୟକଙ୍କର ପୈତୃକ ବାସ ଭବନ କଟକ ତୁଳସୀପୁରସ୍ଥିତ ଆନନ୍ଦ ଭବନରେ ବିଜୁ ପଟ୍ଟନାୟକଙ୍କର ଶୈଶବ, କୈଶୋର ଏବଂ ରାଜନୈତିକ ଜୀବନର ବହୁ ମୂଲ୍ୟବାନ ସମୟ ଅତିବାହିତ ହୋଇଥିଲା । ପ୍ରାକ୍ ସ୍ୱାଧୀନତା କାଳରେ ବ୍ରିଟିଶ୍ ଶାସନ ବିରୁଦ୍ଧରେ ଏହିଠାରେ ଅନେକ ଗୁରୁତ୍ୱପୂର୍ଣ୍ଣ ରାଜନୈତିକ ନିଷ୍ପତ୍ତି ସହିତ ସ୍ୱାଧୀନୋତ୍ତର ଓଡ଼ିଶାର ଶିଳ୍ପାୟନ ଓ ଆଧୁନିକୀକରଣ ପାଇଁ ନକ୍ସା ପ୍ରସ୍ତୁତ ହେଉଥିଲା । ବିଜୁବାବୁଙ୍କର ସୁପୁତ୍ର ତଥା ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ନବୀନ ପଟ୍ଟନାୟକ ଏବଂ ତାଙ୍କ ପରିବାରବର୍ଗ ଏକ ଜାତୀୟ ସଂଗ୍ରହାଳୟ ପ୍ରତିଷ୍ଠା ଲକ୍ଷ୍ୟରେ ଆନନ୍ଦ ଭବନକୁ ଓଡ଼ିଶାବାସୀଙ୍କ ଉଦ୍ଦେଶ୍ୟରେ ରାଜ୍ୟ ସରକାରଙ୍କୁ ଦାନ କରିଦେଇଥିଲେ । ୨୦୧୮ ମସିହା ମାର୍ଚ୍ଚ ୧୭ ତାରିଖରେ ଆନନ୍ଦ ଭବନକୁ ଭାରତର ମାନ୍ୟବର ରାଷ୍ଟ୍ରପତି **'ଆନନ୍ଦ ଭବନ ସଂଗ୍ରହାଳୟ ଓ ଅଧ୍ୟୟନ କେନ୍ଦ୍ର'** ନାମରେ ଦେଶବାସୀଙ୍କ ଉଦ୍ଦେଶ୍ୟରେ ଉତ୍ସର୍ଗ କରିଛନ୍ତି । ବିଜୁ ପଟ୍ଟନାୟକଙ୍କ ସ୍ମୃତି ଉଦ୍ଦେଶ୍ୟରେ ସମର୍ପିତ ଏହା ଏକ ଜାତୀୟସ୍ତରୀୟ ସଂଗ୍ରହାଳୟ ।



ରାଜ୍ୟର ସବୁ ଅଂଚଳର ପାରମ୍ପରିକ ଲୋକକଳାଗୁଡ଼ିକ ଚିହ୍ନଟ କରାଯାଇ ଲୋକ କଳାକାରମାନଙ୍କୁ ପ୍ରୋତ୍ସାହନ ଦେବା ଉଦ୍ଦେଶ୍ୟରେ ସେମାନଙ୍କ ପାଇଁ ଆମ ସରକାରଙ୍କ ତରଫରୁ କଳାକାର ଭତ୍ତା ବ୍ୟବସ୍ଥା କରାଯାଇଛି । ଆମ ପ୍ରିୟ ମୁଖ୍ୟମନ୍ତ୍ରୀଙ୍କ ନିଷ୍ପତ୍ତି ଓ ଘୋଷଣା ଅନୁସାରେ **'ମୁଖ୍ୟମନ୍ତ୍ରୀ କଳାକାର ସହାୟତା ଯୋଜନା'** ଆରମ୍ଭ କରାଯାଇ ୫୦ ହଜାର କଳାକାରଙ୍କୁ ମାସକୁ ୧୨ ଶହ ଟଙ୍କାର ସହାୟତା ପ୍ରଦାନ କରାଯାଉଛି । ଏହି ଯୋଜନାରେ ସହାୟତା ପାଇବା ପାଇଁ ପୁରୁଷ କଳାକାରଙ୍କ ସର୍ବନିମ୍ନ ବୟସ ସୀମା ୫୦ ଏବଂ ପ୍ରଥମ ଥର ପାଇଁ ମହିଳା କଳାକାରଙ୍କ ବୟସ ସୀମା ୪୦ ବର୍ଷ ବୟସରେ ଧାର୍ଯ୍ୟ କରାଯାଇଛି । ଏହାଦ୍ୱାରା ଦୁଃସ୍ଥ କଳାକାରମାନେ ବହୁ ଭାବରେ ଉପକୃତ ହେବେ ।

ବିଭିନ୍ନ ସ୍ଥାନରେ ରହିଥିବା ଭାଗବତ **ଟୁଙ୍ଗୀ**ଗୁଡ଼ିକର ପୁନରୁଦ୍ଧାର ପାଇଁ ରାଜ୍ୟ ସରକାର ପଦକ୍ଷେପ ନେଇଛନ୍ତି ।

ଓଡ଼ିଆ ଭାଷା ସାହିତ୍ୟରେ ଉଚ୍ଚତର ଗବେଷଣା ପାଇଁ ନୂଆଦିଲ୍ଲୀସ୍ଥିତ ଜବାହରଲାଲ ନେହେରୁ ବିଶ୍ୱବିଦ୍ୟାଳୟଠାରେ **ଆଦିକବି ସାରଳା ଦାସ ଚେୟାର** ଏବଂ ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟଠାରେ **କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ ଚେୟାର** ପ୍ରତିଷ୍ଠା କରାଯାଇଛି ।

# ହକି




**ପୁରୁଷ ହକି ବିଶ୍ୱ କପ୍** ପରି ଏକ ବିଶ୍ୱସ୍ତରୀୟ ହକି ଟୁର୍ଣ୍ଣାମେଣ୍ଟ ୨୦୧୮ ମସିହା ନଭେମ୍ବର ମାସ ୨୮ ତାରିଖରୁ ଡିସେମ୍ବର ମାସ ୧୬ ତାରିଖ ପର୍ଯ୍ୟନ୍ତ ଭୁବନେଶ୍ୱରର କଳିଙ୍ଗ ଷ୍ଟାଡିୟମଠାରେ ଅନୁଷ୍ଠିତ ହୋଇଯାଇଛି । ହକି ବିଶ୍ୱକପ୍‌ର ସୁଖଦ ସମାପ୍ତି ଘଟିବା ସାଙ୍ଗକୁ ଟୁର୍ଣ୍ଣାମେଣ୍ଟର ସଫଳ ଆୟୋଜନ ନେଇ କଳିଙ୍ଗ ମାଟି ରଚିଛି ନୂଆ ଇତିହାସ । ଏହି ମହାକୁମ୍ଭର ଆୟୋଜନ ଓଡ଼ିଶାବାସୀଙ୍କୁ ଯେତିକି ଗର୍ବ ଓ ଗୌରବ ଆଣି




ଦେଇଛି, ଆମ ସରକାର ତଥା ମୁଖ୍ୟମନ୍ତ୍ରୀଙ୍କ ପାଖକୁ ଏଥିପାଇଁ ଦେଶ ବିଦେଶରୁ ତା'ଠାରୁ କାହିଁ କେତେଗୁଣା ଅଧିକା ପ୍ରଶଂସାର ସୁଅ ଛୁଟିବାରେ ଲାଗିଛି ।

ହକି ବିଶ୍ୱକପ୍-୨୦୧୮ର ସଫଳ ଆୟୋଜନ ପାଇଁ ଆମ ସରକାର କୌଣସି କଥାରେ ଏତେ ଟିକିଏ ବି ତ୍ରୁଟି ରଖିନଥିଲେ । ହକି ବିଶ୍ୱ କପ୍ ଦେଖିବା ପାଇଁ ଆସିଥିବା ବଲିଉଡ୍ କଳାକାରଙ୍କଠାରୁ ଆରମ୍ଭ କରି ଭାରତୀୟ ହକି ଟିମ୍‌ର ପ୍ରାକ୍ତନ ଖେଳାଳି, କ୍ରିକେଟର, ପର୍ଯ୍ୟଟକ, ସମସ୍ତେ କଳିଙ୍ଗ ଷ୍ଟାଡିୟମରେ ଏଭଳି ବିଶ୍ୱକପ୍ ଟୁର୍ଣ୍ଣାମେଣ୍ଟର ସଫଳ ଆୟୋଜନ ନେଇ ଓଡ଼ିଶା ସରକାରଙ୍କୁ ପ୍ରଶଂସାରେ ପୋତି ପକାଇଛନ୍ତି । କଳିଙ୍ଗ ଷ୍ଟାଡିୟମରେ ହକି ବିଶ୍ୱକପ୍‌ର ଉଦ୍ଘାଟନୀ ଉତ୍ସବ, କଟକର ଐତିହାସିକ ବାରବାଟୀ ଷ୍ଟାଡିୟମଠାରେ ଏହାର ପ୍ରଚାର ଉତ୍ସବଠାରୁ ଆରମ୍ଭ କରି ଫାଇନାଲ ପର୍ଯ୍ୟନ୍ତ ସମସ୍ତ ମ୍ୟାଚ୍‌ର ସଫଳ ଆୟୋଜନ ନେଇ ଟୁର୍ଣ୍ଣାମେଣ୍ଟରେ ଭାଗ ନେଇଥିବା ବିଶ୍ୱର ୧୬ଟି ଦେଶ ଆମ ସରକାରଙ୍କୁ ଭୂୟସୀ ପ୍ରଶଂସା କରିଛନ୍ତି । ସମଗ୍ର ବିଶ୍ୱବାସୀ ଏଭଳି ଜାକଜମକ, ଆଡମ୍ବରପୂର୍ଣ୍ଣ ତଥା ତ୍ରୁଟିଶୂନ୍ୟ ଆୟୋଜନର ସିଧା ପ୍ରସାରଣ ଦେଖି ସ୍ତବ୍ଧ ହୋଇଯାଇଥିଲେ ।

ପୁରୁଷ ବିଶ୍ୱକପ୍ ହକି ଟୁର୍ଣ୍ଣାମେଣ୍ଟର  ବହୁଳ ପ୍ରସାର, ହକି ଖେଳକୁ ଭଲ ପାଇବା ଓ ଖେଳାଳିଙ୍କୁ ଉତ୍ସାହିତ କରିବା ଉଦ୍ଦେଶ୍ୟରେ ଆମ ମୁଖ୍ୟମନ୍ତ୍ରୀ **'ମାଇଁ ହାର୍ଟ ବିଟ୍‌ସ ଫର  ହକି' (ମୋ ହୃଦୟ ହକି ପାଇଁ ସ୍ପନ୍ଦିତ)** ଅଭିଯାନର ଶୁଭାରମ୍ଭ କରିଥିଲେ । ମୁଖ୍ୟମନ୍ତ୍ରୀ ହକି ବିଶ୍ୱ କପ୍ ଉପଲକ୍ଷେ ଉଦ୍ଦିଷ୍ଟ **କାଉଣ୍ଟ ଡାଉନ୍ ଘଣ୍ଟା ଉନ୍ମୋଚନ** କରିବା ସହିତ କଳିଙ୍ଗ ଷ୍ଟାଡିୟମରେ ବିଶ୍ୱସ୍ତରୀୟ **ହକି କମ୍ପ୍ଲେକ୍ସ**ର ଶୁଭ ଉଦ୍ଘାଟନ ମଧ୍ୟ କରିଥିଲେ ।



ଓଡ଼ିଶାର ଐତିହ୍ୟର ପ୍ରତୀକ କୋଣାର୍କ ଚକ, ପ୍ରସିଦ୍ଧ ସମୁଦ୍ର ବେଳାଭୂମି, ଅଲିଭ୍ ରିଡ୍‌ଲେ କଇଁଛ, ଓଡିଶୀ ନୃତ୍ୟ ଓ ହକିକୁ ନେଇ ହକି ବିଶ୍ୱକପ୍ ଲୋଗୋ ଉନ୍ମୋଚିତ ହୋଇଥିଲା । କୌତୁକିଆ, ଆତ୍ମବିଶ୍ୱାସ ଭରା ବିରଳ କଇଁଛ 'ଓଲି' ବିଶ୍ୱକପ୍‌ର ମାସ୍କଟ ହୋଇ ରାଜ୍ୟ ସାରା ବୁଲି ବିଶ୍ୱକପ୍ ପ୍ରଚାରରେ ସହାୟକ ହେବା ସହିତ ଟୁର୍ଣ୍ଣାମେଣ୍ଟ ସମୟରେ ଦର୍ଶକମାନଙ୍କୁ ମତୁଆଲା କରିଥିଲା ।

କେବଳ ସେତିକି ନୁହେଁ, ସ୍ମାର୍ଟ ସିଟି ଭୁବନେଶ୍ୱରରେ ହକି ଆୟୋଜିତ ହେବା ନେଇ ବହୁ ବିଦେଶୀ ଚିତ୍ରଶିଳ୍ପୀମାନଙ୍କ ସମେତ ରାଜଧାନୀର ବିଭିନ୍ନ ଚିତ୍ରଶିଳ୍ପୀମାନେ ସହରର ପ୍ରମୁଖ ରାସ୍ତାର ପ୍ରାଚୀର କାନ୍ଥରେ ବିଶ୍ୱର ପ୍ରମୁଖ ତାରକା ହକି ଖେଳାଳିଙ୍କ ପ୍ରତିକୃତି ଆଙ୍କିଥିଲେ, ଯାହାକି ଦର୍ଶକ ଓ ପର୍ଯ୍ୟଟକମାନଙ୍କ ମନରେ ଆଙ୍କିଦେଇଥିଲା ହକି ବିଶ୍ୱକପ୍‌ର ଛାପ । ଏପଟେ ଦେଶ ବିଦେଶର ପର୍ଯ୍ୟଟକମାନଙ୍କୁ ମନୋରଞ୍ଜନର ଖୋରାକ ଯୋଗାଇଦେବା ପାଇଁ ଭୁବନେଶ୍ୱରରେ ୧୬ ଦିନ ଧରି ଆୟୋଜିତ ହୋଇଥିଲା ସିଟି ଫେଷ୍ଟିଭାଲ **ଡଟ୍ ଫେଷ୍ଟ,** ଯେଉଁଥିରେ କି ବଲିଉଡ୍‌ର ନାମୀଦାମୀ କଣ୍ଠଶିଳ୍ପୀମାନେ ଯୋଗଦାନ କରିଥିଲେ । ଏହି ଫେଷ୍ଟରେ ଓଡିଆ ସୁଆଦିଆ ଖାଦ୍ୟ ସମେତ ହକି ବିଶ୍ୱକପ୍‌ରେ ଅଂଶଗ୍ରହଣ କରିଥିବା ୧୬ଟି ଦେଶର ଖାଦ୍ୟ ରନ୍ଧାଯାଇ ପରଷା ଯାଇଥିଲା, ଯାହାର ମଜା ଦର୍ଶକମାନେ ମନଭରି ନେଇଥିଲେ ।



ହକି ଖେଳ ଓଡ଼ିଶାରେ ବହୁତ ଲୋକପ୍ରିୟ । ବିଶେଷ କରି ଓଡ଼ିଶାର ଆଦିବାସୀ ଅଞ୍ଚଳରେ ହକି ଖେଳ କେବଳ ଏକ ଖେଳ ନୁହେଁ, ବରଂ ଏହା ଏକ ଜୀବନଶୈଳୀ । ଏଣୁ ଓଡ଼ିଶାର **କ୍ରୀଡା ହବ୍** ଭାବେ ବିବେଚିତ ହେଉଥିବା ଭୁବନେଶ୍ୱରର କଳିଙ୍ଗ ଷ୍ଟାଡିୟମରେ ହକି ବିଶ୍ୱକପ୍‌ର ଆୟୋଜନ ନେଇ ଓଡ଼ିଶା ସରକାର ଭଲ ଭାବରେ ପୂର୍ବ ପ୍ରସ୍ତୁତି କରିଥିଲେ । ନିଜେ ଆମ ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ନବୀନ ପଟ୍ଟନାୟକ ହକି ବିଶ୍ୱକପ୍‌ର ସଫଳ ଆୟୋଜନ ସମ୍ପର୍କରେ ବହୁବାର ସମୀକ୍ଷା କରିଥିଲେ ଏବଂ ସମୀକ୍ଷା ପରେ ଏହାର ସଫଳତା ସମ୍ପର୍କରେ ବେଶ୍ ଆଶାବାଦୀ ଥିଲେ ।

ହକି ଖେଳକୁ ବହୁ ଗୁରୁତ୍ୱ ଦେଉଛନ୍ତି ଆମ ମୁଖ୍ୟମନ୍ତ୍ରୀ । ନିକଟରେ ଇଣ୍ଡୋନେସିଆର ଜାକର୍ତ୍ତାଠାରେ ଏସୀୟ କ୍ରୀଡାରେ ଓଡ଼ିଶାରୁ ଭାରତୀୟ ମହିଳା ହକି ଦଳରେ ପ୍ରତିନିଧିତ୍ୱ କରିଥିବା ଖେଳାଳି **ସୁନିତା ଲାକ୍ରା, ଲିଲିମା ମିଞ୍ଜ, ଦୀପଗ୍ରେସ୍ ଏକ୍କା, ନମିତା ଟପ୍ପୋ** ରୌପ୍ୟ ପଦକ ବିଜେତା ହୋଇଥିଲେ ଏବଂ

ଭାରତୀୟ ପୁରୁଷ ହକି ଦଳର ଦୁଇ ଓଡିଆ ସଦସ୍ୟ **ବୀରେନ୍ଦ୍ର ଲାକ୍ରା** ଓ **ଅମିତ୍ ରୋହିଦାସ** ବ୍ରୋଞ୍ଜ ପଦକ ପାଇବାର ଗୌରବ ଲାଭ କରିଥିଲେ। ନିକଟରେ ଆମ ମୁଖ୍ୟମନ୍ତ୍ରୀ ହକି ଖେଳ ସହିତ ଅନ୍ୟାନ୍ୟ ଅନ୍ତର୍ଜାତୀୟ କ୍ରୀଡାରେ ଅଂଶ ଗ୍ରହଣ କରୁଥିବା ଖେଳାଳିମାନଙ୍କୁ ପ୍ରଦାନ କରାଯାଉଥିବା ପ୍ରୋତ୍ସାହନ ରାଶି ବୃଦ୍ଧି କରିଛନ୍ତି। ରୌପ୍ୟ ପଦକ ଓ ବ୍ରୋଞ୍ଜ ପଦକ ବିଜେତାମାନଙ୍କୁ ଯଥାକ୍ରମେ ୧ କୋଟି ଓ ୬୦ ଲକ୍ଷ ଟଙ୍କା ଲେଖାଏଁ ପ୍ରୋତ୍ସାହନ ପ୍ରଦାନ କରାଯାଇଛି। ଆହୁରି ମଧ୍ୟ ୨୦୧୮ ଜାତୀୟ କ୍ରୀଡା ଦିବସ ପାଳନ ଅବସରରେ ରାଜ୍ୟ ସରକାର ମହିଳା ବିଭାଗରେ ସୁନିତା ଲାକ୍ରା ଓ ପୁରୁଷ ବିଭାଗରେ **ଅମିତ ରୋହିଦାସ**ଙ୍କ ଭଳି ଖେଳାଳି ପ୍ରତ୍ୟେକଙ୍କୁ ୨ ଲକ୍ଷ ଟଙ୍କା ଲେଖାଏଁ **ବିଜୁ ପଟ୍ଟନାୟକ କ୍ରୀଡା ପୁରସ୍କାର** ପ୍ରଦାନ କରିଥିଲେ।

ଓଡ଼ିଶା ସରକାର କେବଳ ଓଡ଼ିଶାର ହକି ଖେଳାଳିମାନଙ୍କୁ ଉତ୍ସାହିତ କରୁନାହାନ୍ତି, ବରଂ ସାରା ଦେଶର ପ୍ରଥମ ରାଜ୍ୟ ଭାବରେ ପ୍ରଥମ ଥର ଉଭୟ ଭାରତୀୟ ପୁରୁଷ ଓ ମହିଳା ହକି ଦଳର ୫ ବର୍ଷ ପାଇଁ ପ୍ରାୟୋଜକ ହୋଇ ହକି ଖେଳକୁ ଏକ ଈର୍ଷଣୀୟ ସ୍ତରକୁ ନେଇଯାଇଛନ୍ତି। ହକି ଖେଳ ଲୋକପ୍ରିୟତା ହାସଲ କରିଥିବା ରାଉରକେଲା ଓ ସୁନ୍ଦରଗଡ ଆଦି ସମସ୍ତ ହକି ଷ୍ଟାଡିୟମରେ ଖେଳାଳିମାନେ ଏଣିକି ଆଷ୍ଟ୍ରୋ ଟର୍ଫ୍‌ରେ ନିୟମିତ ହକି ଅଭ୍ୟାସ କରିବା ନିମନ୍ତେ ଏ ଦିଗରେ ସବୁ ପ୍ରକାର ସହାୟତା ଯୋଗାଇଦେବାକୁ ମୁଖ୍ୟମନ୍ତ୍ରୀ ଘୋଷଣା କରିଛନ୍ତି।

ଓଡ଼ିଶା ହକି ବିଶ୍ୱ କପ୍‌ରେ ଭାରତ କ୍ୱାର୍ଟର ଫାଇନାଲ ପର୍ଯ୍ୟାୟରୁ ହାରିଲା ସତ, କିନ୍ତୁ ହକି ବିଶ୍ୱକପ୍‌ର ସଫଳ ଆୟୋଜନ ଓଡ଼ିଶା ତଥା ବିଶ୍ୱବାସୀଙ୍କ ମନ ଜିଣିନେଲା। ହକିର ଏକ୍ତିଆରଶାଳ ଓଡ଼ିଶାରେ ଦର୍ଶକମାନେ ଫାଇନାଲ ମ୍ୟାଚ୍‌ରେ କିଏ ବେଲ୍‌ଜିୟମ୍‌କୁ ସମର୍ଥନ କରୁଥିଲେ ତ, ଆଉ କିଏ ସମର୍ଥନ କରୁଥିଲେ ନେଦରଲ୍ୟାଣ୍ଡ୍‌ସକୁ। ଶେଷରେ ବେଲଜିୟମ୍ ବିଜୟ ହୋଇ ପ୍ରଥମଥର ପାଇଁ ହକି ବିଶ୍ୱକପ୍ ଜିତି ଇତିହାସ ରଚିଲା। ଏହି ବିଜୟ ଯେ ହକି ପ୍ରତି ରହିଥିବା ଆଦର ଏବଂ ଓଡିଆ ଆତିଥେୟତାର ହିଁ ହୋଇଛି, ଏକଥା ସମସ୍ତେ ମୁକ୍ତ କଣ୍ଠରେ ସ୍ୱୀକାର କରିବେ । ହକି ଖେଳକୁ ବିଶ୍ୱ କ୍ରୀଡା ଶୃଙ୍ଖଳାରେ ଆଉ ଏକ ସ୍ତର ଉପରକୁ ନେଇ ଏହାକୁ ସମଗ୍ର ବିଶ୍ୱରେ ଆହୁରି ଲୋକପ୍ରିୟ କରାଇଥିବା ଆମ ପ୍ରିୟ ମୁଖ୍ୟମନ୍ତ୍ରୀଙ୍କୁ ଓଡ଼ିଶା ଏବଂ ସମଗ୍ର ବିଶ୍ୱର ଜନତା ଯୁଗ ଯୁଗ ଧରି ମନେ ରଖିଥିବେ।





# ଅହିଂସା




"ଦାରିଦ୍ର୍ୟ ଦୂରୀକରଣ ଯେକୌଣସି ସରକାର ପାଇଁ ସବୁଠାରୁ ବଡ ଆହ୍ୱାନ । ବିନା ଅହିଂସାରେ ଏହା ହାସଲ କରାଯାଇପାରିବ ନାହିଁ । ପ୍ରଗତି ପାଇଁ ଶାନ୍ତି ଅପରିହାର୍ଯ୍ୟ । "

– ନବୀନ ପଟ୍ଟନାୟକ

ଅହିଂସା ହିଁ ଶାନ୍ତି ଓ ପ୍ରଗତିର ମୂଳଦୁଆ । ସତ୍ୟ ଓ ଅହିଂସାର ମାର୍ଗକୁ ଆପଣେଇ ଜାତିର ପିତା ମହାତ୍ମା ଗାନ୍ଧୀ ଭାରତର ସ୍ୱାଧୀନତା ଆନ୍ଦୋଳନକୁ ନେତୃତ୍ୱ ଦେଇଥିଲେ । ଗୌତମ ବୁଦ୍ଧ, ମହାବୀର ଜୈନଙ୍କ ପରି ମହାପୁରୁଷଙ୍କ ଭଳି ବିଶ୍ୱ କଲ୍ୟାଣ ପାଇଁ ହିଂସା ପରିହାର କରି ଶାନ୍ତିକୁ ଜୀବନରେ ବ୍ରତ ଭାବେ ଗ୍ରହଣ କରିବାକୁ ମହାତ୍ମା ସବୁବେଳେ କହୁଥିଲେ । ଦକ୍ଷିଣ ଆଫ୍ରିକାର ରାଷ୍ଟ୍ରପତି ନେଲ୍‌ସନ୍ ମାଣ୍ଡେଲା ଓ ଯୁକ୍ତରାଷ୍ଟ୍ର ଆମେରିକାର ରାଷ୍ଟ୍ରପତି ବାରାକ୍ ଓବାମା ପ୍ରମୁଖ ମଧ୍ୟ ଗାନ୍ଧିଜୀଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ଅହିଂସାକୁ ସେମାନଙ୍କ ଜୀବନରେ ଆଦର୍ଶ ଭାବରେ ଗ୍ରହଣ କରିଥିଲେ ।

ଆଜିର ଦିନରେ ଗାନ୍ଧିଜୀଙ୍କର ସତ୍ୟ ଓ ଅହିଂସାର ପ୍ରାସଙ୍ଗିକତା ସବୁଠୁ ବେଶୀ । ଅହିଂସା ମାର୍ଗରେ ଅନ୍ୟାୟ ଓ ଦାରିଦ୍ର୍ୟ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବାର ସାମର୍ଥ୍ୟ ହିଁ ବାସ୍ତବ ସଂଗ୍ରାମ ।

ଗାନ୍ଧିଜୀଙ୍କ ଅହିଂସା ମାର୍ଗରେ ଅସହଯୋଗ ଆନ୍ଦୋଳନ ଭାରତବର୍ଷର ସ୍ୱାଧୀନତା ପ୍ରାପ୍ତିରେ ପ୍ରମୁଖ ଭୂମିକା ନିର୍ବାହ କରିଥିଲା । ତାଙ୍କ ଜୀବନ ସତ୍ୟ ଏବଂ ଅହିଂସାର ପଦାଙ୍କ ଅନୁସରଣରେ ବ୍ରତୀ ଥିଲା, ଯାହା ପରବର୍ତ୍ତୀ ସମୟରେ ଆଜି ସମଗ୍ର ମାନବ ଜାତିର ଆଦର୍ଶରେ ପରିଣତ ହୋଇଛି ।

ସାରା ବିଶ୍ୱ ଏ ବର୍ଷ ମହାତ୍ମା ଗାନ୍ଧୀଙ୍କର ୧୫୦ତମ ଜୟନ୍ତୀ ପାଳନ କରୁଛି । ଜାତୀୟସ୍ତରରେ ଏହାକୁ ପାଳନ କରାଯିବା ପାଇଁ ନୂଆଦିଲ୍ଲୀର ରାଷ୍ଟ୍ରପତି ଭବନଠାରେ ଅନୁଷ୍ଠିତ ପ୍ରସ୍ତୁତି ବୈଠକରେ ଯୋଗଦେଇ ଭାରତୀୟ ସମ୍ବିଧାନର ମୁଖବନ୍ଧରେ **'ଅହିଂସା'** ଶବ୍ଦକୁ ସ୍ଥାନିତ କରିବାକୁ ପ୍ରସ୍ତାବ ଦେଇ ଆମ ମୁଖ୍ୟମନ୍ତ୍ରୀ ସମସ୍ତଙ୍କୁ ଆଶ୍ଚର୍ଯ୍ୟଚକିତ କରିଦେଇଥିଲେ । ଏହି ପ୍ରସ୍ତାବ ପଛରେ ଆମ ମୁଖ୍ୟମନ୍ତ୍ରୀଙ୍କର ଯେଉଁ ବଳିଷ୍ଠ ଯୁକ୍ତି ରହିଛି, ତାହା ଅକାଟ୍ୟ ଏବଂ ବେଶ୍ ଗୁରୁତ୍ୱପୂର୍ଣ୍ଣ । ମହାତ୍ମା ଗାନ୍ଧୀଙ୍କ ଅହିଂସା ତତ୍ତ୍ୱ ର ସବୁଠୁ ଗୁରୁତ୍ୱପୂର୍ଣ୍ଣ ଦିଗଟି ହେଉଛି ଯେ ଦାରିଦ୍ର୍ୟ ଓ ସାମାଜିକ ଅବିଚାର ସବୁଠାରୁ ବଡ ହିଂସା । ଗାନ୍ଧିଜୀଙ୍କ ମତରେ, ଯେ ପର୍ଯ୍ୟନ୍ତ ଦାରିଦ୍ର୍ୟ ରହିଥିବ, ସ୍ୱାଧୀନତାର ମୂଲ୍ୟ ଅର୍ଥହୀନ । ଜାତି, ଧର୍ମ, ବର୍ଣ୍ଣ ଭିତ୍ତିରେ ସମାଜକୁ ବିଭକ୍ତ କରୁଥିବା ଶକ୍ତିର ପରାଜୟରେ ହିଁ ପ୍ରଗତି ହାସଲ କରାଯାଇପାରିବ । ଗାନ୍ଧିଜୀଙ୍କର ୧୫୦ତମ ଜନ୍ମବାର୍ଷିକୀ ପାଳନ ଅବସରରେ **'ଅହିଂସା'** ଶବ୍ଦ ଭାରତୀୟ ସମ୍ବିଧାନର ମୁଖବନ୍ଧରେ ସ୍ଥାନିତ ହେଲେ ତାହା ଆମର ଗାନ୍ଧିଜୀଙ୍କ ପ୍ରତି ଶ୍ରେଷ୍ଠ ଶ୍ରଦ୍ଧାଞ୍ଜଳି ହେବ ବୋଲି ମୋର ଦୃଢ ବିଶ୍ୱାସ । ଏହା ଭାରତ ତଥା ବିଶ୍ୱର ଉତ୍ତରପିଢିକୁ ଗାନ୍ଧିଜୀଙ୍କର ଏହି ଉକ୍ତିର ଗୂଢ ସତ୍ୟତା ସ୍ମରଣ କରାଇ ଦେଉଥିବ ।

ଏହି ପରିପ୍ରେକ୍ଷୀରେ ଗାନ୍ଧିଜୀଙ୍କ ଜନ୍ମ ଶତବାର୍ଷିକୀକୁ ୨୦୧୮ ଅକ୍ଟୋବର ୨ରୁ ୨୦୨୦ ଅକ୍ଟୋବର ୨ ତାରିଖ ପର୍ଯ୍ୟନ୍ତ ୨ ବର୍ଷ ଧରି ଅର୍ଥପୂର୍ଣ୍ଣ ଭାବରେ ପାଳନ କରିବାକୁ ରାଜ୍ୟ ସରକାର ନିଷ୍ପତ୍ତି ଗ୍ରହଣ କରିଛନ୍ତି ।

# ସମୟର ଝଲକରେ ଆମ ମୁଖ୍ୟମନ୍ତ୍ରୀ

**ଆଦର୍ଶ ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ :** ରାଜନୀତିରେ ଲୋକମାନେ ହିଁ ସବୁଦିନେ ଆଗରେ। ୨୦ ବର୍ଷ ତଳେ ରାଜନୀତି ଆରମ୍ଭ କରିଥିବା ନବୀନ ପଟ୍ଟନାୟକ ଆଜି ଦୃଢତାର ସହିତ କୁହନ୍ତି ଯେ, ରାଜନୀତି ଜଟିଳ ନୁହେଁ, ବରଂ ଲୋକମାନଙ୍କର ଜୀବନଶୈଳୀରେ ପରିବର୍ତ୍ତନ ଆଣିବାରେ ଏହା ହେଉଛି ଏକ ସଶକ୍ତ ମାଧ୍ୟମ। ୨୦୧୮ ମସିହା ଜାନୁଆରୀ ୨୧ ତାରିଖରେ ପୁନେଠାରେ ଅନୁଷ୍ଠିତ ଏକ କାର୍ଯ୍ୟକ୍ରମରେ **'ଆଦର୍ଶ ମୁଖ୍ୟମନ୍ତ୍ରୀ'** ପୁରସ୍କାର ଗ୍ରହଣ ଅବସରରେ ଆମ ମୁଖ୍ୟମନ୍ତ୍ରୀ ଏକଥା ପ୍ରକାଶ କରିଥିଲେ। ଜାତିର ପିତା ମହାତ୍ମା ଗାନ୍ଧୀ, ମାର୍ଟିନ୍ ଲୁଥର କିଙ୍ଗ, ନିଜ ପିତା ବିଜୁ ପଟ୍ଟନାୟକଙ୍କୁ ସେ ତାଙ୍କର ଆଦର୍ଶ ବୋଲି ମାନନ୍ତି। ଗାନ୍ଧିଜୀଙ୍କର ଲୋକପ୍ରିୟ ଉକ୍ତି, **'ଯେତେବେଳେ ତୁମେ କୌଣସି ଏକ ନିଷ୍ପତ୍ତି ନେବ, ସେତେବେଳେ ଭାବିବ ଯେ, ଏହା ସବୁବେଳେ ଦରିଦ୍ର ଓ ଦୁର୍ବଳ ଶ୍ରେଣୀର ଲୋକଙ୍କ ଉପକାରରେ ଲାଗିବା ପାଇଁ ଉଦ୍ଦିଷ୍ଟ'।** ଏହା ନବୀନ ପଟ୍ଟନାୟକଙ୍କୁ ସହରର ବସ୍ତିବାସିନ୍ଦାଙ୍କ ପାଇଁ ଭୂମି ଅଧିକାର 'ଜାଗା' ଯୋଜନା କାର୍ଯ୍ୟକାରୀ କରିବା ପାଇଁ ପ୍ରେରଣା ଯୋଗାଇଥିଲା ବୋଲି ସେ କୁହନ୍ତି। ସୁଶାସନ ଏବଂ ନିଃସ୍ୱାର୍ଥପର ସେବା ମନୋଭାବ ତାଙ୍କୁ ଏହି ସଫଳତା ଆଣିଦେଇଛି ବୋଲି ସେ ପ୍ରକାଶ କରିଥିଲେ।



**ଶ୍ରେଷ୍ଠ ପ୍ରଶାସକ ନବୀନ ପଟ୍ଟନାୟକ :** ରାଜ୍ୟର ବିକାଶ କ୍ଷେତ୍ରରେ ଉଲ୍ଲେଖନୀୟ ଅବଦାନ, ଲୋକଙ୍କ କଲ୍ୟାଣ ଏବଂ ସାଧାରଣ ଲୋକଙ୍କ ସଶକ୍ତିକରଣ ପାଇଁ ନବୀନ ପଟ୍ଟନାୟକଙ୍କର କାର୍ଯ୍ୟଧାରାକୁ ଉଚ୍ଚ ପ୍ରଶଂସା କରି ଜାତୀୟ ସ୍ତରର ପତ୍ରିକା **'ଆଉଟ୍‌ଲୁକ୍'** ପକ୍ଷରୁ ପୂର୍ବତନ ରାଷ୍ଟ୍ରପତି ଶ୍ରୀଯୁକ୍ତ ପ୍ରଣବ ମୁଖାର୍ଜୀଙ୍କ ଦ୍ୱାରା ୨୦୧୭ ମସିହା ଅଗଷ୍ଟ ୧୯ ତାରିଖରେ ନୂଆଦିଲ୍ଲୀଠାରେ ତାଙ୍କୁ ଦେଶର ଶ୍ରେଷ୍ଠ ପ୍ରଶାସକ ଭାବେ **ଆଉଟ୍‌ଲୁକ୍ ସ୍ପିକ୍‌ଆଉଟ୍ ଆୱାର୍ଡ** ମିଳିଥିଲା। ଦେଶର ଅନ୍ୟ ୬ ଟି ପ୍ରମୁଖ ରାଜ୍ୟର ମୁଖ୍ୟମନ୍ତ୍ରୀଙ୍କୁ ପଛରେ ପକାଇ ନବୀନ ଏହି ବିଭାଗରେ ଶ୍ରେଷ୍ଠ ବିବେଚିତ ହୋଇଥିଲେ। ଓଡ଼ିଶାରେ ୧୯୯୯ ମହବାତ୍ୟାଜନିତ କ୍ଷୟକ୍ଷତି ପରେ ପୁନଃ ନିର୍ମାଣ ଓ ପରବର୍ତ୍ତୀ ଫାଇଲିନ୍ ବାତ୍ୟାକୁ ସଫଳ ଭାବେ ପରିଚାଳନା କରିବାରେ ନବୀନ ପଟ୍ଟନାୟକଙ୍କ ନେତୃତ୍ୱ, ରାଜ୍ୟର ସର୍ବାଙ୍ଗୀନ ବିକାଶ ବିଶେଷ କରି ଦାରିଦ୍ର୍ୟ ହ୍ରାସ ଏବଂ ନିଯୁକ୍ତି ସୁଯୋଗ ସୃଷ୍ଟିରେ ଉଲ୍ଲେଖନୀୟ ପ୍ରୟାସ ଜାରି ରଖିଥିବା ପାଇଁ ତାଙ୍କୁ ଏହି ସଫଳତା ମିଳିଛି । ଏହି ସଫଳତା ରାଜ୍ୟର ୪ କୋଟି ଓଡ଼ିଶାବାସୀଙ୍କର। ଓଡ଼ିଶା ଏବେ ବିକାଶ ଓ ଅର୍ଥନୈତିକ ଅଭିବୃଦ୍ଧିରେ ଏକ ଆଦର୍ଶ ପଥରେ ରହିଛି ବୋଲି ଏହି ପୁରସ୍କାର ଗ୍ରହଣ ଅବସରରେ ମୁଖ୍ୟମନ୍ତ୍ରୀ ପ୍ରକାଶ କରିଥିଲେ।

**ଅହିଂସା ନୀତି ଓ ନବୀନ ପଟ୍ଟନାୟକ :** ଜାତିର ଜନକ ମହାତ୍ମାଗାନ୍ଧୀଙ୍କ ୧୫୦ତମ ଜୟନ୍ତୀ ସମାରୋହ ପାଳନ ନିମନ୍ତେ ଆୟୋଜିତ ବୈଠକରେ ଭାଗ ନେଇ ନବୀନ ପଟ୍ଟନାୟକ ପ୍ରସ୍ତାବ ଦେଇଥିଲେ ଯେ, 'ଅହିଂସା' ଆମ ଦେଶର ସମ୍ବିଧାନର ମୁଖବନ୍ଧରେ ସ୍ଥାନ ପାଉ। ୨୦୧୮ ମସିହାରେ ଓଡ଼ିଶା ବିଧାନସଭାରେ ମଧ୍ୟ ସେଇ ମର୍ମରେ ଏକ ପ୍ରସ୍ତାବ ଗୃହୀତ ହୋଇଛି।

**'ଦି ଟଲ୍‌ମ୍ୟାନ୍' ଓ ନବୀନ ପଟ୍ଟନାୟକ :** ପିତା ବିଜୁ ପଟ୍ଟନାୟକଙ୍କ ଉପରେ ଲିଖିତ ପୁସ୍ତକ 'ଦି ଟଲ୍‌ମ୍ୟାନ୍'ର ଲୋକାର୍ପଣ ଅବସରରେ ନବୀନ ପଟ୍ଟନାୟକ ଅତି ମର୍ମସ୍ପର୍ଶୀ କଥାଟିଏ ବିଜୁବାବୁଙ୍କ ସଂପର୍କରେ କହିଥିଲେ: **ବିଜୁ ବାବୁ ଇଜ୍ ଆନ୍ ଆଇଡିଆ ଇନ୍ କଣ୍ଟିନ୍ୟୁଇଟି : ଏକ ନିରବଚ୍ଛିନ୍ନ ଆଦର୍ଶ ଚିନ୍ତାଧାରାର ଅନ୍ୟନାମ ହିଁ ବିଜୁବାବୁ ।**



**ଜଣେ ଦରଦୀ ମଣିଷ ନବୀନ ପଟ୍ଟନାୟକ:** ଚଳିତ ବର୍ଷ ଓଡ଼ିଶାରେ ସଂଘଟିତ ତିତ୍‌ଲି ବାତ୍ୟା ପରବର୍ତ୍ତୀ ପ୍ରଳୟଙ୍କରୀ ବନ୍ୟାରେ ପାହାଡରୁ ମାଟି ଧସି ମୃତ୍ୟୁବରଣ କରିଥିବା ଲୋକଙ୍କର ପରିବାର ପାଇଁ ଅନୁକଂପା ରାଶି ୪ ଲକ୍ଷରୁ ୧୦ ଲକ୍ଷ ଟଙ୍କାକୁ ବୃଦ୍ଧି କରିଦେଲେ ନବୀନ ପଟ୍ଟନାୟକ । ନିଜେ ମୁଖ୍ୟମନ୍ତ୍ରୀ ପ୍ରଭାବିତ ଗଜପତି ଜିଲ୍ଲାର ଗଙ୍ଗାବାଡ ପଞ୍ଚାୟତ ଗସ୍ତ କରି ସଂପୃକ୍ତ ଗାଁରେ ଭାଙ୍ଗି ଯାଇଥିବା ଘରକୁ ବିଜୁ ପକ୍କାଘର ଯୋଜନାରେ ସାମିଲ କରିବା ସହିତ ବାପା ମା' ଛେଉଣ୍ଡ ପିଲାମାନଙ୍କର ଶିକ୍ଷା ଓ ଥଇଥାନ ବ୍ୟବସ୍ଥା ଖୋଦ୍ ସରକାର ବହନ କରିବେ ବୋଲି ନିଷ୍ପତ୍ତି ଗ୍ରହଣ କରିଛନ୍ତି । ସେହିପରି ରାଜ୍ୟର ଅନ୍ୟାନ୍ୟ ଅଂଚଳରେ ବିଭିନ୍ନ ଭାବରେ କ୍ଷତିଗ୍ରସ୍ତ ଲୋକଙ୍କୁ ଆବଶ୍ୟକୀୟ ସହାୟତା ଯୋଗାଇ ଦେବାରେ ମଧ୍ୟ ନବୀନ ପଟ୍ଟନାୟକ ସବୁବେଳେ ଆଗରେ । ଦୁର୍ଘଟଣାରେ ପ୍ରାଣ ହରାଉଥିବା ଲୋକଙ୍କ ପରିବାରକୁ ସାହାଯ୍ୟ କରିବା ପାଇଁ ସବୁଦିନେ ଆଗଭରନବୀନ ପଟ୍ଟନାୟକ । ଆର୍ଥିକ ସହାୟତା ହେଉ କି ମେଡିକାଲରେ ଚିକିତ୍ସା,ସବୁବେଳେ ସିଏ ହିଁ ଆଗ ସହାୟତାର ହାତ ବଢେଇଥା'ନ୍ତି ।

**ଲୋକଙ୍କ ଦୁଃଖରେ ଦୁଃଖୀ ନବୀନ ପଟ୍ଟନାୟକ :** ୨୦୧୮ରେ ମୁଖ୍ୟମନ୍ତ୍ରୀ ତିତ୍‌ଲି ବାତ୍ୟା ଓ ତତ୍ ପରବର୍ତ୍ତୀ ବନ୍ୟା କ୍ଷତିଗ୍ରସ୍ତଙ୍କ ଦୁଃଖରେ ଦୁଃଖୀ ହୋଇ ଅକ୍ଟୋବର ୧୬ ତାରିଖରେ ନିଜର ଜନ୍ମ ଦିନ ପାଳିଲେ ନାହିଁ । ସେ କହିଥିଲେ, ଓଡ଼ିଶାରେ ତିତ୍‌ଲି ବ୍ୟାପକ ପ୍ରଭାବ ପକାଇଛି । ଲୋକେ ବିଭିନ୍ନ ଦୁଃସ୍ଥିତିର ସାମ୍ନା କରୁଥିବା ବେଳେ ଏବେ ବି ବହୁଲୋକ ଜଳବନ୍ଦୀ ହୋଇ ରହିଛନ୍ତି । ଏଭଳି ସ୍ଥିତିରେ ସେ ଜନ୍ମଦିନ କ'ଣ ପାଳନ କରିବେ ? କେବଳ ଏ ବର୍ଷ ନୁହେଁ, ୨୦୧୩ର ଫାଇଲିନ୍ ଓ ୨୦୧୪ର ହୁଦ୍‌ହୁଦ୍ ବାତ୍ୟା ଭଳି ବିପତ୍ତି ସମୟରେ ମଧ୍ୟ ମୁଖ୍ୟମନ୍ତ୍ରୀ ତାଙ୍କର ଜନ୍ମଦିନ ପାଳି ନଥିଲେ । ଲୋକଙ୍କ ପାଇଁ କାମ କରୁଥିବା ମଣିଷ ସିଏ, ସବୁଦିନେ ଲୋକଙ୍କ ସୁଖଦୁଃଖରେ ସହଭାଗୀ ।

**ହକି ବିଶ୍ୱ କପ୍ ଓ ନବୀନ ପଟ୍ଟନାୟକ :** କଳିଙ୍ଗ ଷ୍ଟାଡିୟମରେ ପୁରୁଷ ହକି ବିଶ୍ୱକପ୍‌ର ସଫଳ ଆୟୋଜନ ପଛରେ ନବୀନ ପଟ୍ଟନାୟକଙ୍କ ଦୃଢ ଇଚ୍ଛା ଶକ୍ତି ହିଁ ଥିଲା ବୋଲି ଆଜି ସବୁଠି ଆଲୋଚନା । କ୍ରୀଡା ବିଭାଗ ଓ ହକି ବିଶ୍ୱକପ୍‌ର ଆୟୋଜନରେ ସଂପୃକ୍ତ ସବୁ ବିଭାଗକୁ ପ୍ରତ୍ୟକ୍ଷ ସମର୍ଥନ, ପ୍ରେରଣା ସହିତ ନିୟମିତ ଅଗ୍ରଗତିର ସମୀକ୍ଷା ହିଁ ହକି ବିଶ୍ୱକପ୍‌କୁ ସଫଳ ଭାବରେ ଅନୁଷ୍ଠିତ କରାଇପାରିଥିଲା । ନିଜେ ହକି ଷ୍ଟାଡିୟମ୍‌ରେ ଉପସ୍ଥିତ ରହି ବିଭିନ୍ନ ସମୟରେ ପ୍ରସ୍ତୁତି ତଦାରଖ କରିବା ସହିତ ବିଶ୍ୱକପ୍‌ର ଉଦ୍ଘାଟନୀ, ସେମିଫାଇନାଲ ଓ ଫାଇନାଲ ଆଦି ମ୍ୟାଚ୍ ଦେଖି ଖେଳାଳି ଏବଂ ଦର୍ଶକମାନଙ୍କୁ ଉତ୍ସାହିତ କରିଥିଲେ । ଆତ୍ମ ସମର୍ପଣ କରିଥିବା ମାଓବାଦୀ ଏବଂ ତିତ୍‌ଲି ହିରୋମାନଙ୍କ ସହିତ ଏକାଠି ବସି ହକି ବିଶ୍ୱକପ୍ ମ୍ୟାଚ୍ ଦେଖିବା ଘଟଣାରେ ନବୀନ ପଟ୍ଟନାୟକଙ୍କ ବ୍ୟକ୍ତିତ୍ୱର ମହନୀୟତା ଏବଂ ଭିନ୍ନ ଦୃଷ୍ଟିଭଂଗୀ ସେତେବେଳେ ସମଗ୍ର ଦେଶବାସୀଙ୍କ ମଧ୍ୟରେ ଆଲୋଡନ ସୃଷ୍ଟି କରିଥିଲା । ନବୀନ ପଟ୍ଟନାୟକ ସବୁଦିନେ ଅନନ୍ୟ । ସେ ଯାହା ଚିନ୍ତା କରନ୍ତି, ତାହା ଅନ୍ୟ କେହି କେବେ ଚିନ୍ତା କରିନଥା'ନ୍ତି । ସେ ଯାହା କରନ୍ତି, ତାହା ଅନ୍ୟମାନଙ୍କ ପାଇଁ ସବୁଦିନେ ଅନୁକରଣୀୟ ହୋଇ ରହିଯାଏ ।

# ଅନ୍ୟ ଦୃଷ୍ଟିରେ ଓଡ଼ିଶା

"ନୂତନ ଚିନ୍ତାଧାରା ଓ ତତ୍ତ୍ୱକୁ ବାସ୍ତବ ରୂପ ଦେବାରେ ଓଡ଼ିଶା ଏକ ଆଗୁଆ ରାଜ୍ୟ ।"

**- ଡ. ନଚିକେତା ମୋର୍**
ବିଲ୍ ଓ ମିଲିଣ୍ଡା ଫାଉଣ୍ଡେସନର ବରିଷ୍ଠ ଉପଦେଷ୍ଟା



"ଉତ୍ତମ ଶାସନ ନୀତି ଓ ବ୍ୟବସ୍ଥା ପାଇଁ ନୂତନ ଜ୍ଞାନ ଆହରଣ ଦିଗରେ ଓଡ଼ିଶା ଏକ ଉଦାହରଣ ସୃଷ୍ଟି କରିଛି ।"

**- ପ୍ରଫେସର ମହମ୍ମଦ ୟୁନୁସ୍**
ମିଳିତ ଜାତିସଂଘ ଫାଉଣ୍ଡେସନର ସଦସ୍ୟ
ତଥା ନୋବେଲ୍ ପୁରସ୍କାର ବିଜେତା

"ଉଦ୍ୟୋଗ କ୍ଷେତ୍ରରେ ସହଜରେ ପ୍ରବେଶ ଓ ପ୍ରସ୍ଥାନ, ଉଦ୍ୟୋଗପତି ଓ ଶ୍ରମିକମାନଙ୍କ ପାଇଁ ମୌଳିକ ନିରାପତ୍ତା ବ୍ୟବସ୍ଥା, ସଂସ୍କାରର ସଦୁପଯୋଗ କରିବା ପାଇଁ ଜନସାଧାରଣଙ୍କ ଦକ୍ଷତା ଅଭିବୃଦ୍ଧି ଏବଂ ଦେଶ ଓ ରାଜ୍ୟରେ କୁଶଳୀ ମାନବ ସମ୍ବଳ ଅଭିବୃଦ୍ଧିର ଆବଶ୍ୟକତା ରହିଛି ।"

**- ଡଃ. ରଘୁରାମ ଜି. ରାଜନ**
ପୂର୍ବତନ ଗଭର୍ଣ୍ଣର, ଭାରତୀୟ ରିଜର୍ଭ ବ୍ୟାଙ୍କ

"ଓଡ଼ିଶା ଏକ ଶାନ୍ତି ପ୍ରିୟ ରାଜ୍ୟ । ଏଠାରେ ପୁଞ୍ଜି ନିବେଶ ପାଇଁ ପର୍ଯ୍ୟାପ୍ତ ସୁଯୋଗ ରହିଛି ।"

**- ସଜ୍ଜନ ଜିନ୍ଦଲ**
ଅଧକ୍ଷ, ଜେ.ଏସ୍. ଡବ୍ଲ୍ୟୁ

"ବିଗତ ୧୦ ବର୍ଷ ମଧ୍ୟରେ ଓଡ଼ିଶାରେ ପରିଦୃଶ୍ୟ ପରିବର୍ତ୍ତନ ଅଣା ଯାଇପାରିଛି । ବିଦ୍ୟୁତ୍ ଶକ୍ତି ବିକାଶ ପ୍ରକ୍ରିୟା ପାଇଁ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ଯୁକ୍ତରାଷ୍ଟ୍ର ଆମେରିକା ଭଳି ରାଷ୍ଟ୍ରରେ ବିଦ୍ୟୁତ ଶକ୍ତି ବାର୍ଷିକ ମୁଣ୍ଡପିଛା ଖର୍ଚ୍ଚ ହାରାହାରି ୧୩ହଜାର କିଲୋୱାଟ ପ୍ରତି ଘଣ୍ଟା, ଇଉରୋପ ଏବଂ ଜର୍ମାନୀ ଭଳି ଦେଶରେ ଏହା ୫ ହଜାରରୁ ୭ ହଜାର କିଲୋୱାଟ୍ ପ୍ରତି ଘଣ୍ଟା ମଧ୍ୟରେ ରହିଥିବା ବେଳେ ଓଡ଼ିଶାରେ ଏହା ୧୨୦୦ କିଲୋୱାଟ୍ ପ୍ରତି ଘଣ୍ଟା ରହିଛି, ଯାହା ଶକ୍ତି ସଂଚୟ କ୍ଷେତ୍ରରେ ରାଜ୍ୟ ପାଇଁ ଏହା ଶୁଭଙ୍କର ବାର୍ତ୍ତା ଦେଉଛି । ସେହିପରି ସାଂସ୍କୃତିକ ସାଧନ ଏବଂ ଏହାର ଅବାଧ ପ୍ରବାହ ସର୍ବଦା ଏକ ଆହ୍ୱାନ ହୋଇଥିବା ବେଳେ ଏ କ୍ଷେତ୍ରରେ ଏକ ଆଦର୍ଶ ରାଜ୍ୟ ହେବା ପାଇଁ ଓଡ଼ିଶାରେ ପର୍ଯ୍ୟାପ୍ତ ସାଂସ୍କୃତିକ ସଂପଦ ଓ ଦକ୍ଷତା ରହିଛି ।"

**- ପ୍ରଫେସର ମାଇକେଲ ଗ୍ରିନଷ୍ଟୋନ**
ଚିକାଗୋ ବିଶ୍ୱବିଦ୍ୟାଳୟ

"ସରକାର ଓ ବେସରକାରୀ ଜନହିତକର ସଂସ୍ଥାର ସମନ୍ୱୟ ହିଁ ନିରନ୍ତର ବିକାଶ ଆଣିବ ।"

**- ଅଜିମ୍ ପ୍ରେମ୍‌ଜୀ**
ପଦ୍ମ ବିଭୂଷଣ ତଥା ଖ୍ୟାତିସମ୍ପନ୍ନ ସମାଜସେବୀ

"ଓଡ଼ିଶାରେ ପର୍ଯ୍ୟଟନର ବିକାଶ ଉତ୍ସାହଜନକ ଏବଂ ଏହାର ଭବିଷ୍ୟତ ବିଷୟରେ ମୁଁ ଆଶାବାଦୀ ।"

**- ପ୍ରଫେସର ହାରୋଲ୍ଡ ଗୁଡ୍‌ୱିନ୍**
ଅନ୍ତର୍ଜାତୀୟ ଖ୍ୟାତିସଂପନ୍ନ ପର୍ଯ୍ୟଟନ ବିଶାରଦ

"କଳିଙ୍ଗ ଷ୍ଟାଡିୟମ ବିଶ୍ୱର ୩ଟି ସବୁଠାରୁ ଆକର୍ଷଣୀୟ ଷ୍ଟାଡିୟମ ମଧ୍ୟରେ ଅନ୍ୟତମ । ଭୁବନେଶ୍ୱର ଭାରତର କ୍ରୀଡା ରାଜଧାନୀ ହୋଇଥିବା ବେଳେ ଓଡ଼ିଶାବାସୀଙ୍କର ହକି ଖେଳକୁ ଭଲ ପାଇବା ଓ ଆଗ୍ରହ ଅତୁଳନୀୟ ।"

**- ନରିନ୍ଦର ଧ୍ରୁବ ବାତ୍ରା**
ସଭାପତି, ଅନ୍ତର୍ଜାତୀୟ ହକି ମହାସଂଘ

"ଓଡ଼ିଶା ସରକାର କ୍ରୀଡାର ଉପଯୋଗିତା ଉପଲବ୍ଧି କରି ଭୁବନେଶ୍ୱରକୁ ଯଥାର୍ଥରେ ଏକ କ୍ରୀଡା ରାଜଧାନୀ ଭାବେ ବିକଶିତ କରିପାରିଛନ୍ତି ।"

**– ପି. ଗୋପୀଚାନ୍ଦ**
ପଦ୍ମଭୂଷଣ ତଥା ବିଶିଷ୍ଟ କ୍ରୀଡାବିତ୍

"ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ନବୀନ ପଟ୍ଟନାୟକଙ୍କ ବଳିଷ୍ଠ ନେତୃତ୍ୱ ଯୋଗୁଁ ରାଜ୍ୟର ବିକାଶ ସୂଚକାଙ୍କ ୮ ପ୍ରତିଶତ ହୋଇପାରିଛି, ଯାହାକି ସର୍ବଭାରତୀୟ ସ୍ତରଠାରୁ ଅଧିକ।"

**– ମୁକେଶ ଅମ୍ବାନୀ**
ରିଲାଏନ୍ସ୍ ଇଣ୍ଡଷ୍ଟ୍ରିର ଅଧ୍ୟକ୍ଷ ତଥା ପରିଚାଳନା ନିର୍ଦ୍ଦେଶକ

"ବିଗତ ବର୍ଷମାନଙ୍କରେ ଲଗାତାର ବିକାଶମୂଳକ ଯୋଜନା କାର୍ଯ୍ୟକାରୀ କରାଯିବା ଫଳରେ ଓଡ଼ିଶା ଅନ୍ତର୍ଜାତୀୟ ସ୍ତରରେ ୧୦ଟି ଅଧିକ ଉତ୍ପାଦନ କରୁଥିବା ରାଜ୍ୟ ମଧ୍ୟରେ ସ୍ଥାନ ପାଇଛି । ଓଡ଼ିଶାରେ ଉତ୍ପାଦକ ଗୋଷ୍ଠୀ (ପ୍ରଡ୍ୟୁସର ଗ୍ରୁପ୍) ଏବଂ ସ୍ୱୟଂ ସହାୟିକା ଗୋଷ୍ଠୀ ରୂପେ କେତେକ ଅଣୁ ଉଦ୍ୟୋଗ ଆରମ୍ଭ ହୋଇଛି । ଏସବୁକୁ ଅଧିକ ସଂଗଠିତ ଭାବେ କ୍ଷୁଦ୍ର ଓ ମଧ୍ୟମ ଶିଳ୍ପ ସହ ସଂଯୋଜିତ କଲେ ଅଧିକରୁ ଅଧିକ ନିଯୁକ୍ତି ସୃଷ୍ଟି ହେବ ।"

**– ପରମେଶ ସାହା**
ବିଶ୍ୱସ୍ତରୀୟ ମୁଖ୍ୟ-ବିଶ୍ୱ ବ୍ୟାଙ୍କର
ଗ୍ରାମ୍ୟ ଜୀବିକା ଓ କୃଷିଭିତ୍ତିକ ରୋଜଗାର

"ଓଡ଼ିଶାର ଲୋକମାନେ ଜ୍ଞାନୀ ଓ ସେମାନେ ନିଯୁକ୍ତି ନ ଖୋଜି ଅନ୍ୟମାନଙ୍କ ପାଇଁ ନିଯୁକ୍ତି ସୃଷ୍ଟି କରିବାରେ ଦକ୍ଷତା ରଖିଛନ୍ତି । ତାଙ୍କ ଆଗରେ ବହୁ ସମସ୍ୟା ସୃଷ୍ଟି ହୋଇଥିଲେ ମଧ୍ୟ ଓଡ଼ିଶାର ଲୋକ, ସରକାର ଏବଂ ମୁଖ୍ୟମନ୍ତ୍ରୀଙ୍କଠାରୁ ବହୁ ସମର୍ଥନ ମିଳିଛି । ୨୦୩୦ ସୁଦ୍ଧା ୨୦ ନିୟୁତ ଟନ୍‌ର ଇସ୍ପାତ କାରଖାନା ପ୍ରତିଷ୍ଠା ପାଇଁ ଲକ୍ଷ୍ୟଧାର୍ଯ୍ୟ କରାଯାଇଛି । ସେଥିରେ ୪୫ ହଜାର କୋଟିରୁ ୧ ଲକ୍ଷ କୋଟି ଟଙ୍କା ପର୍ଯ୍ୟନ୍ତ ପୁଞ୍ଜି ନିବେଶ ହେବା ସହିତ ୫୦ ହଜାରରୁ ୧ ଲକ୍ଷ ନିଯୁକ୍ତି ସୁଯୋଗ ସୃଷ୍ଟି କରିବାକୁ ଲକ୍ଷ୍ୟ ଧାର୍ଯ୍ୟ କରାଯାଇଛି ।"

**– ନବୀନ ଜିନ୍ଦଲ**
ଜିନ୍ଦଲ ଷ୍ଟିଲ ଓ ପାୱାର ଲିମିଟେଡ୍‌ର ଚେୟାରମ୍ୟାନ



"ଓଡ଼ିଶାର ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକଙ୍କ ଉପରେ ଲୋକଙ୍କ ଆସ୍ଥା ଅଛି ଓ ତାଙ୍କ କାର୍ଯ୍ୟଶୈଳୀ ବେଶ୍ ଭଲ।"

**– ଦଲାଇଲାମା,**
**ଧର୍ମଗୁରୁ ଓ ନୋବେଲ ଶାନ୍ତି ପୁରସ୍କାର ବିଜେତା**

"ରାଜ୍ୟରେ ସ୍ଥିର ସରକାର ରହିଛି । ରାଜ୍ୟର ଆର୍ଥିକ ବିକାଶ ମଧ୍ୟ ଆଗେଇ ଚାଲିଛି । ଆସନ୍ତା ୨୦୩୦ ସୁଦ୍ଧା ୨ ଲକ୍ଷ ୫୦ ହଜାର ଉଦ୍ୟୋଗୀଙ୍କୁ ବ୍ୟାଙ୍କ ଋଣ ଯୋଗାଇ ଦିଆଯିବାକୁ ଲକ୍ଷ୍ୟଧାର୍ଯ୍ୟ କରାଯାଇଛି । ରାଜ୍ୟ ସରକାରଙ୍କ ଯୋଜନାକୁ ସାକାର କରିବା ପାଇଁ ଆଗ୍ରହ ଦେଖାଉଥିବା ପୁଞ୍ଜି ନିବେଶକାରୀଙ୍କୁ ସହଯୋଗ କରିବାକୁ ଆମେ ପ୍ରସ୍ତୁତ।"

**– ରଜନୀଶ କୁମାର**
ଷ୍ଟେଟ୍ ବ୍ୟାଙ୍କ ଅଫ୍ ଇଣ୍ଡିଆର ଅଧ୍ୟକ୍ଷ

"ଓଡ଼ିଶାର ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ ଦେଶର ଅନ୍ୟ ମୁଖ୍ୟମନ୍ତ୍ରୀମାନଙ୍କ ପାଇଁ ରୋଲ୍ ମଡେଲ । ସେ ଜଣେ ନିଃସ୍ୱାର୍ଥପର ନେତା । ତାଙ୍କର ମହିଳା ସଂରକ୍ଷଣ ନୀତି ଓ କୃଷକ କଲ୍ୟାଣ କାର୍ଯ୍ୟକ୍ରମ ପ୍ରଶଂସନୀୟ ।"

**– କେ. ଚନ୍ଦ୍ରଶେଖର ରାଓ**
ମୁଖ୍ୟମନ୍ତ୍ରୀ, ତେଲେଙ୍ଗାନା

# ଗଣମାଧ୍ୟମରେ ଓଡ଼ିଶା

ଆମ ରାଜ୍ୟର ମୁଖ୍ୟମନ୍ତ୍ରୀ ଭାବେ ୨୦୦୦ ମସିହାରୁ ଆଜି ଯାଏଁ ଏକ ନିରବଚ୍ଛିନ୍ନ ଅବଧି । ସ୍ୱଳ୍ପଭାଷୀ ଆମ ମୁଖ୍ୟମନ୍ତ୍ରୀ ସବୁବେଳେ ରାଜ୍ୟବାସୀଙ୍କ ପାଇଁ କାମ କରିବାରେ ହିଁ ବିଶ୍ୱାସ ରଖିଥା'ନ୍ତି । ସେଥିପାଇଁ ଛାପା ଓ ବୈଦ୍ୟୁତିକ ଗଣମାଧ୍ୟମରେ ତାଙ୍କ ଶାସନର କାର୍ଯ୍ୟଧାରା ସବୁବେଳେ ଶିରୋନାମା ମଣ୍ଡନ କରିଥାଏ । ଏକ ଜନମଙ୍ଗଳକାରୀ ରାଷ୍ଟ୍ରରେ ଗଣତାନ୍ତ୍ରିକ ମୂଲ୍ୟବୋଧ ଉପରେ ବିଶ୍ୱାସ ରଖୁଥିବା ନବୀନ ପଟ୍ଟନାୟକଙ୍କ ସରକାରର ସ୍ୱଚ୍ଛ, ଲୋକାଭିମୁଖୀ ତଥା ଉତ୍ତରଦାୟୀ ଶାସନ ସମ୍ପର୍କରେ ବିଭିନ୍ନ ପତ୍ରପତ୍ରିକା, ସମ୍ବାଦପତ୍ର ତଥା ଇଲେକ୍ଟ୍ରୋନିକ୍ ଗଣମାଧ୍ୟମରେ ପ୍ରକାଶିତ ପ୍ରଣିଧାନଯୋଗ୍ୟ ମତ ଏବଂ ମନ୍ତବ୍ୟର ଉପସ୍ଥାପନା କରୁଛୁ ଏଇ ବିଶେଷ ପୃଷ୍ଠାରେ ।




୧୯୯୯ ମହାବାତ୍ୟା ପରବର୍ତ୍ତୀ ଓଡ଼ିଶାର ପୁନଃନିର୍ମାଣ ପରଠାରୁ ଓଡ଼ିଶାରେ ପୁଞ୍ଜିନିବେଶ ପାଇଁ ସୁଯୋଗ ସୃଷ୍ଟି ପର୍ଯ୍ୟନ୍ତ ସବୁରି ମୂଳରେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ ରହିଛନ୍ତି ବୋଲି ୨୮ ଡିସେମ୍ବର ୨୦୧୩ ମସିହାରେ **ଇଣ୍ଡିଆ ଟୁଡେ** ପତ୍ରିକାରେ ପ୍ରକାଶ ପାଇଥିଲା । ଏହି ପୁଞ୍ଜି ନିବେଶର ଧାରା ୨୦୧୬ ମସିହାରୁ ଓଡ଼ିଶାର ଭୁବନେଶ୍ୱରରୁ ଆରମ୍ଭ ହୋଇଥିବା ମେକ୍ ଇନ୍ ଓଡ଼ିଶା କନ୍‌କ୍ଲେଭ୍‌ରୁ ଅଧିକ ଶାଣିତ ହୋଇଥିଲା । ମୁମ୍ବାଇରେ ଏହି ପ୍ରକାର କନ୍‌କ୍ଲେଭ୍ ଓ ରୋଡ୍ ଶୋ' ସମେତ ଦିଲ୍ଲୀ ଓ ଚେନ୍ନାଇ ଭଳି ସହରରେ ରୋଡ୍ ଶୋ'ର ଆୟୋଜନ କରାଯାଇ ଓଡ଼ିଶାରେ ପୁଞ୍ଜି ନିବେଶ ପାଇଁ ନିଜେ ନବୀନ ପଟ୍ଟନାୟକ ନିବେଶକମାନଙ୍କୁ ଆହ୍ୱାନ ଦେଇଥିଲେ ।

୯ ଅଗଷ୍ଟ ୨୦୧୮ରେ **ଦି ହିନ୍ଦୁ** ସମେତ ଅନ୍ୟାନ୍ୟ ସମ୍ବାଦପତ୍ରରେ ଓଡ଼ିଶାରେ ପୁଞ୍ଜି ନିବେଶ ଓ ନବୀନ ବାବୁଙ୍କ ମୁମ୍ବାଇ ସମେତ ପୂର୍ବରୁ ଅନୁଷ୍ଠିତ ଦିଲ୍ଲୀ ଓ ପରେ ପରେ ଚେନ୍ନାଇ ରୋଡ୍ ଶୋ' ସଂପର୍କରେ ପ୍ରକାଶିତ ହୋଇଥିଲା । ୨୦୧୮ ସେପ୍ଟେମ୍ବର ମାସ ୨୬ ତାରିଖରେ ଚେନ୍ନାଇଠାରେ ଓଡ଼ିଶା ଇନ୍‌ଭେଷ୍ଟର୍‌ସ ମିଟ୍‌ର ସଫଳତା ସମ୍ପର୍କରେ ଦୈନିକ ଇଂରାଜୀ ସମ୍ବାଦପତ୍ର **ଦି ଟାଇମ୍‌ସ ଅଫ୍ ଇଣ୍ଡିଆ**ରେ ବିଶଦ ଭାବେ ପ୍ରକାଶ ପାଇଥିଲା । ୨୦୧୮ ନଭେମ୍ବରରେ ଭୁବନେଶ୍ୱରଠାରେ ମେକ୍ ଇନ୍ ଓଡ଼ିଶା କନ୍‌କ୍ଲେଭ୍ ଅନୁଷ୍ଠିତ ହୋଇଥିବା ବେଳେ ଏହା ସମସ୍ତ ସ୍ଥାନୀୟ ଓ ଜାତୀୟସ୍ତରୀୟ ଗଣମାଧ୍ୟମରେ ବହୁଳ ପ୍ରକାଶିତ ଓ ପ୍ରସାରିତ ହୋଇଥିଲା ।

ନବୀନ ପଟ୍ଟନାୟକଙ୍କ ନେତୃତ୍ୱରେ ପରିଚାଳିତ ଓଡ଼ିଶା ସରକାର ବିଗତ ୪ବର୍ଷରେ ଉଲ୍ଲେଖନୀୟ ସଫଳତା ହାସଲ କରିଛି ବୋଲି ୨୧ମେ ୨୦୧୮ରେ **ଦି ନ୍ୟୁ ଇଣ୍ଡିଆନ୍ ଏକ୍ସପ୍ରେସ୍**ରେ ପ୍ରକାଶିତ ହୋଇଛି । **'ମୁଁ କାମରେ ବିଶ୍ୱାସ କରେ, କଥାରେ ନୁହେଁ'**, ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକଙ୍କର ଏହି ଉକ୍ତି, ତାଙ୍କ ଦ୍ୱାରା କାର୍ଯ୍ୟକାରୀ କରାଯାଉଥିବା ବିଭିନ୍ନ

ଜନକଲ୍ୟାଣକାରୀ ଯୋଜନାରୁ ସବୁବେଳେ ପ୍ରମାଣିତ ହୋଇଆସିଛି। ତାଙ୍କ ଦ୍ୱାରା କାର୍ଯ୍ୟକାରୀ କରାଯାଉଥିବା ବିଭିନ୍ନ ପ୍ରମୁଖ ଓ ଲୋକପ୍ରିୟ ଯୋଜନା ଦେଶ ପାଇଁ ପଥ ପ୍ରଦର୍ଶକ ହୋଇଛି ବୋଲି ଏଥିରେ ମୁକ୍ତ କଣ୍ଠରେ ସ୍ୱୀକାର କରାଯାଇଛି।

ମିଶନଶକ୍ତି ସମାବେଶ, ଚାଷୀ ସମାବେଶରେ ମୁଖ୍ୟମନ୍ତ୍ରୀଙ୍କ ଘୋଷଣା

ଉଚ୍ଚଶିକ୍ଷା ପାଇଁ 'କାଳିଆ ଛାତ୍ରବୃତ୍ତି'

ମେକ୍ ଇନ୍ ଓଡ଼ିଶା ଆରମ୍ଭ

Naveen invokes KALIA for offering

ମାଲକାନଗିରି ଜିଲ୍ଲାବାସୀଙ୍କ ପାଇଁ ଗୁରୁପ୍ରିୟା ସେତୁ ୨୦୧୮ ମସିହା ଜୁଲାଇ ୨୬ରେ ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ନବୀନ ପଟ୍ଟନାୟକଙ୍କ ଦ୍ୱାରା ଲୋକାର୍ପଣ ପରେ ଜନସାଧାରଣଙ୍କ ଉଦ୍ଦେଶ୍ୟରେ ସେ ଦେଇଥିବା ଅଭିଭାଷଣ ୨୭ ଜୁଲାଇ ୨୦୧୮ରେ ରାଜ୍ୟର ସମସ୍ତ ସମ୍ବାଦପତ୍ରର ଶିରୋନାମା ମଣ୍ଡନ କରିଥିଲା।

ଆମ ମୁଖ୍ୟମନ୍ତ୍ରୀ ତାଙ୍କର ୪ର୍ଥ ପାଳି ଶାସନର ଚତୁର୍ଥ ବର୍ଷର ସଫଳତା ସମୀକ୍ଷା କରିବା ଅବସରରେ ସଫଳତାକୁ ବଜାୟ ରଖିବା ସହିତ ଏହାର ପରିସରକୁ ଆହୁରି ବ୍ୟାପକ କରିବା ପାଇଁ '୩'ଟି (ଟେକ୍ନୋଲୋଜି, ଟ୍ରାନ୍ସପାରେନ୍ସି ଏବଂ ଟିମ୍ ୱାର୍କ) ମନ୍ତ୍ର ସହିତ '୩'ଡି (ଡେଡିକେସନ, ଡିଟରମିନେସନ ଏବଂ ଡିଭୋସନ) ତତ୍ତ୍ୱ ଉପରେ ଗୁରୁତ୍ୱାରୋପ କରିଥିଲେ। ତାଙ୍କ ସରକାରଙ୍କର ୧୦ ଗୋଟି ପ୍ରମୁଖ ସଫଳତା ସମ୍ପର୍କରେ ମଇ ମାସ ୨୧ ତାରିଖରେ ଦୈନିକ ନ୍ୟୁ ଇଣ୍ଡିଆନ ଏକ୍ସପ୍ରେସ୍ ଓ ପ୍ରଗତିବାଦୀ ସମେତ ଅନ୍ୟାନ୍ୟ ସମ୍ବାଦପତ୍ରରେ ବଡ ବଡ ଅକ୍ଷରରେ ପ୍ରକାଶ ପାଇଥିଲା।

ନବୀନ ପଟ୍ଟନାୟକ ଯେ ସବୁବେଳେ ଓଡ଼ିଶାବାସୀଙ୍କ ପାଇଁ ଉତ୍ସର୍ଗୀକୃତ ମନୋଭାବ ନେଇ କାର୍ଯ୍ୟ କରୁଛନ୍ତି, ତାହା ତାଙ୍କ ପ୍ରତି ଲୋକମାନଙ୍କର ଅତୁଟ ଜନ ସମର୍ଥନ ପ୍ରମାଣିତ କରିଛି ବୋଲି ଗତ ମେ ମାସ ୨୧ ତାରିଖରେ ଇକୋନୋମିକ୍ ଟାଇମ୍ସ ପ୍ରକାଶ କରିଛି। ତାଙ୍କର ସଫଳତା ମଧ୍ୟରେ ବସ୍ତି ବାସିନ୍ଦାଙ୍କ ପାଇଁ ଭୂମି ଅଧିକାର ଯୋଜନା ଜାଗା ଏକ ଯୁଗାନ୍ତକାରୀ, ସମଗ୍ର ବିଶ୍ୱରେ ପ୍ରଥମ ଏବଂ ଏ କ୍ଷେତ୍ରରେ ଦେଶର ଅନ୍ୟ ରାଜ୍ୟ ପାଇଁ ଓଡ଼ିଶା ଅନୁକରଣୀୟ ବୋଲି ବିଭିନ୍ନ ଗଣମାଧ୍ୟମରେ ପ୍ରକାଶ ପାଇଛି। ସେହିପରି ସମସ୍ତଙ୍କୁ ପକ୍କାଘର, କୃଷକଙ୍କ ସଶକ୍ତିକରଣ, ଜଳସେଚନ ସୁବିଧା, ପକ୍କା ସଡ଼କ ଯୋଜନା, ଓଡ଼ିଆ ଭାଷାକୁ ଶାସ୍ତ୍ରୀୟ ମାନ୍ୟତା, ପୁରୀରେ ଐତିହ୍ୟ କ୍ୟାବିନେଟ୍, ୨୨ତମ ଏସୀୟ ଦୌଡ଼କୁଦ ପ୍ରତିଯୋଗିତାର ସଫଳ ଆୟୋଜନ ସଂପର୍କରେ ମଧ୍ୟ ବିଭିନ୍ନ ସଂବାଦପତ୍ରରେ ବହୁଳ ଭାବରେ ପ୍ରକାଶିତ ହୋଇଥିଲା।

'ସୁସ୍ଥ ଓଡ଼ିଶା, ସୁଖୀ ଓଡ଼ିଶା'କୁ ସାକାର କରିବା ପାଇଁ ବିଜୁ ସ୍ୱାସ୍ଥ୍ୟ କଲ୍ୟାଣ ଯୋଜନା, ରାଜ୍ୟରେ ଅଧିକ ମେଡ଼ିକାଲ କଲେଜ ପ୍ରତିଷ୍ଠା, ଡାକ୍ତର ନିଯୁକ୍ତିଠାରୁ ଆରମ୍ଭ କରି ଜଣେ ବି ଗରିବ ଲୋକ ଖାଦ୍ୟ ସୁରକ୍ଷାରୁ ବଂଚିତ ନ ହେବା ପ୍ରତି ଦୃଷ୍ଟିଦେଇ ୨୫ ଲକ୍ଷ ଯୋଗ୍ୟ ହିତାଧିକାରୀଙ୍କ ପାଇଁ ନିଜ ସମ୍ବଳରୁ ନିଜସ୍ୱ ଖାଦ୍ୟ ସୁରକ୍ଷା ଯୋଜନା ଆରମ୍ଭ କରିବା ଆଦି ନବୀନ ପଟ୍ଟନାୟକଙ୍କ ସରକାରଙ୍କ ପ୍ରମୁଖ ଜନକଲ୍ୟାଣକାରୀ ଯୋଜନା ଓ ପଦକ୍ଷେପ ବୋଲି ପ୍ରାୟ ସମସ୍ତ ଗଣମାଧ୍ୟମରେ ବହୁଳ ଭାବରେ ପ୍ରକାଶ ପାଇଛି।

ଓଡ଼ିଶା ସରକାରଙ୍କର 'ଆଇ ଆମ୍ ଓଡ଼ିଶା' କ୍ୟାମ୍ପେନ୍ ରାଜ୍ୟର ସଫଳତାର କାହାଣୀ ଉପସ୍ଥାପନ କରୁଛି ବୋଲି **ଓଡ଼ିଶା ଡାଏରୀ ଡଟ୍ କମ୍** ସମେତ ଅନ୍ୟାନ୍ୟ ଗଣମାଧ୍ୟମରେ ଚଳିତ ବର୍ଷ ଅଗଷ୍ଟ ୨୨ ତାରିଖରେ ପ୍ରକାଶ ପାଇଛି।

ଏହା ରାଜ୍ୟରେ ଉଦ୍ୟୋଗୀକରଣ, ସୃଜନଶୀଳତା, ପୁଞ୍ଜିନିବେଶ ଓ ବ୍ୟବସାୟର ସୁଯୋଗ ରହିଥିବା କଥା ପ୍ରସାର କରିବାରେ ସହାୟକ ହୋଇଛି।

ପ୍ରାକୃତିକ ବିପର୍ଯ୍ୟୟ ମୁକାବିଲା କ୍ଷେତ୍ରରେ ଓଡ଼ିଶା ଅନୁକରଣୀୟ ହୋଇଛି। ବାତ୍ୟା ହେଉ କି ବନ୍ୟା ହେଉ, ଓଡ଼ିଶାର ପ୍ରାକୃତିକ ବିପର୍ଯ୍ୟୟ ମୁକାବିଲା କରିବାର ଦକ୍ଷତାକୁ ପ୍ରତିପାଦନ କରି ଅନ୍ତର୍ଜାତୀୟ ସ୍ତରରେ ପ୍ରଶଂସିତ ହୋଇଛି ବୋଲି ୧୮ ଡିସେମ୍ବର ୨୦୧୮ରେ ଦୈନିକ ପ୍ରମେୟ ସମ୍ବାଦପତ୍ରରେ ପ୍ରକାଶ ପାଇଛି । 'ତିତ୍‌ଲି' ଘଟଣାରେ ଗଙ୍ଗାବାଡ ପଂଚାୟତର ପ୍ରଭାବିତ 'ବାରଘର' ମୃତକଙ୍କ ପରିବାରଙ୍କୁ ୧୦ ଲକ୍ଷ ଟଙ୍କାର ଅନୁକମ୍ପା ରାଶି, ସେମାନଙ୍କ ପାଇଁ ପାହାଡ ତଳେ ବାସୋପଯୋଗୀ ଜମି ଓ ପଟ୍ଟା, ମୃତକଙ୍କ ପରିବାରର ଅନାଥଙ୍କୁ ରାଜ୍ୟ ସରକାର ପୋଷ୍ୟ ସନ୍ତାନ ଭାବେ ଗ୍ରହଣ କରି ସେମାନଙ୍କର ପାଠ ପଢିବାଠାରୁ ଆରମ୍ଭ କରି ନିଯୁକ୍ତି ପର୍ଯ୍ୟନ୍ତ ସହାୟତା ଦେବା, ସେମାନଙ୍କ ପରିବାରକୁ ଖାଦ୍ୟ, ସ୍ୱାସ୍ଥ୍ୟ ଓ ସାମାଜିକ ସୁରକ୍ଷାରେ ଅନ୍ତର୍ଭୁକ୍ତ କରାଯିବା, ସବୁ ପଡା ଗ୍ରାମକୁ ଗ୍ରାମର ମାନ୍ୟତା ଦିଆଯାଇ ସେଠାରେ ସର୍ବନିମ୍ନ ମୌଳିକ ସୁବିଧା ଯଥା ବିଦ୍ୟାଳୟ, ଗୋଷ୍ଠୀ କେନ୍ଦ୍ର, ଅଙ୍ଗନୱାଡି କେନ୍ଦ୍ର, ସ୍ୱାସ୍ଥ୍ୟ ସୁବିଧା ଆଦି ଯୋଗାଇଦେବା ସଂପର୍କରେ ବିଭିନ୍ନ ସଂବାଦପତ୍ରରେ ପ୍ରକାଶିତ ହୋଇଛି।




୨୦୧୮ ଅକ୍ଟୋବର ୧୧ ତାରିଖରେ ଅତି ଭୟଙ୍କର ବାତ୍ୟା ତିତ୍‌ଲି ରାଜ୍ୟର ଗଂଜାମ, ଗଜପତି ଏବଂ ରାୟଗଡା ସମେତ ବିଭିନ୍ନ ଜିଲ୍ଲାରେ ବ୍ୟାପକ କ୍ଷୟକ୍ଷତି ଘଟାଇଥିଲା। ରାଜ୍ୟ ସରକାର ବାତ୍ୟା ପୂର୍ବରୁ ଧନଜୀବନ ରକ୍ଷା ପାଇଁ ସମସ୍ତ ପଦକ୍ଷେପ ନେବା ସହିତ ବିପର୍ଯ୍ୟୟ ପରବର୍ତ୍ତୀ ଥଇଥାନ, ଯୋଗାଯୋଗ ବ୍ୟବସ୍ଥା, ବିଦ୍ୟୁତ୍ ସଂଯୋଗ, ପାନୀୟଜଳ ଯୋଗାଣ ଓ କ୍ଷତିଗ୍ରସ୍ତ ଭିତ୍ତିଭୂମିର ପୁନଃ ନିର୍ମାଣ ପାଇଁ ସମସ୍ତ ପ୍ରକାର ପଦକ୍ଷେପ ଗ୍ରହଣ କରିଥିଲେ। କିନ୍ତୁ ଏହି ବିପର୍ଯ୍ୟୟ ଯୋଗୁଁ ହୋଇଥିବା କ୍ଷତିର ଭରଣା ଓ ଥଇଥାନ କାର୍ଯ୍ୟ ନିମନ୍ତେ ବହୁ ଆର୍ଥିକ ସମ୍ବଳର ଆବଶ୍ୟକତା ରହିଛି। ପ୍ରାକୃତିକ ବିପର୍ଯ୍ୟୟ ପରିଚାଳନା ପାଇଁ ଥିବା ରାଜ୍ୟ ବିପର୍ଯ୍ୟୟ ପରିଚାଳନା ପାଣ୍ଠି ସୀମିତ ଓ ଏହା ନିର୍ଦ୍ଧାରିତ ବ୍ୟବସ୍ଥା ଅନୁସାରେ ଖର୍ଚ୍ଚ କରିବାକୁ ପଡିଥାଏ । ଏଣୁ ବାତ୍ୟା ଓ ବନ୍ୟା ପ୍ରଭାବିତଙ୍କ ଥଇଥାନ ଓ ଜୀବନଜୀବିକାକୁ ଦୃଷ୍ଟିରେ ରଖି ଅତ୍ୟାବଶ୍ୟକତା ଦୃଷ୍ଟିରୁ ସରକାର ନିଜସ୍ୱ ସୀମିତ ସମ୍ବଳରୁ ଅର୍ଥ ଖର୍ଚ୍ଚ କରିବାକୁ ବାଧ୍ୟ ହେଉଛନ୍ତି।

ଭୌଗୋଳିକ ଓ ଜଳବାୟୁ ଅବସ୍ଥିତି ଦୃଷ୍ଟିରୁ ଦେଖିବାକୁ ଗଲେ ବନ୍ୟା, ବାତ୍ୟା, ମରୁଡି ଓଡ଼ିଶାର ଚିର ସହଚର। ଆମ ରାଜ୍ୟର ୮୦% ଅଂଚଳ ଓ ୯୦% ଲୋକ ପ୍ରତିବର୍ଷ କିଛି ନା କିଛି ପ୍ରାକୃତିକ ବିପର୍ଯ୍ୟୟର ସମ୍ମୁଖୀନ ହେଉଛନ୍ତି, ଯାହା ସେମାନଙ୍କର ମେରୁଦଣ୍ଡକୁ ଦୋହଲାଇ ଦେଉଛି। ଫଳରେ ରାଜ୍ୟର ନିରନ୍ତର ବିକାଶ କ୍ଷେତ୍ରରେ ପ୍ରାକୃତିକ ବିପର୍ଯ୍ୟୟ



ହାତ ଖୋଲିଦେଲେ ନବୀନ

- ମୟୂରଭଞ୍ଜବାସୀଙ୍କୁ ଭେଟିଦେଲେ ୧୫୦ କୋଟିର ପ୍ରକଳ୍ପ
- ପ୍ରତିଷ୍ଠା ହେବ ଛଉ ନୃତ୍ୟ ଗବେଷଣା କେନ୍ଦ୍ର
- ସମାବେଶରେ ଯୋଗଦେଲେ ୪୦ ହଜାରରୁ ଊର୍ଦ୍ଧ୍ୱ ମହିଳା
- ନବୀନଙ୍କ ସହିତ ମଞ୍ଚରେ ବସିଲେ ୧୪ ଏସ୍‌ଏଚ୍‌ଜି ସଦସ୍ୟା

OUTLOOK

emulated by the rest of India (*see graphic*).

There is more. With tribes forming 22 per cent of Odisha's population, Patnaik has focused on improving their lot by providing road connectivity, better housing, electricity, education and skill development. The government also won global praise in 2013 when, in the face of the extremely severe cyclone storm Phailin, it evacuated a million people from the danger area, keeping casualties to a minimum. Odisha has seen rapid industrial growth and attracts among the highest amounts of investment annually in diversified sectors. "He has got us into the winning habit," says a senior bureaucrat. "We are no more defeatist. We have 21st century aspirations."

All quite remarkable for someone who considers himself an accidental chief minister. Naveen was the youngest of Biju and Gyan Patnaik's three children. His father participated in the freedom struggle and knew Jawaharlal Nehru well. He was also a skilled

"He has got us into a winning habit," says a bureaucrat about Naveen.

MASTER OF CEREMONI

At a conference of district collectors in Bhubanesw

pilot and founded his own airline, Kalinga, which was mer into Indian Airlines when civil aviation was nationalised i 1953. Biju Patnaik showed derring-do when he rescued tw Indonesian Independence leaders at Nehru's

NAVEEN INVOKES 'KALIA' FOR FARMERS

EXPRESS NEWS SERVICE @ Bhubaneswar

REJECTING the growing demand from the opposition political parties and farmers' organisations for farm loan waiver, Chief Minister Naveen Patnaik on Friday announced a comprehensive scheme, Krushak Assistance for Livelihood and Income (KALIA), for

THE SCHEME

₹10,180 cr to be spent over a period of three years

30 lakh small and marginal farmers to benefit

₹10,000 financial assistance per family for cultivation

₹12,500 each for 10 lakh landless households

92 pc of cultivators to be covered

ବିନା ସୁଧରେ ମହିଳା ଗୋଷ୍ଠୀଙ୍କୁ ଋଣ

ପ୍ରତିବନ୍ଧକ ସାଜୁଛି । ଏବେ ଆମ ମୁଖ୍ୟମନ୍ତ୍ରୀ ଓଡ଼ିଶାକୁ ସ୍ୱତନ୍ତ୍ର ରାଜ୍ୟ ପାହ୍ୟା ମାନ୍ୟତା ଦିଆଯିବା ସହିତ ପ୍ରତିବର୍ଷ ସ୍ୱତନ୍ତ୍ର ଆର୍ଥିକ ଅନୁଦାନ ଦେବା ପାଇଁ ନିକଟରେ ଦେଶର ପ୍ରଧାନମନ୍ତ୍ରୀଙ୍କ ନିକଟକୁ ଚିଠି ଲେଖିଛନ୍ତି, ଯାହା ବିଭିନ୍ନ ଗଣମାଧ୍ୟମରେ ପ୍ରକାଶିତ ହୋଇ ସବୁଆଡେ ଚର୍ଚ୍ଚାର କେନ୍ଦ୍ରବିନ୍ଦୁ ପାଲଟିଛି ।

ଓଡ଼ିଶାର ଅଭିବୃଦ୍ଧି ହାର ଜାତୀୟ ଅଭିବୃଦ୍ଧି ହାର ଠାରୁ ଅଧିକ ରହିଛି । କିନ୍ତୁ ବାରମ୍ବାର ଓ ଅପ୍ରତ୍ୟାଶିତ ପ୍ରାକୃତିକ ବିପର୍ଯ୍ୟୟ ରାଜ୍ୟବାସୀଙ୍କ ମେରୁଦଣ୍ଡକୁ ଦୋହଲାଇ ଦେଉଥିବା ବେଳେ ବିଶେଷ କରି ପ୍ରତିବର୍ଷ ସଂଘଟିତ ହେଉଥିବା ପ୍ରାକୃତିକ ବିପର୍ଯ୍ୟୟର ମୁକାବିଲା ନେଇ ଆବଶ୍ୟକ ଆର୍ଥିକ ସହାୟତା, ଅଧିକ ଟେଲିଫୋନ୍ ସଂଯୋଗ, ରେଳପଥ ବିସ୍ତାର, ରାଜ୍ୟରେ ଅଧିକ ଜାତୀୟ ରାଜପଥର ଆବଶ୍ୟକତା, ବ୍ୟାଙ୍କିଙ୍ଗ୍ ସୁବିଧା ଓ ବିମାନ ସେବା ପ୍ରଭୃତି କ୍ଷେତ୍ରରେ ରାଜ୍ୟ ସବୁବେଳେ ଅବହେଳିତ । ଆମ ଶିକ୍ଷାର ଅଭିବୃଦ୍ଧି, ଅଧିକ ନିଯୁକ୍ତି ସୁଯୋଗ ସୃଷ୍ଟି ହେବା ସହିତ ପ୍ରାକୃତିକ ବିପର୍ଯ୍ୟୟକୁ ସାମନା କରି ଦ୍ରୁତ ବିକାଶ ପଥରେ ଅଗ୍ରସର ହେବା ପାଇଁ ଆମକୁ ସ୍ୱତନ୍ତ୍ର ରାଜ୍ୟ ପାହ୍ୟା ଦିଆଯିବା ଆବଶ୍ୟକ ବୋଲି ଉଲ୍ଲେଖ କରି ଆମ ମୁଖ୍ୟମନ୍ତ୍ରୀ ପ୍ରଧାନମନ୍ତ୍ରୀଙ୍କୁ ଚିଠି ଲେଖିଛନ୍ତି ।

ହକି ବିଶ୍ୱ କପ୍ ପାଇଁ ଓଡ଼ିଶା ସରକାରଙ୍କ ତରଫରୁ ୩୬୦° କ୍ୟାମ୍ପେନ୍‌ଠାରୁ ଆରମ୍ଭ କରି ଏହି ବିଶ୍ୱସ୍ତରୀୟ ହକି ପ୍ରତିଯୋଗିତାର ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ଟିକିନିକି ବିବରଣୀ ସମସ୍ତ ଗଣମାଧ୍ୟମ ବହୁଳ ଭାବରେ ପ୍ରସାରଣ କରିଥିଲେ ।

ନବୀନ ପଟ୍ଟନାୟକଙ୍କୁ ୨୦୧୭ ମସିହାରେ **ଶ୍ରେଷ୍ଠ ପ୍ରଶାସକ ପୁରସ୍କାର** ପ୍ରଦାନ ଖବର ଦୈନିକ ସମ୍ବାଦପତ୍ରରେ ମୁଖ୍ୟ ଖବର ଭାବରେ ପ୍ରକାଶ ପାଇଥିଲା ।

ଓଡ଼ିଶାର ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ ଆଦର୍ଶ ମୁଖ୍ୟମନ୍ତ୍ରୀ ଭାବେ ଆଉ ଏକ ମୁକୁଟର ଅଧିକାରୀ ହୋଇଛନ୍ତି ବୋଲି **ଦି ଟେଲିଗ୍ରାଫ୍** ସମେତ ଅନ୍ୟ ସମସ୍ତ ଗଣମାଧ୍ୟମରେ ୨୦୧୮ ଜାନୁଆରୀ ୨୨ ତାରିଖରେ ପ୍ରକାଶ ପାଇଥିଲା । ପୁନେଠାରେ ଅନୁଷ୍ଠିତ ଏକ ଉତ୍ସବରେ ଭାରତର ପୂର୍ବତନ ରାଷ୍ଟ୍ରପତି ପ୍ରତିଭା ଦେବୀ ସିଂ ପାଟିଲ ଆମ ମୁଖ୍ୟମନ୍ତ୍ରୀଙ୍କୁ ଏହି ପୁରସ୍କାର ପ୍ରଦାନ କରିଥିଲେ ।

ନିକଟରେ ହୋଇଥିବା ବିଭିନ୍ନ ସର୍ଭେରେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ ଲୋକପ୍ରିୟ ମୁଖ୍ୟମନ୍ତ୍ରୀ ତାଲିକାରେ ୧ ନମ୍ବର ସ୍ଥାନରେ ରହିଛନ୍ତି । **ଇଣ୍ଡିଆ ଟୁଡେ** ମାଗାଜିନ୍ ପକ୍ଷରୁ ହୋଇଥିବା ଜନମତ ସର୍ଭେରେ ଦେଶର ଛଅଗୋଟି ରାଜ୍ୟର ମୁଖ୍ୟମନ୍ତ୍ରୀ ତୁଳନାରେ ନବୀନଙ୍କ ଲୋକପ୍ରିୟତା ସର୍ବାଧିକ ବୋଲି ପ୍ରକାଶ ପାଇଛି । **ଇଣ୍ଡିଆ ଟୁଡେ ମୁଡ୍ ଅଫ୍ ଦି ନେସନ** ସର୍ଭେରେ ମଧ୍ୟ ନବୀନ ଲୋକପ୍ରିୟତାରେ ନିଜ ରାଜ୍ୟ ମଧ୍ୟରେ ଅନ୍ୟମାନଙ୍କ ତୁଳନାରେ ଯଥେଷ୍ଟ ଆଗରେ ରହିଛନ୍ତି ବୋଲି ଏହି ସର୍ଭେରେ ଦର୍ଶାଯାଇଥିଲା ।

# ଆମ କାମ ଆମ ପୁରସ୍କାର



"ଲୋକଙ୍କ ମନରେ ଖୁସି ହିଁ ଆମ କାମର ପ୍ରକୃତ ପୁରସ୍କାର ।" - ନବୀନ ପଟ୍ଟନାୟକ

## କୃଷକଙ୍କ ପାଇଁ ସମ୍ମାନ

- ୭ ବର୍ଷ ମଧ୍ୟରେ ୫ ଥର **କୃଷି କର୍ମଣ ପୁରସ୍କାର**
- ଖାଦ୍ୟଶସ୍ୟ ଉତ୍ପାଦନ କ୍ଷେତ୍ରରେ ୨୦୧୬-୧୭ ବର୍ଷରେ ସ୍ୱତନ୍ତ୍ର ପ୍ରଶସ୍ତି (କମେଣ୍ଡେସନ) ପୁରସ୍କାର
- **ଓଡ଼ିଶା ମିଲେଟ୍ ମିଶନକୁ** ଡିସେମ୍ବର-୨୦୧୭ **ସ୍କଚ୍ (ଟ୍ରାନ୍ସଫରମେସନାଲ ଇନୋଭେସନ)** ପୁରସ୍କାର
- **ଜିନ୍ ବ୍ୟାଙ୍କରେ ଦେଶୀୟ ବିହନ କିସମ ସଂରକ୍ଷଣ ନିମନ୍ତେ** ଜାତୀୟ ସମ୍ମାନ
- କୃଷି ଓ କୃଷକଙ୍କ କଲ୍ୟାଣ ପାଇଁ ଉତ୍ତମ ନେତୃତ୍ୱ ନିମନ୍ତେ **୯ମ ଗ୍ଲୋବାଲ ଏଗ୍ରିକଲ୍ଚରାଲ ଲିଡରସିପ୍ ଆୱାର୍ଡ**

## ସ୍ୱାସ୍ଥ୍ୟ ସେବା ପାଇଁ ସମ୍ମାନ

- ଓପିଡି ସେବା ପ୍ରଦାନରେ ଉଲ୍ଲେଖନୀୟ ଉନ୍ନତି ପାଇଁ ଓଡ଼ିଶା ୨୦୧୬-୧୭ ଓ ୨୦୧୭-୧୮ ବର୍ଷରେ ଜାତୀୟ ସ୍ତରରେ ଦ୍ୱିତୀୟ
- ବୈଷୟିକ ଜ୍ଞାନର ଉପଯୋଗ କରି ଦକ୍ଷତାର ସହ ସ୍ୱାସ୍ଥ୍ୟ ସେବା ପରିଚାଳନା ପାଇଁ **ଏକ୍ସପ୍ରେସ୍ ପବ୍ଲିକ୍ ହେଲ୍‌ଥ ଆୱାର୍ଡ-୨୦୧୮**
- **ଜାତୀୟ କୁଷ୍ଠରୋଗ ନିରାକରଣ କାର୍ଯ୍ୟକ୍ରମ ୨୦୧୭-୧୮ ବର୍ଷରେ ଶ୍ରେଷ୍ଠ କାର୍ଯ୍ୟକାରିତା ପାଇଁ** ପୁରସ୍କୃତ
- **ଜିଲ୍ଲା ମୁଖ୍ୟ ଚିକିତ୍ସାଳୟ, କୋରାପୁଟକୁ** ଭାରତ ସରକାରଙ୍କଠାରୁ **କ୍ୱାଲିଟି ଆସ୍ୟୁରାନ୍ସ ଷ୍ଟାଣ୍ଡାର୍ଡ ସାର୍ଟିଫିକେଟ୍** ସହିତ ଜାତୀୟ ସ୍ତରରେ ୨ୟ ସ୍ଥାନ
- **ଜିଲ୍ଲା ମୁଖ୍ୟ ଚିକିତ୍ସାଳୟ, ସମ୍ବଲପୁରକୁ** ଜାତୀୟ ସ୍ତରରେ ଭାରତ ସରକାରଙ୍କଠାରୁ **୧ମ 'କାୟାକଳ୍ପ' ପୁରସ୍କାର**

## ପଞ୍ଚାୟତିରାଜ ଓ ପାନୀୟ ଜଳ ବିଭାଗକୁ ସମ୍ମାନ

- **ବାସହୀନ ଲୋକଙ୍କୁ ପକ୍କାଘର ଯୋଗାଇବାରେ** ୨୦୧୬-୧୭ ମସିହା ପାଇଁ ଭାରତ ସରକାରଙ୍କ ଗ୍ରାମୀଣ ମନ୍ତ୍ରାଳୟ ଦ୍ୱାରା ପ୍ରଥମ ପୁରସ୍କାର




- **ଦୀନ ଦୟାଲ ଜାତୀୟ ଗ୍ରାମୀଣ ଜୀବିକା ମିଶନ କାର୍ଯ୍ୟକାରିତାରେ ଓଡ଼ିଶା ୨୦୧୬-୧୭ ପାଇଁ ପୁରସ୍କୃତ**
- ୨୦୧୭-୧୮ରେ କ୍ରମାନ୍ୱୟରେ ୨ୟ ଥର **ଦକ୍ଷତା ବିକାଶରେ ଶ୍ରେଷ୍ଠତ୍ୱ** ପାଇଁ ପୁରସ୍କୃତ
- **ମହାତ୍ମା ଗାନ୍ଧୀ ଜାତୀୟ କର୍ମ ନିଯୁକ୍ତି ଯୋଜନା** ସ୍ୱଚ୍ଛତା ଓ ଉତ୍ତରଦାୟିତ୍ୱର ସହ କାର୍ଯ୍ୟକାରୀ କରିବରେ ଜାତୀୟ ସ୍ତରରେ ତୃତୀୟ

## ଗ୍ରାମ୍ୟ ଉନ୍ନୟନ ବିଭାଗ ପୁରସ୍କୃତ

- ପ୍ରଧାନମନ୍ତ୍ରୀ ଗ୍ରାମ ସଡ଼କ ଯୋଜନାରେ **ସବୁଠାରୁ ଅଧିକ ରାସ୍ତା ନିର୍ମାଣ ପାଇଁ** ୨୦୧୬-୧୭ ମସିହାରେ ଜାତୀୟ ସ୍ତରରେ ଦ୍ୱିତୀୟ ଓ ୨୦୧୭-୧୮ ବର୍ଷରେ **ପ୍ରଥମ**
- **ଯୋଗାଯୋଗ ନଥିବା ବସତିକୁ ରାସ୍ତା ସଂଯୋଗୀକରଣ** କ୍ଷେତ୍ରରେ ଜାତୀୟ ସ୍ତରରେ **ଦ୍ୱିତୀୟ**
- **ଗ୍ରାମାଞ୍ଚଳର ରାସ୍ତା ନିର୍ମାଣ କ୍ଷେତ୍ରରେ ସବୁଜ ଜ୍ଞାନକୌଶଳ ଉପଯୋଗ କରି** ସର୍ବାଧିକ କିଲୋମିଟର ରାସ୍ତା ନିର୍ମାଣ କରି ଜାତୀୟ ସ୍ତରରେ **ପ୍ରଥମ**

## ସହରାଞ୍ଚଳ ବିକାଶ ପାଇଁ ପୁରସ୍କାର ଓ ପ୍ରୋତ୍ସାହନ

- **ଅମୃତ ଯୋଜନାକୁ** ଦକ୍ଷତାର ସହ କାର୍ଯ୍ୟକାରୀ କରାଇ ୨୦୧୫-୧୬ ଓ ୨୦୧୬-୧୭ ବର୍ଷରେ ଜାତୀୟ ସ୍ତରରେ ଯଥାକ୍ରମେ **ଦ୍ୱିତୀୟ** ଓ **ତୃତୀୟ**
- **ଇଜ୍ ଅଫ୍ ଲିଭିଙ୍ଗ୍ ଇଣ୍ଡେକ୍ସ-୨୦୧୮** ର୍ୟାଙ୍କିରେ ଦ୍ୱିତୀୟ
- ଉତ୍କୃଷ୍ଟ ସହରୀ ଯୋଜନା ପାଇଁ ଭୁବନେଶ୍ୱର ଆମେରିକାନ୍ ପ୍ଲାନିଂ ଆସୋସିଏସନ ଦ୍ୱାରା **ପାଇଏରେ ଏଲ୍-ଏନ୍‌ଫ୍ୟାଣ୍ଟଇଣ୍ଟରନ୍ୟାସନାଲ ପ୍ଲାନିଂ ଏକ୍ସଲେନ୍ସ ଆୱାର୍ଡ**ରେ ପୁରସ୍କୃତ
- ସହରାଞ୍ଚଳ ବିକେନ୍ଦ୍ରୀକରଣରେ ଉତ୍କର୍ଷତା ପାଇଁ **ସମ୍ମାନଜନକ ଭି.ରାମଚନ୍ଦ୍ରନ୍ ପୁରସ୍କାର**
- ୨୦୧୬ରେ ୧୦୦ଟି ସହର ସ୍ମାର୍ଟ ସିଟି ଚାଲେଞ୍ଜ ଆକ୍ସେସ୍ ସର୍ବେକ୍ଷଣରେ ଭୁବନେଶ୍ୱର ଜାତୀୟ ସ୍ତରରେ ପ୍ରଥମ



- **ଭୁବନେଶ୍ୱର ସ୍ମାର୍ଟ ସିଟି ପ୍ଲାନ୍** ପାଇଁ କାନାଡିଆନ୍ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ପ୍ଲାନର୍ସଙ୍କ ଠାରୁ **ଆୱାର୍ଡ ଅଫ୍ ମେରିଟ୍ -୨୦୧୬** ସମ୍ମାନ
- **ଗ୍ଲୋବାଲ ସ୍ମାର୍ଟ ସିଟି ପରଫରମାନ୍ସ ଇଣ୍ଡେକ୍ସ-୨୦୧୭**ରେ ବିଶ୍ୱରେ ଶୀର୍ଷରେ ଥିବା ୨୦ଟି ଗ୍ଲୋବାଲ ସ୍ମାର୍ଟ ସିଟି **ମଧ୍ୟରେ ଭୁବନେଶ୍ୱର** ସ୍ଥାନିତ
- **ବସ୍ତି ବାସିନ୍ଦାଙ୍କୁ ଭୂମି ଅଧିକାର ପ୍ରଦାନ** ଏବଂ ପ୍ରଧାନମନ୍ତ୍ରୀ ଆବାସ ଯୋଜନାରେ **ଗୃହ ନିର୍ମାଣ କରିଥିବା ହିତାଧିକାରୀଙ୍କ ଜମାଖାତାକୁ ଡିବିଟି ଜରିଆରେ ସିଧାସଳଖ ଅର୍ଥ ପ୍ରେରଣ** କାର୍ଯ୍ୟ ସୁଚାରୁରୂପେ ସଂପାଦନ ପାଇଁ **ହୁଡ୍‌କୋ ଆୱାର୍ଡ ୨୦୧୭-୧୮**

## ବିଜ୍ଞାନ ଓ କାରିଗରୀ ବିଭାଗକୁ ପୁରସ୍କାର

- **ବିଶ୍ୱ ଜିଓ-ସ୍ପାଟିଆଲ ଏକ୍ସେଲେନ୍ସ ଆୱାର୍ଡ -୨୦୧୭ ଏବଂ ଇ.ଏସ୍.ଆର୍.ଆଇ ସ୍ପାଟିଆଲ ଆଚିଭ୍‌ମେଣ୍ଟ ଜି.ଆଇ.ଏସ୍ -୨୦୧୭** ପୁରସ୍କାର
- ବିଦ୍ୟୁତ୍ ଯୋଗାଣ ସୁବିଧା ନଥିବା ଦୁର୍ଗମ ଅଂଚଳକୁ ଓରେଡା ସହାୟତାରେ ୨୦୧୪-୧୭ ମଧ୍ୟରେ ସୋଲାର ପମ୍ପ ମାଧ୍ୟମରେ ପାନୀୟ ଜଳ ଯୋଗାଣ କାର୍ଯ୍ୟକ୍ରମ ପାଇଁ ଜାତୀୟ ସ୍ତରରେ **ପ୍ରଥମ ପୁରସ୍କାର**
- ସୌର ଲଣ୍ଠନ ବଣ୍ଟନ କ୍ଷେତ୍ରରେ ଉଲ୍ଲେଖନୀୟ କାର୍ଯ୍ୟ ପାଇଁ ଜାତୀୟ ସ୍ତରରେ **୩ୟ ପୁରସ୍କାର**

## ଅର୍ଥ ବିଭାଗକୁ ସମ୍ମାନ

- ଇଲେକ୍ଟ୍ରୋନିକ୍ କଂପ୍ୟୁଟରୀକରଣ ଜରିଆରେ **ଅର୍ଥ ଗ୍ରହଣ ଓ ପ୍ରେରଣ ପ୍ରକ୍ରିୟା**ର ଉତ୍ତମ ପରିଚାଳନା ବ୍ୟବସ୍ଥା ପ୍ରଚଳନ ଯୋଗୁଁ ସ୍କଚ୍ ଗୋଲ୍ଡ-ସ୍ମାର୍ଟ ଗଭର୍ଣ୍ଣାନ୍ସ-୨୦୧୭ ପୁରସ୍କାର
- **ଉପଭୋକ୍ତାମାନଙ୍କୁ ପେନ୍‌ସନ ପ୍ରଦାନ ବ୍ୟବସ୍ଥାରେ ସଂସ୍କାରମୂଳକ ସରଳୀକରଣ ପଦକ୍ଷେପ** ଯୋଗୁଁ **ସ୍କଚ୍ ଆୱାର୍ଡ ଅଫ୍ ମେରିଟ୍ ୨୦୧୭** ପୁରସ୍କାର
- ଜାତୀୟ ପେନ୍‌ସନ ବ୍ୟବସ୍ଥା (ଏନ୍.ପି.ଏସ୍) ଅଧୀନରେ ଉତ୍ତମ ପେନ୍‌ସନ ପରିଚାଳନା ବ୍ୟବସ୍ଥା କାର୍ଯ୍ୟକାରୀ କରାଇବାରେ ଓଡ଼ିଶା ଶ୍ରେଷ୍ଠ ରାଜ୍ୟ

## ଇସ୍ପାତ ଓ ଖଣି ବିଭାଗ ପାଇଁ ପୁରସ୍କାର

- ଆଇ-ଥ୍ରି ୱେବ୍ ବେସ୍‌ଡ ସଫ୍ଟୱେର ବ୍ୟବହାର କରି ନିର୍ଦ୍ଧାରିତ ସମୟ ମଧ୍ୟରେ ଖଣିଜ ପଦାର୍ଥ ଉତ୍ତୋଳନ, ଡେସ୍‌ପାଚ୍ ଏବଂ ମୂଲ୍ୟାଙ୍କନ ପଦ୍ଧତି ଯୋଗୁଁ କେନ୍ଦ୍ର ବିଜ୍ଞାନ ଓ କାରିଗରୀ ବିଭାଗ ଦ୍ୱାରା **ଜିଓ ସ୍ପାଟିଆଲ ଏକ୍ସେଲେନ୍ସ ପୁରସ୍କାର**

### ଖାଦ୍ୟ ଯୋଗାଣ ଓ ଖାଉଟି କଲ୍ୟାଣ ବିଭାଗ ପୁରସ୍କୃତ

- ପି.ଓ.ଏସ୍ ମାଧ୍ୟମରେ ଖାଉଟି ସାମଗ୍ରୀର ସୁଷମ ବଣ୍ଟନ ନିଶ୍ଚିତ କରିଥିବା ଯୋଗୁଁ ଭାରତ ସରକାରଙ୍କଠାରୁ **୪୧ ଜେମ୍ସ ଅଫ୍ ଡିଜିଟାଲ ଇଣ୍ଡିଆ ପୁରସ୍କାର**
- ୨୦୧୫-୧୬ ବର୍ଷରେ ସ୍ୱୟଂକ୍ରିୟ ଶସ୍ୟ କ୍ରୟ ବ୍ୟବସ୍ଥା (ପି-ପାସ୍) ଏବଂ କୃଷକ ପଞ୍ଜୀକରଣ ଏବଂ ନାଗରିକ କୈନ୍ଦ୍ରିକ ସେବା ପାଇଁ **ଜାତୀୟ ଇ-ଗଭର୍ଣ୍ଣାନ୍ସ ଆୱାର୍ଡ**
- ୨୦୧୬-୧୭ରେ ଖାଦ୍ୟ ସୁରକ୍ଷା ଓ ଉତ୍ପାଦନ କ୍ଷେତ୍ରରେ ଓଡ଼ିଶା **ସି.ଏସ୍.ଆଇ-ନିହିଲେଣ୍ଟ ଶ୍ରେଷ୍ଠ ଇ-ଗଭର୍ଣ୍ଣାନ୍ସ ରାଜ୍ୟ ପୁରସ୍କାର**

### ସୂଚନା ଓ ପ୍ରଯୁକ୍ତି ବିଦ୍ୟା ବିଭାଗ ସମ୍ମାନିତ

- ସୂଚନା ଓ ପ୍ରଯୁକ୍ତି ବିଦ୍ୟା ପ୍ରୟୋଗ କ୍ଷେତ୍ରରେ ଉଲ୍ଲେଖନୀୟ ଅଗ୍ରଗତି କରିଥିବା ରାଜ୍ୟମାନଙ୍କ ମଧ୍ୟରେ ଓଡ଼ିଶା ୨୦୧୫-୧୬ ଓ ୨୦୧୬-୧୭ ବର୍ଷରେ ସମ୍ମାନଜନକ **ସି.ଏସ୍.ଆଇ.-ନିହିଲେଣ୍ଟ ଇ-ଗଭର୍ଣ୍ଣାନ୍ସ ଆୱାର୍ଡ**ରେ ସମ୍ମାନିତ
- ପରିବେଶ ସୁରକ୍ଷାକୁ ଦୃଷ୍ଟି ଦେଇ ଶକ୍ତି ଉତ୍ପାଦନ କ୍ଷମତା ଅଭିବୃଦ୍ଧି କ୍ଷେତ୍ରରେ ଓଡ଼ିଶା ପାୱାର ଗ୍ରୀଡ୍ କର୍ପୋରେସନ ୨୦୧୭ ବର୍ଷରେ **ଏସିଆନ୍ ପାୱାର ଆୱାର୍ଡ**ରେ ସମ୍ମାନିତ

### ଶିକ୍ଷା ବିଭାଗକୁ ପ୍ରଶଂସା

- ଛାତ୍ରଛାତ୍ରୀମାନଙ୍କ ପାଇଁ ଉତ୍ତମ ଶିକ୍ଷା ପରିଚାଳନା ବ୍ୟବସ୍ଥା ପ୍ରଚଳନ ପାଇଁ ୨୦୧୫-୧୬ରେ ଓଡ଼ିଶା **ସ୍କଚ୍ ପୁରସ୍କାର**ରେ ସମ୍ମାନିତ

### କ୍ରୀଡା ପାଇଁ ସମ୍ମାନ

- **ହକିର ପ୍ରଚାର-ପ୍ରସାର** ପାଇଁ କରିଥିବା ଅବଦାନ ଲାଗି ଆମ ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ନବୀନ ପଟ୍ଟନାୟକ **'ଅନ୍ତର୍ଜାତୀୟ ହକି ମହାସଂଘ (ଏଫ୍.ଆଇ.ଏଚ୍) ସଭାପତି ପୁରସ୍କାର'**ରେ ପୁରସ୍କୃତ

## ଗଢ଼ିବା ନୂଆ ଓଡ଼ିଶା

ଆମ ଦେଶରେ ସବୁଠାରୁ ଲୋକପ୍ରିୟ ଆମ ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ନବୀନ ପଟ୍ଟନାୟକଙ୍କ ନିରନ୍ତର ଉଦ୍ୟମରେ ଓଡ଼ିଶାରେ ବ୍ୟାପକ ପରିବର୍ତ୍ତନ ଅଣାଯାଇପାରିଛି। ଗାଁଠୁ ଆରମ୍ଭ କରି ସହର ପର୍ଯ୍ୟନ୍ତ ଏବଂ ବସ୍ତିରୁ ଆରମ୍ଭ କରି ବହୁତଳ ପ୍ରାସାଦ ପର୍ଯ୍ୟନ୍ତ ସବୁଠି ଏହି ପରିବର୍ତ୍ତନ ସ୍ପଷ୍ଟ ଭାବରେ ବାରିହୋଇ ପଡୁଛି। କୃଷି, ସ୍ୱାସ୍ଥ୍ୟ, ଶିକ୍ଷା ଓ ଭିତ୍ତିଭୂମି ନିର୍ମାଣ ପରି ମୌଳିକ ଆବଶ୍ୟକତାଗୁଡିକୁ ଅଗ୍ରାଧିକାର ଦେଇ ଆମ ସରକାର ବିଭିନ୍ନ ଲୋକାଭିମୁଖୀ ଯୋଜନା ସଫଳତାର ସହିତ କାର୍ଯ୍ୟକାରୀ କରୁଛନ୍ତି। ଆଜି ଓଡ଼ିଶା ଜାତୀୟ ସ୍ତରରେ ବହୁ କ୍ଷେତ୍ରରେ ଉଚ୍ଚ ପ୍ରଶଂସିତ ଏବଂ ଅନେକ କ୍ଷେତ୍ରରେ ସାରା ଦେଶ ପାଇଁ ଉଦାହରଣ ପାଲଟିଛି।

ଆଜି ଆମ ରାଜ୍ୟରେ କୃଷକଙ୍କ ଆୟ ଦ୍ୱିଗୁଣିତ ହୋଇଛି। କୃଷି ଉତ୍ପାଦନ ୨ଗୁଣ ହୋଇଛି। ଗ୍ରାମୀଣ ଦାରିଦ୍ର୍ୟ ହାରରେ ମଧ୍ୟ ଦ୍ରୁତ ହ୍ରାସ ଘଟିଛି। ଅଧିକୃତ ଜଙ୍ଗଲ ଜମି ଉପରେ ଚାଷ ଓ ବାସ ଅଧିକାର ଦେବାରେ ଆମେ ଦେଶରେ ୧ ନମ୍ବର। ଦେଶର ମୁଣ୍ଡପିଛା ଆୟ ତୁଳନାରେ ଆମ ରାଜ୍ୟର ମୁଣ୍ଡପିଛା ଆୟ ଅଧିକ ରହିଛି। ଦେଶର ମୁଣ୍ଡପିଛା ଆୟ ଅଭିବୃଦ୍ଧି ହାରଠାରୁ ଆମ ରାଜ୍ୟର ଅଭିବୃଦ୍ଧି ହାର ଅଧିକ। ଜାତୀୟ ସ୍ତରରେ ଶିଶୁ ଓ ମାତୃ ମୃତ୍ୟୁ ହାର ତୁଳନାରେ ଆମ

ରାଜ୍ୟରେ ଏହା ଯଥେଷ୍ଟ କମ୍ ରହିଛି । ଜନଜାତି ମହିଳା ସାକ୍ଷରତା ହାରରେ ଆମେ ଆଗୁଆ । ଆମ ରାଜ୍ୟରେ ଦାରିଦ୍ର୍ୟ ହ୍ରାସ ହାର ୨୪.୬୧ ପ୍ରତିଶତ, ଯାହା ସର୍ବଭାରତୀୟ ସ୍ତରରେ ସର୍ବାଧିକ । ବିଗତ ୧୦ ବର୍ଷରେ ୮୦ ଲକ୍ଷ ଲୋକଙ୍କୁ ଦାରିଦ୍ର୍ୟ ସୀମାରେଖା ଉପରକୁ ଅଣାଯାଇଛି ।

ଆଜି ଗାଁ ଗାଁରେ ସିମେଣ୍ଟ କଂକ୍ରିଟ୍ ରୋଡ୍, ବିଜୁ ସେତୁ, ଗାଁ ଗାଁରେ ବିଜୁଳି, ପିଇବା ପାଣି, ଚାଷ ପାଇଁ ଜଳସେଚନ ସୁବିଧା ସହିତ ଶିକ୍ଷା, ସ୍ୱାସ୍ଥ୍ୟ ଆଦି ପ୍ରତିଟି କ୍ଷେତ୍ରରେ ଦ୍ରୁତ ପରିବର୍ତ୍ତନ ଅଣାଯାଇଛି ।

ଗରିବ ଲୋକଙ୍କ କଲ୍ୟାଣକୁ ସବୁଠାରୁ ଅଧିକ ଗୁରୁତ୍ୱ ଦିଆଯାଇଛି । ସମସ୍ତଙ୍କ ପାଇଁ ଖାଦ୍ୟ ସୁରକ୍ଷା ନିଶ୍ଚିତ କରାଯାଉଛି । ଗରିବ ଲୋକଙ୍କୁ ଖାଦ୍ୟ ସୁରକ୍ଷା ଯୋଗାଇବା ପାଇଁ କେନ୍ଦ୍ରୀୟ ଯୋଜନା ପର୍ଯ୍ୟାପ୍ତ ନହେଲେ ରାଜ୍ୟ ତା'ର ନିଜସ୍ୱ ଯୋଜନା କରି ଗାଁ ହେଉ ବା ସହର, ସବୁଠି ଖାଦ୍ୟ ସୁରକ୍ଷା ଯୋଗାଇ ଦେଉଛି ।



ବାସଗୃହ ଯୋଗାଣ କ୍ଷେତ୍ରରେ ମଧ୍ୟ ସେଇ ଚିନ୍ତାଧାରା ବଜାୟ ରହିଛି । କେନ୍ଦ୍ରୀୟ ଯୋଜନା ସହିତ ନିଜସ୍ୱ ଯୋଜନା କରି ଗ୍ରାମାଞ୍ଚଳର ସବୁ କଚ୍ଚାଘରକୁ ପକ୍କାଘରରେ ପରିଣତ କରିବା ଉଦ୍ୟମ ଦ୍ରୁତତର ହୋଇଛି । ସହରାଞ୍ଚଳରେ ସାମୟିକ ରହଣିଠାରୁ ଆରମ୍ଭ କରି ସ୍ଥାୟୀ ଆଶ୍ରୟ ବନ୍ଦୋବସ୍ତ କରାଯିବା, ସହରାଞ୍ଚଳ ବସ୍ତି ବାସିନ୍ଦାଙ୍କ ପାଇଁ ଭୂମି ଓ ସମ୍ପତ୍ତି ଅଧିକାର ସହିତ ସର୍ବନିମ୍ନ ମୌଳିକ ସୁବିଧାଯୁକ୍ତ ବାସଗୃହ ଯୋଗାଣ ପାଇଁ ଯୋଜନା କରାଯାଉଛି ।

'ସୁସ୍ଥ ଓଡ଼ିଶା ସୁଖୀ ଓଡ଼ିଶା' ଗଠନ ପାଇଁ ସରକାର ପ୍ରତିଶ୍ରୁତିବଦ୍ଧ । **ବିଜୁ ସ୍ୱାସ୍ଥ୍ୟ କଲ୍ୟାଣ ଯୋଜନା**ରେ ରାଜ୍ୟର ୭୦ ଲକ୍ଷ ଗରିବ ପରିବାର ଉପକୃତ ହେଉଛନ୍ତି । ଗରିବ ପରିବାରକୁ ପ୍ରତିବର୍ଷ

୫ ଲକ୍ଷ ଟଙ୍କା ଏବଂ ପରିବାରର ମହିଳାଙ୍କୁ ୭ ଲକ୍ଷ ଟଙ୍କାର ଚିକିତ୍ସା ସହାୟତା ଯୋଗାଇ ଦିଆଯାଉଛି । ଗ୍ରାମାଞ୍ଚଳରେ ଥିବା ସ୍ୱାସ୍ଥ୍ୟ ଉପକେନ୍ଦ୍ରଠାରୁ ଆରମ୍ଭ କରି ଜିଲ୍ଲା ମୁଖ୍ୟ ଚିକିତ୍ସାଳୟ ପର୍ଯ୍ୟନ୍ତ ସବୁଠି ସମସ୍ତଙ୍କ ପାଇଁ ଦେୟମୁକ୍ତ ଚିକିତ୍ସା ସୁବିଧା କରାଯାଇଛି । ରାଜ୍ୟର ସବୁ ବଡ ଡାକ୍ତରଖାନା ଓ ରାଜ୍ୟ ବାହାରେ ଥିବା କେତେକ ହସ୍ପିଟାଲ୍‌ରେ ମଧ୍ୟ ଏହି ସୁବିଧା ମିଳିବା ପାଇଁ ବ୍ୟବସ୍ଥା କରାଯାଇଛି ।

୪ ବର୍ଷ ମଧ୍ୟରେ ୨୫ ହଜାରରୁ ଊର୍ଦ୍ଧ୍ୱ କିଲୋମିଟର ଗ୍ରାମ୍ୟ ସଡ଼କ ନିର୍ମାଣ କରାଯାଇଛି । ୬୦୦ ଛୋଟ ବଡ ସେତୁ ନିର୍ମାଣ କରାଯାଇ ଗାଁକୁ ଗାଁ ଯୋଡ଼ି ହୋଇଛି । ବିଜୁ ଏକ୍ସପ୍ରେସ୍ ୱେ ପରି ରାସ୍ତା ନିର୍ମାଣ କରାଯାଇ ପଶ୍ଚିମ ଓଡ଼ିଶାରୁ ଦକ୍ଷିଣ

ଓଡ଼ିଶାକୁ ବହୁ ଲେନ୍ ବିଶିଷ୍ଟ ରାସ୍ତା ସଂଯୋଗୀକରଣ କାର୍ଯ୍ୟ ଶେଷ ପର୍ଯ୍ୟାୟରେ ପହଁଚିଛି । ମୁଖ୍ୟମନ୍ତ୍ରୀ ସଡକ ଯୋଜନାରେ ଗ୍ରାମୀଣ ରାସ୍ତାର ବିକାଶଠାରୁ ଆରମ୍ଭ କରି ରାଜପଥଗୁଡିକର ଉନ୍ନତିକରଣ କାର୍ଯ୍ୟରେ ମଧ୍ୟ ଉଲ୍ଲେଖନୀୟ ବିକାଶ ହୋଇପାରିଛି ।

ଆମ ଯୁବକଯୁବତୀଙ୍କୁ ସବୁବେଳେ ଅଧିକରୁ ଅଧିକ ସଂଖ୍ୟାରେ ବିଭିନ୍ନ ଖେଳରେ ଭାଗ ନେଇ ନିଜ ପରିବାର, ଆତ୍ମୀୟସ୍ୱଜନ, ରାଜ୍ୟ ତଥା ଦେଶ ପାଇଁ ଗୌରବ ଆଣିଦେବା ନିମନ୍ତେ ପ୍ରୋତ୍ସାହିତ କରା ଯାଉଛି । ବିଭିନ୍ନ ସ୍ତରରେ ସେମାନଙ୍କୁ ପ୍ରକୃଷ୍ଟ କ୍ରୀଡ଼ା ଭିତ୍ତିଭୂମି ଯୋଗାଇ ଦେବା ପାଇଁ ଉଦ୍ୟମ ଜାରି ରହିଛି । ଆମ ରାଜ୍ୟକୁ କ୍ରୀଡ଼ା କ୍ଷେତ୍ରରେ ସମଗ୍ର ବିଶ୍ୱରେ ପରିଚିତ କରାଇବା, ରାଜ୍ୟର ଖେଳାଳି ତଥା ରାଜ୍ୟବାସୀଙ୍କୁ ଆନ୍ତର୍ଜାତିକ ମାନର କ୍ରୀଡ଼ା ଅନୁଭବ ପ୍ରଦାନ କରିବା ତଥା ଓଡ଼ିଶାର ଖେଳାଳିମାନଙ୍କୁ ବିଶ୍ୱସ୍ତରୀୟ କ୍ରୀଡ଼ା ଭିତ୍ତିଭୂମି ଯୋଗାଇ ଦେବା ଲକ୍ଷ୍ୟରେ ଆମେ ସଫଳତା ହାସଲ କରିଛୁ । ଆଜି ଓଡ଼ିଶା ଦେଶର ଏକମାତ୍ର ରାଜ୍ୟ ଭାବରେ ଉଭୟ ମହିଳା ଏବଂ ପୁରୁଷ ଜାତୀୟ ହକି ଦଳର ପ୍ରାୟୋଜକ ।




ଭୁବନେଶ୍ୱର ଦେଶର କ୍ରୀଡ଼ା ରାଜଧାନୀ ଭାବରେ ଆଜି ସବୁଠି ପରିଚିତ । ସବୁ ପ୍ରସ୍ତୁତି ସହିତ ବିଶ୍ୱ ପୁରୁଷ ହକି ଟୁର୍ଣ୍ଣାମେଣ୍ଟ କଳିଙ୍ଗ ଷ୍ଟାଡିୟମ୍‌ରେ ସଫଳତାର ସହିତ ଅନୁଷ୍ଠିତ ହୋଇ ଆମ ରାଜ୍ୟକୁ କ୍ରୀଡ଼ାର ଏକ ଈର୍ଷଣୀୟ ସ୍ତରକୁ ନେଇଯାଇଛି । ଆଜି ଆମ ରାଜଧାନୀ ଭୁବନେଶ୍ୱର ବିଶ୍ୱର ପ୍ରମୁଖ କ୍ରୀଡା ନଗରୀ ଭାବେ ପରିଗଣିତ ହୋଇଛି ।

ପୃଥିବୀର ଅଧିକାଂଶ ରାଷ୍ଟ୍ର ଶିଳ୍ପ ବିକାଶ ଯୋଗୁଁ ସମୃଦ୍ଧ ହୋଇଛନ୍ତି । ଓଡ଼ିଶାରେ ଶିଳ୍ପର ବିକାଶ ଘଟୁ, ଅଧିକରୁ ଅଧିକ ପୁଞ୍ଜିନିବେଶ ପାଇଁ ନିବେଶକମାନେ ଆଗେଇ ଆସନ୍ତୁ, ରାଜ୍ୟରେ ଅଧିକ ନିଯୁକ୍ତି ସୁଯୋଗ ସୃଷ୍ଟି ହେବା ଉପରେ ଗୁରୁତ୍ୱ ଦିଆଯାଇଛି । ସରକାରଙ୍କ ପୁଞ୍ଜିନିବେଶ ପାଇଁ ଅନୁକୂଳ ବାତାବରଣ ସୃଷ୍ଟି ଯୋଗୁଁ ଓଡ଼ିଶାରେ ବ୍ୟାପକ ଶିଳ୍ପାୟନ ସମ୍ଭବ ହୋଇପାରିଛି । ଆମ ଯୁବକଙ୍କ ମଧ୍ୟରେ ବିଶ୍ୱସ୍ତରୀୟ ଦକ୍ଷତା ରହିଛି ବିକଶିତ ହେବା ପାଇଁ । ଦକ୍ଷତା ବିକାଶ ଜରିଆରେ ସେମାନଙ୍କୁ ଉପଯୁକ୍ତ ପ୍ରଶିକ୍ଷଣ ପ୍ରଦାନ କରି ସେମାନଙ୍କର ଲୁକ୍କାୟିତ ପ୍ରତିଭାର ଉପଯୁକ୍ତ ବିକାଶ କରାଇ ସେମାନଙ୍କ ପାଇଁ ନିଯୁକ୍ତି ସୁଯୋଗ ସୃଷ୍ଟି କରିବା ଲକ୍ଷ୍ୟରେ ରାଜ୍ୟ ଦ୍ରୁତ ଗତିରେ ଅଗ୍ରସର ହେଉଛି ।

ଜନକଲ୍ୟାଣ ହିଁ ସୁସ୍ଥ ଗଣତନ୍ତ୍ର ପ୍ରତିଷ୍ଠାର ମୂଳମନ୍ତ୍ର । ସବୁ ବର୍ଗର ଲୋକଙ୍କର ସାମଗ୍ରିକ କଲ୍ୟାଣକୁ ସବୁବେଳେ ପ୍ରାଥମିକତା ଦିଆଯାଉଛି । ଲୋକଙ୍କ ସଶକ୍ତିକରଣ ପାଇଁ ସଂଖ୍ୟାଧିକ କଲ୍ୟାଣକାରୀ ଯୋଜନା ପ୍ରଣୟନ କରି ସେଗୁଡ଼ିକୁ ଆନ୍ତରିକତାର ସହିତ କାର୍ଯ୍ୟକାରୀ କରାଯାଉଛି । ବିଭିନ୍ନ ଯୋଜନାର ସୁଫଳ ଅବିରତ ଲୋକଙ୍କୁ ମିଳିବାରେ ଲାଗିଛି । ସାଧାରଣ ଜୀବନଧାରଣର ମାନରେ ଦ୍ରୁତ ପରିବର୍ତ୍ତନ ପରିଲକ୍ଷିତ ହେଉଛି ।

ସରକାର ଲୋକଙ୍କ ସାଥିରେ ରହି ଲୋକଙ୍କ କଲ୍ୟାଣ ପାଇଁ କାମ କରୁଛି । ସରକାରର ଗ୍ରହଣୀୟତା ଆଜି ଲୋକଙ୍କ ନିକଟରେ ସର୍ବାଧିକ । ଯେକୌଣସି ଯୋଜନାଟିଏ ଆରମ୍ଭ କଲେ ଲୋକ ସ୍ୱତଃପ୍ରବୃତ୍ତ ଭାବରେ ସହଯୋଗ ଏବଂ ସଦିଚ୍ଛାର ହାତ ବଢ଼େଇ ଦେଉଛନ୍ତି ଏବଂ ଯୋଜନା ପ୍ରଣୟନରେ ସକ୍ରିୟ ଅଂଶଗ୍ରହଣ କରି ତା'ର ସୁଫଳ ପାଉଛନ୍ତି । ଏବେ ଯେକୌଣସି ନିଷ୍ପତ୍ତି ଗ୍ରହଣ କରିବା ସମୟରେ ଲୋକଙ୍କ ପରାମର୍ଶକୁ ଗୁରୁତ୍ୱ ଦେବାର ଏକ ନୂଆ ଯୁଗର ଆରମ୍ଭ ହୋଇଛି । ଯୋଜନା ସମ୍ପର୍କରେ ସଚେତନ କରାଇବା, ସେମାନଙ୍କ ପାଇଁ ଉଦ୍ଦିଷ୍ଟ ବିଭିନ୍ନ ସେବାକୁ ସିଧାସଳଖ ସେମାନଙ୍କ ନିକଟରେ ପହଁଚାଇବା ପାଇଁ ନିର୍ଦ୍ଦିଷ୍ଟ କାର୍ଯ୍ୟକ୍ରମ, ମହିଳାଙ୍କ ସମେତ ସବୁବର୍ଗର ଲୋକଙ୍କର ସଶକ୍ତିକରଣ ବିକାଶର ନୂଆ ଦୃଷ୍ଟିଭଙ୍ଗୀ ଆଣିଦେଇଛି । ସରକାର ଅଧିକ ଲୋକାଭିମୁଖୀ ହେବା ସହିତ ଲୋକଙ୍କ ନିକଟରେ ଏହାର ଗ୍ରହଣୀୟତା ବୃଦ୍ଧି ପାଇଛି । ଏହାହିଁ ଏକ ଗଣତାନ୍ତ୍ରିକ ବ୍ୟବସ୍ଥାରେ ପ୍ରଗତି ଏବଂ ଜନକଲ୍ୟାଣର ପ୍ରକୃତ ଅର୍ଥ ।



ସ୍ୱତନ୍ତ୍ର ପ୍ରଦେଶ ଗଠନର ୧୦୦ ବର୍ଷ ପୂର୍ତ୍ତି ଅବସରରେ ଆମ ରାଜ୍ୟ ଓଡ଼ିଶା ଭିଜନ -୨୦୩୬ ପ୍ରସ୍ତୁତ କରିଛି । ମିଳିତ ଜାତିସଂଘର ନିରନ୍ତର ବିକାଶ ଲକ୍ଷ୍ୟ **(ମିଲେନିୟମ୍ ଡେଭେଲପମେଣ୍ଟ ଗୋଲ) ୨୦୧୦-୩୦** ଏବଂ ନୀତି ଆୟୋଗର ଏ ସଂପର୍କରେ ପ୍ରସ୍ତୁତିକୁ ଭିତ୍ତି କରି ଓଡ଼ିଶା ଏ ସଂପର୍କରେ ନିଜର ପ୍ରସ୍ତୁତି ଆରମ୍ଭ କରିଦେଇଛି । ୨୦୧୭-୧୮ରୁ ୨୦୧୯-୨୦ ପର୍ଯ୍ୟନ୍ତ ୩ ବର୍ଷିଆ ଓ ୨୦୨୩-୨୪ ପର୍ଯ୍ୟନ୍ତ ୭ ବର୍ଷିଆ ଯୋଜନା ରାଜ୍ୟର ଅର୍ଥନୈତିକ ସମ୍ବଳକୁ ଭିତ୍ତିକରି ପ୍ରସ୍ତୁତି କରାଯାଉଛି ।

ଆଗାମୀ କାଲିର ଓଡ଼ିଶାରେ ରାଜ୍ୟବାସୀଙ୍କୁ ସୁସ୍ଥ ଓ ଖୁସି ରହିବା ପାଇଁ ରାଜ୍ୟ ସରକାର ବିଭିନ୍ନ ପ୍ରକାର କ୍ଷେତ୍ର ଉପରେ ଦୃଷ୍ଟି ନିବେଶ କରିଛନ୍ତି । ଦାରିଦ୍ର୍ୟ ଦୂରୀକରଣ, କୃଷି ଓ ଆନୁଷଙ୍ଗିକ କ୍ଷେତ୍ରରେ ଉତ୍ପାଦନ ବୃଦ୍ଧି, ଲିଙ୍ଗଗତ ବୈଷମ୍ୟ ଦୂର, ପରିମଳ ବ୍ୟବସ୍ଥାରେ ଉନ୍ନତି, ଜଳବାୟୁ ପରିବର୍ତ୍ତନକୁ ଦୃଷ୍ଟିରେ ରଖି ପରିବେଶ ସୁରକ୍ଷା, ପାନୀୟ ଜଳର ସାର୍ବଜନୀନ ଉପଲବ୍ଧି, ଶାନ୍ତିପୂର୍ଣ୍ଣ ସହାବସ୍ଥାନ, ସମସ୍ତଙ୍କ କାର୍ଯ୍ୟଶୈଳୀରେ ଉନ୍ନତି, ଅର୍ଥନୈତିକ ପ୍ରଗତି ସହିତ ସାମଗ୍ରିକ ଅଭିବୃଦ୍ଧିକୁ ପ୍ରାଧାନ୍ୟ ଦିଆଯାଉଛି । ଏଥି ନିମନ୍ତେ ବେସରକାରୀ ଅନୁଷ୍ଠାନ, ନାଗରିକ, ଶିକ୍ଷାବିତ୍‌ମାନଙ୍କୁ ପରାମର୍ଶଦାତା ଭାବେ ନିଆଯାଇ ବିକାଶର ଧାରାକୁ ଅଧିକ ତ୍ୱରାନ୍ୱିତ କରିବା ରାଜ୍ୟ ସରକାରଙ୍କ ଲକ୍ଷ୍ୟ ରହିଛି ।

ଓଡ଼ିଶାରେ ପର୍ଯ୍ୟଟନ ଶିଳ୍ପର ଭରପୂର ସୁଯୋଗ ରହିଛି । ସରକାର ପର୍ଯ୍ୟଟନ ଶିଳ୍ପକୁ ଗୁରୁତ୍ୱ ଦେଇ ଏହାଦ୍ୱାରା ରାଜ୍ୟର ସୌନ୍ଦର୍ଯ୍ୟ ବୃଦ୍ଧି ସହିତ ବ୍ୟାପକ ନିଯୁକ୍ତି ସୁଯୋଗ ସୃଷ୍ଟି ପାଇଁ ଲକ୍ଷ୍ୟ ରଖିଛନ୍ତି ।

ଓଡ଼ିଶାର ରାଜଧାନୀ ଆଜି ଶିକ୍ଷା ହବ୍, କ୍ରୀଡା ହବ୍ ଓ ଆଇ.ଟି ହବ୍ ପାଲଟିଛି, ଯାହାକି ଯୁବକ ଯୁବତୀମାନଙ୍କ ପାଇଁ ଜୀବନଜୀବିକା ଚୟନରେ ପ୍ରମୁଖ ଭୂମିକା ଗ୍ରହଣ କରିବ। ସେହିପରି ରାଜଧାନୀ ଭୁବନେଶ୍ୱରରେ ପୁରୁଷ ହକି ବିଶ୍ୱ କପ୍‌ର ଆୟୋଜନ ରାଜ୍ୟର କ୍ରୀଡାପ୍ରେମୀଙ୍କୁ ଉତ୍ସାହିତ କରିଛି।

ଆମ ପ୍ରିୟ ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ନବୀନ ପଟ୍ଟନାୟକଙ୍କ ପରିଚାଳିତ ସରକାର ଯେପରି ଭାବେ ଦୁର୍ନୀତିମୁକ୍ତ ଓ ସ୍ୱଚ୍ଛ ପ୍ରଶାସନକୁ ଗୁରୁତ୍ୱ ଦେଇ କାର୍ଯ୍ୟ କରିବା ପାଇଁ ଆହ୍ୱାନ ଦେଇଛି, ତାହା ଯୁବ ପିଢି ଓ ଅନ୍ୟମାନଙ୍କ ପାଇଁ ଆଦର୍ଶ ହୋଇଛି ଓ ଏହା ଓଡ଼ିଶାର ବିକାଶ ପାଇଁ ହୋଇଛି ମୂଳ ପୁଞ୍ଜି। ଆଗାମୀ କାଲିର ନୂଆ ଓଡ଼ିଶା ଆମର ଐତିହ୍ୟ, ଓଡିଆ ଭାଷା, ସାହିତ୍ୟ, ସଂସ୍କୃତିର ବିକାଶ ସହିତ ସ୍ଥିରତା ଏବଂ ନିରନ୍ତର ବିକାଶର ବାର୍ତ୍ତା ବହନ କରି ସମସ୍ତଙ୍କ ଭିତରେ ସମ୍ମାନର ସହ ବଞ୍ଚିବାର ଆଶା ସଂଚାର କରିଛି।





# ପଞ୍ଚାୟତିରାଜ ଓ ମୋ' ସ୍ୱପ୍ନର ଭାରତବର୍ଷ

**ବିଜୁ ପଟ୍ଟନାୟକ**

ଷଷ୍ଠ ଦଶକରେ ସେତେବେଳର ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ କହିଥିଲେ ସରପଞ୍ଚ ହେଉଛି ପଞ୍ଚାୟତିରାଜର ମୁଖ୍ୟମନ୍ତ୍ରୀ । ଗ୍ରାମାଞ୍ଚଳର ବିକାଶକୁ ତ୍ୱରାନ୍ୱିତ କରିବା ପାଇଁ ସେ ପଞ୍ଚାୟତ ପଞ୍ଚାୟତ ଭିତରେ ଉନ୍ନୟନ କ୍ଷେତ୍ରରେ ପ୍ରତିଯୋଗିତା ମୂଳକ ମନୋଭାବ ସୃଷ୍ଟି କରିଥିଲେ । ସର୍ବୋତ୍କୃଷ୍ଟ ବିବେଚିତ ଗ୍ରାମପଞ୍ଚାୟତ ସମିତି ପାଇଁ ଜିଲ୍ଲାସ୍ତରରେ ଆକର୍ଷଣୀୟ ପୁରସ୍କାର ବ୍ୟବସ୍ଥା କରାଯାଇଥିଲା ।



ଦ୍ୱିତୀୟବାର ମୁଖ୍ୟମନ୍ତ୍ରୀ ଆସନରେ ଅଧିଷ୍ଠିତ ହେବାପରେ ଶ୍ରୀ ବିଜୁ ପଟ୍ଟନାୟକ ପଞ୍ଚାୟତିରାଜ ଅନୁଷ୍ଠାନଗୁଡ଼ିକ ସକ୍ରିୟ କରିବାକୁ ଉଦ୍ୟମ ଆରମ୍ଭ କଲେ । ନିର୍ବାଚନରେ ମହିଳାମାନଙ୍କ ପାଇଁ ସ୍ୱତନ୍ତ୍ର ଭାବରେ ସ୍ଥାନ ସଂରକ୍ଷଣ କରାଯିବାରୁ ୨୭ ହଜାର ମହିଳା ନିର୍ବାଚିତ ପ୍ରତିନିଧି ହେବାର ଗୌରବ ହାସଲ କଲେ । ଗ୍ରାମପଞ୍ଚାୟତରେ ସରପଞ୍ଚ ପୁରୁଷ ଥିଲେ ମହିଳା ନାୟବ ସରପଞ୍ଚ ଏବଂ ପଞ୍ଚାୟତିରାଜ ସମିତିରେ ପୁରୁଷ ଚେୟାରମ୍ୟାନ ଥିଲେ, ମହିଳା ଭାଇସ୍ ଚେୟାରମ୍ୟାନ୍ ରହିବା ପାଇଁ ଆଇନ ପ୍ରଣୟନ କରାଗଲା । ଗ୍ରାମାଞ୍ଚଳର ବିକାଶ ପାଇଁ ଆଇନ ପ୍ରଣୟନ କରାଗଲା । ଗ୍ରାମାଞ୍ଚଳର ବିକାଶ ପାଇଁ ପ୍ରାଥମିକ ଶିକ୍ଷା, ସ୍ୱାସ୍ଥ୍ୟ, ବନୀକରଣ, ପୁଷ୍ଟିକର ଖାଦ୍ୟ ଯୋଗାଣ, ଅତ୍ୟାବଶ୍ୟକ ସାମଗ୍ରୀ ବଣ୍ଟନ କ୍ଷେତ୍ରରେ ମହିଳା ପ୍ରତିନିଧିମାନଙ୍କୁ ଦାୟିତ୍ୱରେ ରଖିବା ପାଇଁ ସେ ନିର୍ଦ୍ଦେଶ ଦେଲେ ।

୧୯୯୩ ମାର୍ଚ୍ଚ ୫ ତାରିଖ ଦିନ ତାଙ୍କ ଜନ୍ମ ଦିନରେ ରାଜଧାନୀ ଭୁବନେଶ୍ୱରରେ ରାଜ୍ୟସ୍ତରୀୟ ପଞ୍ଚାୟତିରାଜ ଦିବସ ପାଳିତ ହୋଇଥିଲା । ଏହି ସମାରୋହରେ ଓଡ଼ିଶାର ପୁରପଲ୍ଲୀରୁ ସମବେତ ହୋଇଥିବା ପଞ୍ଚାୟତିରାଜ ଅନୁଷ୍ଠାନଗୁଡ଼ିକର ନିର୍ବାଚିତ ପ୍ରତିନିଧିମାନଙ୍କୁ ଉଦ୍‌ବୋଧନ ଦେଇ ସେ କହିଥିଲେ ଏହି ଅନୁଷ୍ଠାନଗୁଡ଼ିକୁ ଅଧିକ ଦକ୍ଷ, ସକ୍ରିୟ ଓ ମଜଭୁତ୍ ନ କଲେ ଉନ୍ନୟନମୂଳକ ଯୋଜନା କାର୍ଯ୍ୟକାରୀ କରିବା କ୍ଷେତ୍ରରେ ଜନ ସହଯୋଗ ମିଳିବା କଷ୍ଟକର ହେବ ।

ସେଠାରେ ସ୍ୱର୍ଗୀୟ ପଟ୍ଟନାୟକଙ୍କର ଅଭିଭାଷଣ ନିମ୍ନରେ ପ୍ରଦତ୍ତ ହେଲା –

ପଞ୍ଚାୟତ ସମିତି ଓ ଗ୍ରାମ ପଞ୍ଚାୟତ ସଭ୍ୟ, ସଭ୍ୟାବୃନ୍ଦ !

ବହୁତ ଦିନ ତଳେ ମୁଁ ଗୋଟିଏ ନୂଆ ଭାରତବର୍ଷର ସ୍ୱପ୍ନ ଦେଖୁଥିଲି । ମୋ ସ୍ୱପ୍ନର ଭାରତରେ ଗଣତନ୍ତ୍ର କେଇଜଣ

କୁହାଳିଆ ବା ତଥାକଥିତ ବୁଦ୍ଧିଜୀବୀଙ୍କ ବିଳାସ ହୋଇ ରହି ନଥାନ୍ତା । ମୁଁ ସ୍ୱପ୍ନ ଦେଖୁଥିଲି ଏପରି ଏକ ଭାରତବର୍ଷ ଯେଉଁଠାରେ ଗଣତନ୍ତ୍ର କେବଳ ନିର୍ବାଚନସର୍ବସ୍ୱ ହେବ ନାହିଁ । ଏହା ହେବ ଲୋକଙ୍କୁ ପ୍ରତ୍ୟେକ କ୍ଷେତ୍ରରେ ଘନିଷ୍ଠଭାବେ ଜଡ଼ିତ କରାଇବାର ଏକ ମାଧ୍ୟମ । ଗାଁଗଣ୍ଡା ହେଉଛି ଭାରତର ଆତ୍ମା । ମୋ ସ୍ୱପ୍ନର ଭାରତରେ ଗାଁ ଗହଳିରୁ ହିଁ ଗଣତନ୍ତ୍ର ଆରମ୍ଭ ହୋଇ କ୍ରମଶଃ ଉପରକୁ ପ୍ରସାରିତ ହୋଇଥାନ୍ତା ।

୩୨ ବର୍ଷ ତଳେ ମୋତେ ଓଡ଼ିଶାର ଜନସାଧାରଣଙ୍କ ଅଭୂତପୂର୍ବ ସମର୍ଥନ ମିଳିଥିଲା । ସେତେବେଳେ ମୁଁ ଗଣତନ୍ତ୍ରରେ ଲୋକଙ୍କୁ ସଂଶ୍ଳିଷ୍ଟ କରି ରାଜ୍ୟର ପ୍ରତ୍ୟେକଟି ଗ୍ରାମକୁ ନୂଆକରି ଗଢ଼ିବାର ପ୍ରକ୍ରିୟା ଆରମ୍ଭ କରିଥିଲି । ଏଥିପାଇଁ ଅନେକଗୁଡ଼ିଏ କାର୍ଯ୍ୟକ୍ରମ ହାତକୁ ନିଆଯାଇଥିଲା ଏବଂ ଲୋକଙ୍କ ହାତରେ କ୍ଷମତା ଓ ଦାୟିତ୍ୱ ଦେବା ପାଇଁ ଅନେକ ନୂଆ ଆଇନ ମଧ୍ୟ ତିଆରି କରାଯାଇଥିଲା । ଷଷ୍ଠ ଦଶକରେ ରାଜନୈତିକ ଝଡ଼ଝଞ୍ଜାରେ ସେହି ସ୍ୱପ୍ନକୁ ସାକାର କରିବାର କାର୍ଯ୍ୟ ଅସମାପ୍ତ ରହିଯାଇଥିଲା । ଆଜି ମୁଁ ଯେତେବେଳେ ପଛକୁ ଫେରି ଚାହୁଁଛି, ମୋତେ କିଛିଟା ହତାଶା, କିଛିଟା ବାକି ରହିଥିବା କାମ ଓ କିଛିଟା ପୂରା ହୋଇ ନଥିବା ପ୍ରତିଶ୍ରୁତି ଅସ୍ତବ୍ୟସ୍ତ କରୁଛି ।

ଆପଣମାନଙ୍କର ନାହିଁ ନଥିବା ସମର୍ଥନ ପାଇ ଦ୍ୱିତୀୟ ଥର ପାଇଁ ଆମେ ସମସ୍ତେ ଆମର ଜୟଯାତ୍ରା ଆରମ୍ଭ କରିଛୁଁ । ଗ୍ରାମପଞ୍ଚାୟତ ଓ ପଞ୍ଚାୟତ ସମିତି ସମ୍ପର୍କରେ ପ୍ରଚଳିତ ଆଇନଗୁଡ଼ିକୁ ସଂଶୋଧନ କରାଯାଇ ତ୍ରିସ୍ତରୀୟ ବ୍ୟବସ୍ଥା ପ୍ରବର୍ତ୍ତନ କରିବା ପାଇଁ ଏକ ସମ୍ପୂର୍ଣ୍ଣ ନୂଆ ଆଇନ ପ୍ରଣୟନ କରାଯାଇଛି । ଗ୍ରାମପଞ୍ଚାୟତ ଓ ପଞ୍ଚାୟତ ସମିତିଗୁଡ଼ିକ ପାଇଁ ନିର୍ବାଚନ ଶେଷ ହୋଇଛି । ଜିଲ୍ଲା ପରିଷଦ ପାଇଁ ଖୁବ୍ ଶୀଘ୍ର ନିର୍ବାଚନ କରାଯିବ ।

ସେ ସମୟ ଓ ଆଜି ଭିତରେ ଅନେକଟା ତଫାତ୍ ଆପଣମାନେ ଲକ୍ଷ୍ୟ କରୁଥିବେ । ଏହି ପରିବର୍ତ୍ତନର ଆହ୍ୱାନ ହେଉଛି – ପଞ୍ଚାୟତିରାଜ ଅନୁଷ୍ଠାନଗୁଡ଼ିକୁ ଅଧିକ ପ୍ରତିନିଧିମୂଳକ କରିବା, ସେଗୁଡ଼ିକୁ ଅଧିକ କାର୍ଯ୍ୟକାଳ ଦେବା ଓ ସେଥିପାଇଁ ଅଧିକ ସମ୍ବଳର ବ୍ୟବସ୍ଥା କରିବା । କାରଣ ଆମର ଅନୁଷ୍ଠାନଗୁଡ଼ିକ ଅଧିକ ଦକ୍ଷ, ସକ୍ରିୟ ଓ ମଜଭୁତ୍ ନହେଲେ ଉନ୍ନୟନ ଯୋଜନା କରିବା ଓ ଜନସହଯୋଗ ମାଧ୍ୟମରେ ସେଗୁଡ଼ିକୁ ଠିକ୍ ରୂପେ କାର୍ଯ୍ୟକାରୀ କରାଇବା ମୁସ୍କିଲ ହେବ । ଏହି ପରିବର୍ତ୍ତନ ମାଧ୍ୟମରେ ଆମେ ବଡ଼ବଡ଼ କଥା ଅପେକ୍ଷା ପ୍ରକୃତ କାମ କରିପାରିବା । ଆମେ କେବଳ କାମ ହିଁ ଚାହୁଁ । ଆପଣମାନଙ୍କ ଭିତରୁ ଅନେକ ପ୍ରଶ୍ନ କରୁଛନ୍ତି – ମୋର କ୍ଷମତା କ'ଣ ? ମୋର କାମ କ'ଣ ? କୌଣସି ବ୍ୟକ୍ତିବିଶେଷକୁ କ୍ଷମତା ଦିଆଯାଏ ନାହିଁ । କ୍ଷମତା ଦିଆଯାଏ ଏକ ପ୍ରତିନିଧିମୂଳକ ବ୍ୟବସ୍ଥାକୁ । ପଞ୍ଚାୟତିରାଜ ବ୍ୟବସ୍ଥା ଏକ ପ୍ରତିନିଧିମୂଳକ ବ୍ୟବସ୍ଥା ହୋଇଥିବାରୁ ସ୍ୱାସ୍ଥ୍ୟ, ଶିକ୍ଷା, ସମାଜ ମଙ୍ଗଳ, ଦାରିଦ୍ର୍ୟ ଦୂରୀକରଣ, ବୃକ୍ଷରୋପଣ, ପରିବେଶ, କୃଷି, ପଶୁପାଳନ, ଜଳସେଚନ ଏବଂ ରାସ୍ତାଘାଟ ଆଦି ବିଷୟରେ ନିଷ୍ପତ୍ତି ନେବାର କ୍ଷମତା ଏହି ସଂସ୍ଥା ଉପରେ ନ୍ୟସ୍ତ କରାଯାଇଛି । ଏହି ସମ୍ମିଳନୀ ଉପଲକ୍ଷେ ଆପଣମାନଙ୍କୁ ଯେଉଁ ପୁସ୍ତିକା ସବୁ ଦିଆଯାଇଛି, ସେଥିରୁ ଭଲ ଭାବେ ଜଣାଯିବ ଯେ, ଯୋଜନା ତିଆରି କରିବା, ତାକୁ କାର୍ଯ୍ୟକାରୀ କରିବା ଏବଂ ଏ ସମସ୍ତ କାର୍ଯ୍ୟକୁ ତଦାରଖ ଓ ତଦ୍‌ବିର କରିବାର ଦାୟିତ୍ୱ ସବୁ ଆପଣମାନଙ୍କର ।

ଆପଣମାନେ ଯଦି ଏହି କ୍ଷମତାକୁ ବିଜ୍ଞତାର ସହିତ ବ୍ୟବହାର କରନ୍ତି, ତା'ହେଲେ ପଞ୍ଚାୟତିରାଜ ବ୍ୟବସ୍ଥା ମଜଭୁତ୍ ହେବ । କ୍ଷମତା ସାଙ୍ଗକୁ ଆମେ ସମ୍ବଳ ମଧ୍ୟ ହସ୍ତାନ୍ତର କରିବୁ । ରାଜ୍ୟସ୍ତରରୁ କିଭଳି ଭାବେ ପଞ୍ଚାୟତିରାଜ ଅନୁଷ୍ଠାନମାନଙ୍କୁ ସମ୍ବଳ ଦିଆଯାଇପାରିବ ସେ ବିଷୟରେ ଏକ ସ୍ୱତନ୍ତ୍ର ଅର୍ଥ କମିଶନ୍ ଟିକିନିଖି କରି ପରୀକ୍ଷା ନିରୀକ୍ଷା କରୁଛନ୍ତି । ଏହାର ସୁପାରିଶଗୁଡ଼ିକ ଖୁବ୍ ଶୀଘ୍ର ମିଳିଯିବ । ସମ୍ବଳକୁ ଚାହିଁ ପଞ୍ଚାୟତିରାଜ ଅନୁଷ୍ଠାନମାନଙ୍କର ଦାୟିତ୍ୱ ମଧ୍ୟ ନିର୍ଦ୍ଧାରଣ କରାଯିବ ।

ଶାସନ ବ୍ୟବସ୍ଥାର ପ୍ରକୃତ ବିକେନ୍ଦ୍ରୀକରଣ ପାଇଁ ମହିଳାମାନଙ୍କୁ ସଂଶ୍ଳିଷ୍ଟ କରାଇବା ଉପରେ ମୁଁ ସଦାବେଳେ ଜୋର୍ ଦେଇଆସିଛି । ନାରୀମାନଙ୍କର ସୃଜନଶୀଳତା ଓ ଶକ୍ତିକୁ ଉପଯୋଗ କରି ତାଙ୍କର ସ୍ୱତନ୍ତ୍ର ସମସ୍ୟାଗୁଡ଼ିକର ସମାଧାନ ପାଇଁ ଏ ଯାବତ୍ କୌଣସି ବିଧିବଦ୍ଧ ଉଦ୍ୟମ ଆରମ୍ଭ ହୋଇନାହିଁ । ସେମାନେ ଏ ପର୍ଯ୍ୟନ୍ତ ସମାଜ ଓ ଶାସନର ମୁଖ୍ୟ ସ୍ରୋତକୁ ଆସିପାରି ନାହାନ୍ତି । ପୁରୁଷପ୍ରଧାନ ସମାଜରେ

ସେମାନଙ୍କ ସମସ୍ୟାପ୍ରତି ଯଥାର୍ଥ ଧ୍ୟାନ ଦିଆଯାଇ ନାହିଁ । ସେମାନଙ୍କଠାରେ ଥିବା ଅନ୍ୟକୁ ପ୍ରବର୍ତ୍ତାଇବା, ସହୃଦୟତା ଓ ସମ୍ବେଦନଶୀଳତା ପ୍ରଭୃତି ଗୁଣଗୁଡ଼ିକ ପଞ୍ଚାୟତିରାଜ ଅନୁଷ୍ଠାନଗୁଡ଼ିକର ଗୁଣାତ୍ମକମାନ ନିଶ୍ଚିତଭାବେ ବୃଦ୍ଧି କରିବ । ବିଶେଷ କରି ଶିକ୍ଷା, ସ୍ୱାସ୍ଥ୍ୟ, ବୃକ୍ଷରୋପଣ, ପରିବାର କଲ୍ୟାଣ, ମା' ଓ ଶିଶୁର ସ୍ୱାସ୍ଥ୍ୟରକ୍ଷା ଓ ପରିବେଶ ବିକାଶ ଭଳି କାମଗୁଡ଼ିକ ସେମାନଙ୍କ ଉପରେ ନ୍ୟସ୍ତ କରାଯିବା ଆବଶ୍ୟକ । ମୁଁ ଚାହେଁ, ଉପରୋକ୍ତ ବିଷୟଗୁଡ଼ିକ ପାଇଁ ଯେଉଁ ଷ୍ଟାଣ୍ଡିଂ କମିଟି ରହିବ, ତା'ର ନେତୃତ୍ୱ ମହିଳାମାନେ ନିଅନ୍ତୁ । ତାଙ୍କୁ ପୂର୍ଣ୍ଣ ସୁଯୋଗ ଦିଆଯାଉ ।

ମୁଁ ଏ କଥା ୧୯୬୧ରେ କହିଥିଲି, ଆଜି ମଧ୍ୟ କହୁଛି ଯେ, ଆମେ ସମାଜର ତଳସ୍ତରରେ ନେତା ଓ ନେତ୍ରୀ ଗଢ଼ିବା ପାଇଁ ଉଦ୍ୟମ କରୁଛୁ । ଏହା ଏକ ସହଜସାଧ୍ୟ ବ୍ୟାପାର ନୁହେଁ । ଏହି ଗଣଆନ୍ଦୋଳନକୁ ଆମେ କିଛି ରୂପ, କିଛି ଦିଗ୍‌ଦର୍ଶନ ଏବଂ କିଛି କର୍ତ୍ତୃତ୍ୱ ଦେଉଛୁଁ । ସୁନ୍ଦର ଭବିଷ୍ୟତକୁ ଆଖି ଆଗରେ ରଖି ଅଧିକ ସମ୍ବେଦନଶୀଳତା ଓ ଦୂରଦର୍ଶିତା ସହ ଆମକୁ ଚିନ୍ତା କରିବାକୁ ହେବ । ଆମେ ଗୋଟିଏ ନୂଆ ଶିଶୁ ଗଢୁଛୁଁ – ଏକ ଗଣତାନ୍ତ୍ରିକ ଶିଶୁ, ଯାହାର ଚିନ୍ତାରେ ଓ କାର୍ଯ୍ୟରେ ନେତୃତ୍ୱର ବିକାଶ ଘଟିବ । ଲୋକଙ୍କ ଭିତରେ ଯେଉଁ ସୁପ୍ତ ଶକ୍ତି ରହିଛି, ପଞ୍ଚାୟତି ବ୍ୟବସ୍ଥା ମାଧ୍ୟମରେ ତାକୁ ଜାଗ୍ରତ କରିବାକୁ ହେବ, ବିକଶିତ କରିବାକୁ ହେବ ।

ଆମର ସାମୂହିକ ବିଜ୍ଞତା ଦ୍ୱାରା ଆମେ ସମୟକ୍ରମେ ଏପରି ବାଟ ବାହାର କରିବା ଯଦ୍ୱାରା ଜନସାଧାରଣଙ୍କର ବିଶ୍ୱାସ ଓ ନେତୃତ୍ୱକୁ ଆଧାର କରି ବର୍ତ୍ତମାନର ପ୍ରଶାସନିକ ବ୍ୟବସ୍ଥା ଦ୍ୱାରା ସମ୍ଭବ ହେଉଥିବା କାର୍ଯ୍ୟଠାରୁ ବହୁ ଅଧିକ ସଫଳତା ହାସଲ କରାଯାଇପାରିବ ।

ସବୁଠାରେ ଦୋଷ ତ୍ରୁଟି ଅଛି ଏବଂ ରହିବ । ମଣିଷର ଚରିତ୍ର ଓ ପ୍ରକୃତିକୁ ମୁଁ ଯାହା ବୁଝିଛି, ଏଥିରେ କିଛି ଅସ୍ୱାଭାବିକତା ନାହିଁ । ଆମେ ଏଭଳି ଏକ ଶାସନ ଢାଞ୍ଚା ତିଆରି କରିବା ଯେଉଁଥିରେ କି ପ୍ରତ୍ୟେକ ସ୍ତ୍ରୀ, ପୁରୁଷ, ବଡ଼ ହେଉ କି ଛୋଟ ହେଉ, ଉତ୍କୃଷ୍ଟ ହେଉ କି ନିକୃଷ୍ଟ ହେଉ, ନିଜ ପ୍ରତିଭା ବିକାଶ ପାଇଁ ସୁଯୋଗ ପାଇବେ । ଚୀନ ଦାର୍ଶନିକ ତାଇ ଚୁଙ୍ଗ କହିଥିଲେ, 'ଯଦି ଆମେ କୌଣସି ଏକ କାର୍ଯ୍ୟକୁ ତ୍ରୁଟିଶୂନ୍ୟ ଭାବେ କରିବାକୁ ବସିବା, ଆମକୁ ଅନନ୍ତକାଳ ପାଇଁ ଅପେକ୍ଷା କରିବାକୁ ହେବ ।' ଆମ ହାତରେ ସମୟ ନାହିଁ । ଗଲା ତିରିଶ ବର୍ଷ ଭିତରେ ଅନେକ କିଛି ସୁଯୋଗ ଆମର ହାତଛଡ଼ା ହୋଇଯାଇଛି । ତେଣୁ ଆମକୁ ଆଜି ସଙ୍କଳ୍ପ ନେବାକୁ ହେବ – ବିଜ୍ଞତା, ଦୂରଦୃଷ୍ଟି, କରୁଣା ଓ ଉତ୍ତମ ବୁଝାମୁଣାକୁ ପୁଞ୍ଜି କରି ଆମେ ଆମ ନିଜର ସମସ୍ୟା ସମାଧାନର ରାସ୍ତା ବାହାର କରିବା ।



# ଗ୍ରାମସଭା : ତୃଣମୂଳ ସ୍ତର ଗଣତନ୍ତ୍ରର ଚାବିକାଠି

ଅମିତା ପାତ୍ର

ଆମ ଦେଶରେ ୭୩ତମ ସମ୍ବିଧାନ ସଂଶୋଧନ ଆଇନ, ଶାସନ ବ୍ୟବସ୍ଥାର ବିକେନ୍ଦ୍ରୀକରଣ, ଗ୍ରାମାଞ୍ଚଳର ଯୋଜନା ଓ ବିକାଶ ଇତିହାସରେ ଏକ ମାଇଲଖୁଣ୍ଟ କହିଲେ ଅତ୍ୟୁକ୍ତି ହେବ ନାହିଁ । ପଞ୍ଚାୟତିରାଜ ବ୍ୟବସ୍ଥାର ପୁନର୍ବିନ୍ୟାସ କରାଯାଇ ଗ୍ରାମାଞ୍ଚଳରେ ବସବାସ କରୁଥିବା ଲୋକମାନଙ୍କର ସାମାଜିକ ତଥା ଆର୍ଥିକ ସ୍ଥିତିରେ ଉନ୍ନତି ଆଣିବା ଥିଲା ଏହି ଆଇନର ମୂଳଲକ୍ଷ୍ୟ । ପ୍ରତ୍ୟେକ ଗ୍ରାମପଞ୍ଚାୟତରେ ସମସ୍ତ ଭୋଟରଙ୍କୁ ନେଇ ଗ୍ରାମସଭା ଗଠନ କରିବା ବ୍ୟବସ୍ଥାକୁ ବୈଧାନିକ ମାନ୍ୟତା ପ୍ରଦାନ କରାଯାଇଛି । ଗ୍ରାମପଞ୍ଚାୟତ ସ୍ତରରେ ପ୍ରତିନିଧିମାନଙ୍କ ନିମନ୍ତେ ପ୍ରତ୍ୟକ୍ଷ ନିର୍ବାଚନ, ତଫସିଲଭୁକ୍ତ ଜାତି, ଉପଜାତି ଓ ମହିଳାମାନଙ୍କ ପାଇଁ ସ୍ଥାନ ସଂରକ୍ଷଣ, ପଞ୍ଚାୟତ ଅନୁଷ୍ଠାନଗୁଡ଼ିକୁ ସ୍ୱୟଂଶାସିତ କରିବା ପାଇଁ ଅଧିକ କ୍ଷମତା ପ୍ରଦାନ ଆଦି ଏହି ଆଇନର କେତେକ ଉଲ୍ଲେଖନୀୟ ପଦକ୍ଷେପ । ତେବେ ଏଥିମଧ୍ୟରୁ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ପ୍ରସଙ୍ଗଟି ହେଲା 'ଗ୍ରାମସଭା' ।

ଗ୍ରାମସଭା ଓ ଓଡ଼ିଶା ପରିପ୍ରେକ୍ଷୀରେ ପଲ୍ଲୀସଭାକୁ ତ୍ରିସ୍ତରୀୟ ପଞ୍ଚାୟତି ରାଜ ବ୍ୟବସ୍ଥାର ମୂଳପିଣ୍ଡ ବୋଲି କୁହାଯାଏ । ସଂଘୀୟ ଶାସନରେ ଗ୍ରାମସଭା, ଯଦି ଲୋକମାନଙ୍କ ସକ୍ରିୟ ସହଭାଗିତାରେ ଦାୟିତ୍ୱପୂର୍ଣ୍ଣ ଭାବେ କାମ କରେ ତେବେ ଦେଶରେ ପ୍ରକୃତ ଗଣତନ୍ତ୍ରର ପ୍ରତିଷ୍ଠା ହୋଇପାରିବ । ଗ୍ରାମସଭାକୁ ଅଧିକ କ୍ରିୟାଶୀଳ ଓ କ୍ଷମତା ସଂପନ୍ନ କରିବା ପାଇଁ ସରକାର ୨୦୦୯-୧୦ ମସିହାକୁ 'ଗ୍ରାମସଭାର ବର୍ଷ' ରୂପେ ବିବେଚନା କରିଛନ୍ତି । ଅତୀତର ଅଭିଜ୍ଞତାକୁ ସମୀକ୍ଷା କଲେ ଜଣାପଡ଼େ ଯେ, ଆଜି ପର୍ଯ୍ୟନ୍ତ ସର୍ବସାଧାରଣଙ୍କୁ ଦେଶର ଶାସନ କଳରେ ସିଧାସଳଖ ସାମିଲ କରିବା ପାଇଁ ଅନବରତ ଚେଷ୍ଟା କରାଯାଇଥିଲେ ମଧ୍ୟ ବାସ୍ତବ କ୍ଷେତ୍ରରେ ତାହା କାର୍ଯ୍ୟକାରୀ ହୋଇପାରିନି । ଅନେକ କ୍ଷେତ୍ରରେ ଗ୍ରାମସଭା ଓ ପଲ୍ଲୀସଭା ଏବଂ ପଲ୍ଲୀସଭା କେବଳ ରେକର୍ଡ଼ ପତ୍ରରେ ସୀମିତ ରହୁଛି ବୋଲି ଅଭିଯୋଗ ହେଉଛି । ଯେଉଁଠି ବି ଗ୍ରାମସଭା ଓ ପଲ୍ଲୀସଭା ହେଉଛି ସେଠାରେ ଏହାର ପ୍ରଚାର ଓ ପ୍ରସାର ଯଥେଷ୍ଟ ପୂର୍ବରୁ ହେଉ ନ ଥିବାରୁ ଖୁବ୍ କମ୍ ସଂଖ୍ୟକ ଲୋକ ଏଥିରେ ଯୋଗଦାନ କରୁଛନ୍ତି । ମହିଳା ଓ ଦୁର୍ବଳ ଶ୍ରେଣୀର ଲୋକମାନଙ୍କ ସ୍ଥାନୀୟ ସ୍ତରରେ ନିଷ୍ପତ୍ତି ଗ୍ରହଣ ପ୍ରକ୍ରିୟାରେ ସହଭାଗିତା ରହୁନି । ବୈଠକର ଆଲୋଚ୍ୟ ବିଷୟ ଗ୍ରାମ/ପଲ୍ଲୀର ସର୍ବାଙ୍ଗୀନ ଉନ୍ନତି ସଂପର୍କରେ ନ ହୋଇ କେତେକ ନିର୍ଦ୍ଦିଷ୍ଟ ଉନ୍ନୟନମୂଳକ କାର୍ଯ୍ୟକ୍ରମ ଓ କେତେକ ବ୍ୟକ୍ତିକୈନ୍ଦ୍ରିକ ହିତାଧିକାର ଯୋଜନା ମଧ୍ୟରେ ସୀମିତ ରହୁଛି । ଏହିଭଳି ଅନେକ ସମସ୍ୟା ଘେରରେ ଆମର ପଞ୍ଚାୟତିରାଜ ବ୍ୟବସ୍ଥା ସର୍ବନିମ୍ନ ସୋପାନରେ ଥିବା ଅନୁଷ୍ଠାନଟି ଅବହେଳିତ ହୋଇ ରହିଛି । ଗ୍ରାମସଭାକୁ ସୁଦୃଢ଼ କରିବା ନିମନ୍ତେ ସର୍ବସାଧାରଣଙ୍କ ମଧ୍ୟରେ ସଚେତନତା ସୃଷ୍ଟି କରିବା ସହ ସ୍ୱଚ୍ଛତା ଅବଲମ୍ବନ କରିବା ନିହାତି ଜରୁରୀ ।

ଆମ ଓଡ଼ିଶାରେ 'ପଲ୍ଲୀସଭା' ହିଁ ପ୍ରତ୍ୟକ୍ଷ ତୃଣମୂଳ ଗଣତନ୍ତ୍ରର ଏକ ପ୍ରକୃଷ୍ଟ ନମୁନା ଓ ଏକ ଅନନ୍ୟ ଉଦାହରଣ । ଗ୍ରାମରେ ଥିବା ପ୍ରତ୍ୟେକ ରାଜସ୍ୱ ମୌଜାକୁ ନେଇ ଗୋଟିଏ ଗୋଟିଏ ପଲ୍ଲୀସଭା ଗଠନ କରାଯାଏ । ଯଦି ଗୋଟିଏ ୱାର୍ଡ଼ରେ ଏକାଧିକ ରାଜସ୍ୱ ମୌଜା ଥାଆନ୍ତି ତେବେ ସେ କ୍ଷେତ୍ରରେ ଏକାଧିକ ପଲ୍ଲୀସଭା ହୁଏ ନାହିଁ । ଗୋଟିଏ ପଲ୍ଲୀସଭା ଅଞ୍ଚଳର

ଭୋଟର ତାଲିକାରେ ଥିବା ସମସ୍ତ ଲୋକ ସେହି ପଲ୍ଲୀସଭାର ସଦସ୍ୟ ରହନ୍ତି । ଗୋଟିଏ ଗ୍ରାମପଞ୍ଚାୟତ ଅଧୀନରେ ଥିବା ସମସ୍ତ ସାବାଳକ ନାଗରିକ/ଭୋଟର ତାଲିକାଭୁକ୍ତ, ବ୍ୟକ୍ତିଙ୍କୁ ନେଇ ଗ୍ରାମ ଶାସନ । ଏହି ସଭ୍ୟମାନଙ୍କ ବୈଠକକୁ ଗ୍ରାମସଭା କୁହାଯାଏ ।

ଓଡ଼ିଶା ଗ୍ରାମସରପଞ୍ଚ ନିୟମାବଳୀ ଅନୁସାରେ ପଲ୍ଲୀସଭାର ସାଧାରଣ ବୈଠକକୁ ଗ୍ରାମପଞ୍ଚାୟତ ଡକାଇଥାଏ । ଏହି ବୈଠକ ପ୍ରତିବର୍ଷ ଫେବୃଆରୀ ମାସରେ ବସିଥାଏ । ଏହି ନିୟମିତ ବୈଠକ ଛଡ଼ା ସ୍ୱତନ୍ତ୍ର ପଲ୍ଲୀସଭା ବୈଠକ ବର୍ଷରେ ଯେ କୌଣସି ସମୟରେ ବସିପାରେ । ଏଥିପାଇଁ ଗ୍ରାମପଞ୍ଚାୟତ ତରଫରୁ ବା ପଲ୍ଲୀସଭାର ଏକ ପଞ୍ଚମାଂଶ ସଭ୍ୟସଭ୍ୟା ସରପଞ୍ଚଙ୍କୁ ବୈଠକ ଡକାଇବାର ୩୦ ଦିନ ପୂର୍ବରୁ ଏକ ଲିଖିତ ଆବେଦନ କରିପାରନ୍ତି । ଯଦି ସ୍ଥିର ହୋଇଥିବା ତାରିଖରେ ଗ୍ରାମପଞ୍ଚାୟତ ବୈଠକ ଡକାଇ ନପାରିଲା ତେବେ ସଭ୍ୟମାନେ ନିଜେ ଠିକ୍ କରିଥିବା ତାରିଖ ଓ ସ୍ଥାନରେ ବୈଠକ ଡକାଇ ପାରିବେ । ସେହିଭଳି ଗ୍ରାମସଭାର ନିୟମିତ ବୈଠକ ଗୋଟିଏ ବର୍ଷ ମଧ୍ୟରେ ଅତିକମ୍‌ରେ ଦୁଇ ଥର ଫେବୃଆରୀ ଓ ଜୁନ୍ ମାସରେ ଡାକିବାର ନିୟମ ଅଛି । ଗ୍ରାମସଭାର ସ୍ୱତନ୍ତ୍ର ବୈଠକକୁ ସରପଞ୍ଚ ଜିଲ୍ଲାପାଳ ବା କୌଣସି ବ୍ୟକ୍ତି ଆବଶ୍ୟକତା ଅନୁସାରେ ଡକାଇ ପାରିବେ । ଓଡ଼ିଶା ସରକାରଙ୍କ ନିର୍ଦ୍ଦେଶନାମା ଅନୁସାରେ ପ୍ରତିବର୍ଷର ଦୁଇଟି ଗ୍ରାମସଭା ଛଡ଼ା ଜାନୁଆରୀ ୨୬ ମେ ୧, ଅଗଷ୍ଟ ୧୫ ଓ ଅକ୍ଟୋବର ୨ ତାରିଖରେ ମଧ୍ୟ ଗ୍ରାମସଭା ଡକାଯାଇଥାଏ ।

ପଲ୍ଲୀସଭା ବା ଗ୍ରାମସଭାକୁ ସଫଳ କରିବା ନିମନ୍ତେ ସବୁଠାରୁ ବଡ଼ ଆବଶ୍ୟକତା ହେଲା, ଏହି ବୈଠକ ବସିବାର ସ୍ଥାନ, ଧାର୍ଯ୍ୟ ସମୟ ଓ ତାରିଖର ବହୁଳ ପ୍ରଚାର ଓ ପ୍ରସାର । ଓଡ଼ିଶା ଗ୍ରାମପଞ୍ଚାୟତ ନିୟମାନୁଯାୟୀ ସରପଞ୍ଚ ଅନୁମୋଦନ ପରେ ପଞ୍ଚାୟତର ନିର୍ବାହୀ ଅଧିକାରୀ ବା ସଂପାଦକ ଗ୍ରାମସଭା ବୈଠକ ବସିବାର ପନ୍ଦର ଦିନ ପୂର୍ବରୁ ନୋଟିସ୍ ମାଧ୍ୟମରେ ସୂଚନା ପ୍ରଦାନ କରିଥାନ୍ତି । ଗ୍ରାମପଞ୍ଚାୟତ ପରିସର ଭିତରେ ଥିବା ବିଭିନ୍ନ ସର୍ବସାଧାରଣ ସ୍ଥାନ ଯେପରିକି ସାପ୍ତାହିକ ହାଟ, ସ୍କୁଲ, ଡାକ୍ତରଖାନା, ଅଙ୍ଗନବାଡ଼ି କେନ୍ଦ୍ର, ମହିଳା ସମିତି, ଭାଗବତ ଟୁଙ୍ଗି ଇତ୍ୟାଦି ସ୍ଥାନରେ ନୋଟିସ୍ ଲଗାଯାଇ ଓ ଡେଙ୍ଗୁରା ପିଟି ବା ଡାକବାଜି ଯନ୍ତ୍ର ମାଧ୍ୟମରେ ଗ୍ରାମସଭା ବିଷୟରେ ସୂଚନା ପ୍ରଦାନ କରାଯାଇଥାଏ । ସମୟ ସମୟରେ ଗ୍ରାମସଭା ବୈଠକ ବସୁଥିବା ସ୍ଥାନ ଲୋକମାନଙ୍କ ଗାଁର ଦୂରତାଠାରୁ ଖୁବ୍ ବେଶୀ ଥିବାରୁ ବା କୃଷି କାର୍ଯ୍ୟ ସକ୍ରିୟ ଥିବା ସମୟରେ ଅନେକ ଲୋକ ନିଜର କାର୍ଯ୍ୟବ୍ୟସ୍ତତା ଯୋଗୁଁ ବୈଠକକୁ ଆସିବା ପାଇଁ ଅନାଗ୍ରହ ପ୍ରକାଶ କରିଥାନ୍ତି । ତେଣୁ ଏହି ସବୁ ବିଷୟପ୍ରତି ବିଶେଷ ଧ୍ୟାନଦେବା ଉଚିତ୍ । ବିଭିନ୍ନ ସର୍ବସାଧାରଣ ସ୍ଥାନରେ ନୋଟିସ୍ ଲଟକାଇବା ବେଳେ ସେହିସବୁ ଜାଗାରେ ନୋଟିସ୍ ଜାରି କରାବୋଲି ଅନୁଷ୍ଠାନର କର୍ମକର୍ତ୍ତାଙ୍କଠାରୁ ପ୍ରାପ୍ତି ସ୍ୱୀକାର ନିଆଯିବା ଜରୁରୀ । ଏତଦ୍‌ବ୍ୟତୀତ ଗ୍ରାମସଭା ବୈଠକରେ ଅଧିକ ଉପସ୍ଥିତି ନିମନ୍ତେ ରାଜ୍ୟ ସରକାରଙ୍କ ନିର୍ଦ୍ଦେଶନାମା ଅନୁସାରେ ପ୍ରତି ୱାର୍ଡ଼ରୁ ୱାର୍ଡ଼ ସଦସ୍ୟମାନଙ୍କ ସହ ପରାମର୍ଶ କରି ୨୫ ଜଣ ଖ୍ୟାତିସଂପନ୍ନ ବ୍ୟକ୍ତିମାନଙ୍କ ଏକ ତାଲିକା ପ୍ରସ୍ତୁତ କରି ଗ୍ରାମପଞ୍ଚାୟତ କାର୍ଯ୍ୟାଳୟରେ ରଖାଯିବା ଉଚିତ ଏବଂ ଗ୍ରାମସଭା ବୈଠକର ୧୫ଦିନ ପୂର୍ବରୁ ୱାର୍ଡ଼ ସଦସ୍ୟଙ୍କ ସହିତ ଏହି ବ୍ୟକ୍ତିମାନଙ୍କୁ ମଧ୍ୟ ନୋଟିସ୍ କରାଯିବା । ଆବଶ୍ୟକ ଯଦି ତାଲିକା ଅନ୍ତର୍ଭୁକ୍ତ ଅର୍ଦ୍ଧେକ ବ୍ୟକ୍ତି ଏହି ନୋଟିସ୍ ପାଇନଥିବେ ତେବେ ଗ୍ରାମସଭା ବୈଠକ ନିର୍ଦ୍ଦିଷ୍ଟ ଦିନ ଅନୁଷ୍ଠିତ ହୋଇପାରିବ ନାହିଁ । ତେବେ ନୋଟିସ୍ ପାଇ ଯଦି ସେମାନେ ଯୋଗ ନ ଦିଅନ୍ତି ସେ ସ୍ଥଳରେ ଗ୍ରାମସଭା ବନ୍ଦ ନହୋଇ ନିର୍ଦ୍ଧାରିତ ତାରିଖରେ ଅନୁଷ୍ଠିତ ହୋଇଥାଏ । ଗ୍ରାମସଭା ବୈଠକରେ କୋରମ୍ ପାଇଁ ଅନ୍ତତଃ ଏକ ଦଶମାଂଶ ସଦସ୍ୟ ଉପସ୍ଥିତ ରହିବା ଆବଶ୍ୟକ । ସେଥିମଧ୍ୟରୁ ଏକ ତୃତୀୟାଂଶ ସଦସ୍ୟ ହେବେ ମହିଳା । କୋରମ ଅଭାବ ହେଲେ ସରପଞ୍ଚ ବା ବୈଠକର ସଭାପତିଙ୍କ ନିଷ୍ପତ୍ତିକ୍ରମେ ଆଉ ଥରେ ନୋଟିସ୍ ଦିଆଯାଇ ଅନ୍ୟ ଦିନକୁ ବୈଠକ ସ୍ଥଗିତ ରଖାଯାଏ । ଏହି ବୈଠକକୁ ପୁଣି ଥରେ ଡାକିବା ପାଇଁ ଅତିକମ୍‌ରେ ତିନି ଦିନ ପୂର୍ବରୁ ନୋଟିସ୍ ଦିଆଯାଏ । ଦ୍ୱିତୀୟ ଥର ବୈଠକରେ ଯେତିକି ସଦସ୍ୟ ଉପସ୍ଥିତ ରହନ୍ତି ତାଙ୍କୁ ନେଇ ନିଷ୍ପତ୍ତି ଗ୍ରହଣ କରାଯାଏ । ସ୍ଥାନୀୟ ଲୋକଙ୍କ ଅନୁପସ୍ଥିତିରେ ସାମୂହିକ ନିଷ୍ପତ୍ତି ଗ୍ରହଣ ଗ୍ରାମସଭା ବୈଠକର ଯଥାର୍ଥ ଉଦ୍ଦେଶ୍ୟ ପୂରଣ କରିପାରିବ ନାହିଁ ତେଣୁ ସେଥିପ୍ରତି ଧ୍ୟାନ ଦେବା ଆବଶ୍ୟକ ।

ପଞ୍ଚାୟତ ନିୟମାନୁସାରେ ପଲ୍ଲୀସଭା ବୈଠକ ପଞ୍ଚାୟତର ନିର୍ବାଚିତ ୱାର୍ଡ଼ ସଦସ୍ୟ ସଭାପତିତ୍ୱ କରିବେ । ଯଦି ଏକାଧିକ ସଭ୍ୟ ଥାଆନ୍ତି ତେବେ ଗ୍ରାମପଞ୍ଚାୟତ ବୈଠକରେ ସ୍ଥିର ହୋଇଥିବା ଅନୁସାରେ ଅଗ୍ରାଧିକାର ଭିତ୍ତିରେ ୱାର୍ଡ଼ ସଭ୍ୟମାନେ ପଲ୍ଲୀସଭା ବୈଠକରେ ସଭାପତିତ୍ୱ କରିବେ । ତାଙ୍କ ଅନୁପସ୍ଥିତିରେ ଉପସ୍ଥିତ ସଦସ୍ୟସଦସ୍ୟା ସେମାନଙ୍କ ମଧ୍ୟରୁ ଜଣଙ୍କୁ ସଭାପତି ରୂପେ ମନୋନୀତ କରିପାରିବେ । ସେହିଭଳି ଗ୍ରାମସଭାର ବୈଠକରେ ସରପଞ୍ଚ, ତାଙ୍କ ଅନୁପସ୍ଥିତିରେ ନାଏବ ସରପଞ୍ଚ ପୌରୋହିତ୍ୟ କରିବେ । ଏହି ଦୁଇଜଣଙ୍କ ଅନୁପସ୍ଥିତିରେ ସଭ୍ୟମାନେ ସେମାନଙ୍କ ମଧ୍ୟରୁ ଜଣଙ୍କୁ ସଭାପତି ରୂପେ ମନୋନୀତ କରିପାରିବେ । ପଲ୍ଲୀସଭା ଓ ଗ୍ରାମସଭା ବୈଠକର ଅନ୍ତିମ ନିଷ୍ପତ୍ତି ସଂଖ୍ୟାଧିକ ଭୋଟରେ ସ୍ଥିର ହେବ । ଯଦି କୌଣସି ବିଷୟରେ ବିବାଦ ଯୋଗୁଁ ସମାନ ସମାନ ମତ ଆସିଲା ସଭାପତି ନିଜର ଅତିରିକ୍ତ ଭୋଟ ଦେଇ ବିବାଦକୁ ସମାଧାନ କରିବେ । କୌଣସି କ୍ଷେତ୍ରରେ କାମଚଳା ଭୋଟ ଦିଆଯାଇପାରିବ ନାହିଁ । ପଲ୍ଲୀସଭାର ବିବରଣୀକୁ ସଭାପତି ଓ ଗ୍ରାମସଭାର ବିବରଣୀକୁ ସଂପୃକ୍ତ ଗ୍ରାମପଞ୍ଚାୟତର ସଂପାଦକ/ନିର୍ବାହୀ ଅଧିକାରୀ ଲିପିବଦ୍ଧ କରିବେ । ପଲ୍ଲୀସଭାରେ ଉପସ୍ଥିତି ସମସ୍ତ ବ୍ୟକ୍ତି ସେଥିରେ ଦସ୍ତଖତ କରିବେ । ସବୁଠାରୁ ଉଲ୍ଲେଖନୀୟ ବିଷୟ ହେଲା ପଲ୍ଲୀସଭାର କୌଣସି ସଭ୍ୟ ଗ୍ରାମସଭାର କୌଣସି ସଭ୍ୟ ଗ୍ରାମପଞ୍ଚାୟତର ପରବର୍ତ୍ତୀ ବୈଠକରେ ଲିଖିତ ଭାବେ ହେଉ ବା ବ୍ୟକ୍ତିଗତ ଭାବେ ହେଉ ସଭାପତିଙ୍କଦ୍ୱାରା କାର୍ଯ୍ୟଧାରା ଠିକ୍ ଭାବରେ ରେକର୍ଡ଼ କରାଯାଇ ନାହିଁ ବୋଲି ଯଦି ଅଭିଯୋଗ କରନ୍ତି, ତେବେ ଗ୍ରାମପଞ୍ଚାୟତ ପଲ୍ଲୀସଭାର ଅନ୍ୟ ଏକ ବୈଠକ ଡାକି ପଲ୍ଲୀ ସଭାସହ ସଂପୃକ୍ତ ନଥିବା ପଞ୍ଚାୟତିରାଜ ସଭ୍ୟସଭ୍ୟାଙ୍କ ଉପସ୍ଥିତିରେ ବିଚାର କରବେ । ଏହି ବୈଠକ ବିବରଣୀ ଯଦି ଉପସ୍ଥିତ ସଭ୍ୟଙ୍କଦ୍ୱାରା ପ୍ରତି ସ୍ୱାକ୍ଷରିତ ହେବ ସେହି ନିଷ୍ପତ୍ତିକୁ ଚୂଡ଼ାନ୍ତ ଭାବେ ଗ୍ରହଣ କରାଯିବ ।

ପଲ୍ଲୀସଭା ଓ ଗ୍ରାମସଭା ହେଉଛି ତ୍ରିସ୍ତରୀୟ ପଞ୍ଚାୟତ ଶାସନର ପ୍ରକୃତ ପ୍ରାଣକେନ୍ଦ୍ର । ପଲ୍ଲୀସଭା ସ୍ୱଶାସନର ଏଭଳି ଏକ ବଳିଷ୍ଠ ଓ ପ୍ରଭାବଶାଳୀ ମାଧ୍ୟମ ଯାହାକି ସ୍ଥାନୀୟ ଲୋକମାନଙ୍କ ନିଷ୍ପତ୍ତିକ୍ରମେ ଦାରିଦ୍ର୍ୟ ଦୂରୀକରଣ, ବିକାଶମୂଳକ କାର୍ଯ୍ୟକ୍ରମର ଠିକ୍ ସଂପାଦନ କରିପାରିବ । ପଲ୍ଲୀସଭାର ଆବଶ୍ୟକତା ଓ ପରାମର୍ଶକୁ ନେଇ ଗ୍ରାମସଭାର ସ୍ଥିତି । ଗ୍ରାମସଭା ବହୁ କ୍ଷମତାର ଉତ୍ସ ଓ ବହୁ ଗୁରୁ ଦାୟିତ୍ୱର ଅଧିକାରୀ । ଗ୍ରାମସଭା ବୈଠକକୁ ଦୃଢ଼ୀଭୂତ କରିପାରିଲେ ତୃଣ ମୂଳସ୍ତରରେ ଗଣତନ୍ତ୍ରର ବାସ୍ତବ ରୂପାୟନ ସହ ଏକ ସ୍ୱଚ୍ଛ ଓ ଉତ୍ତରଦାୟୀ ସରକାର ଗଠନ ଅବଶ୍ୟମ୍ଭାବୀ ।

ରାଜ୍ୟ ଗ୍ରାମ୍ୟ ଉନ୍ନୟନ ପ୍ରତିଷ୍ଠାନ
ଭୁବନେଶ୍ୱର



# ଗଣର ଗଜପତି ଓ ସମୟର ସ୍ଥପତି

**ଡକ୍ଟର ନାରାୟଣ ପଣ୍ଡା**

ଉତ୍କଳଜନନୀ ଯେଉଁ କେତେଜଣ ସାର୍ଥକ ସନ୍ତାନମାନଙ୍କୁ କୋଳରେ ଧରି ଗର୍ବିତ, ସେମାନଙ୍କ ମଧ୍ୟରେ ବିଜୟାନନ୍ଦ ପଟ୍ଟନାୟକ ଅନ୍ୟତମ । ଅନନ୍ୟ ଅସାଧାରଣ ବ୍ୟତିକ୍ରମ ବ୍ୟକ୍ତିତ୍ୱ ଭାବରେ ସେ ଯେପରି ସମ୍ମାନନୀୟ ନୀତିନିଷ୍ଠ ନୈୟାୟିକ ଭାବରେ ସେପରି ପ୍ରଶଂସନୀୟ । ଲକ୍ଷ୍ମୀନାରାୟଣଙ୍କ ଔରସରୁ ଆଶାଲତା ଦେବୀଙ୍କ ଜଠରରୁ ଯେଉଁ ପୁତ୍ରସନ୍ତାନ ଜାତ ହୋଇଥିଲା କିଏ ଜାଣିଥିଲା ତାଙ୍କ ଯୋଗୁଁ ନିଖିଳ ଉତ୍କଳ ଦିନେ ଅଖିଳରେ ପରିଣତ ହେବ । ୧୯୧୬ ମସିହା ମାର୍ଚ୍ଚ ୫ ତାରିଖ ତୁଳସୀପୁରର ଆନନ୍ଦ ଭବନ କେବଳ ଆନନ୍ଦରେ ମୁଖରିତ ହୋଇ ନ ଥିଲା, କଟକ ସହର ନବ ବସନ୍ତର ସ୍ପର୍ଶରେ ଶିହରିତ ହୋଇଥିଲା । ତିନି ଭାଇ ଓ ଗୋଟିଏ ଭଉଣୀର ମିଳନରେ ପରିବାର ହୋଇଥିଲା ଉତ୍ସବ ମୁଖରିତ । ଜଣେ ସଚ୍ଚୋଟ, ଦକ୍ଷ ଓ ସ୍ୱାଧୀନଚେତା ବ୍ୟକ୍ତି ଥିଲେ ଲକ୍ଷ୍ମୀନାରାୟଣ ପଟ୍ଟନାୟକ । ପିତାଙ୍କ ଆଦର୍ଶରେ କାୟ-ମନ-ବାକ୍ୟରେ ଅନୁପ୍ରାଣିତ ହୋଇ ଥିଲେ ବିଜୟାନନ୍ଦ ପଟ୍ଟନାୟକ ।

**ଶ୍ୟାମଳ ଶୈଶବ ଓ ସବୁଜ ସ୍ୱପ୍ନ**

ଶ୍ୟାମଳ ଶୈଶବର ସବୁଜ ସ୍ୱପ୍ନ ଜୀବନ ବିଦ୍ୟାଳୟକୁ ମନ୍ତ୍ରୀମାନ ମଧୁକୋଷରେ ପରିଣତ କରେ । ସ୍ମୃତିର ସୁରଭି ଅତୀତର ଆଲବମ୍‌ରେ ଭବିଷ୍ୟତ୍‌ର ମାନଚିତ୍ର ଅଙ୍କନ କରେ । ତୁଳସୀ ଦୁଇ ପତ୍ରରୁ ବାସିଲା ପରି ବିଜୟାନନ୍ଦଙ୍କ ସଦ୍‌ଗୁଣ ଶୈଶବରୁ ଜଣାପଡ଼ିଥିଲା ।

୧୯୨୬ ମସିହା । କଅଁଳ ବୟସ ଚଳଚଞ୍ଚଳ ମନ । ସାଙ୍ଗସାଥୀ ଗହଣରେ ଛବିଳ ପ୍ରଜାପତି । ଶୁଣିଲେ ବିଜୁ ଗାନ୍ଧିଜୀ ଆସିଛନ୍ତି ଓଡ଼ିଶା । ସବୁ କାମ ଛାଡ଼ି ଚାଲିଲେ ଗାନ୍ଧିଜୀଙ୍କୁ ଭେଟିବାକୁ । ଲୋକଗହଳି ପାର ହୋଇ ଗାନ୍ଧୀଙ୍କ ପାଖକୁ ଗଲାବେଳକୁ ଖାଇଲେ ବେତ ପାହାର (ପୋଲିସର ଲାଠିମାଡ଼ରେ ମୁଣ୍ଡରୁ ବୋହୁଥାଏ ଧାର ଧାର ରକ୍ତ) କ୍ଷତକୁ ଖାତିର ନ କରି ଗାନ୍ଧୀଙ୍କ ନିକଟତର ହେଲେ । ବିଜୁଙ୍କ ଦୁଃଖ ଦେଖି ଗାନ୍ଧୀଙ୍କ ଆଖି ଛଳ ଛଳ ହୋଇଗଲା । ପିଲାଟିର ମୁଣ୍ଡ ଆଉଁଶି ଦେଲେ । ପିଲାଟିର ସାହସ ଓ ଧୈର୍ଯ୍ୟ ଦେଖି ଗାନ୍ଧୀ ଅବାକ୍ ହୋଇଥିଲେ । କିଶୋର ବାଳକ ବିଜୁ ଗାନ୍ଧୀଙ୍କ ହାତସ୍ପର୍ଶ ପାଇଥିବାରୁ ଯେତିକି ପୁଲକିତ ହେଲେ ସେତିକି ଗର୍ବ ଅନୁଭବ କଲେ । ବିଜୁ ଗାନ୍ଧୀଙ୍କ ମିଳନ ସେଦିନ ମଣିକାଞ୍ଚନର ସଂଯୋଗ ଘଟିଥିଲା । ବଡ଼ମଣିଷଙ୍କ ଆଶିଷ ଲାଭ କଲେ ଜୀବନ କିପରି ମହକିତ ହୁଏ, ତାହା ଏହାର ନଗ୍ନ ନମୁନା । ଯିଏ ଯାହା ଚାହେଁ ଯଦି ପାଇଯାଏ ତେବେ ତା'ର ଈପ୍‌ସିତ ବସ୍ତୁ ପାଇବାରେ ଯେଉଁ ଦୁଃଖ ଜାତ ହୋଇଥାଏ, ତାହା ସହଜରେ ପାସୋର ଯାଏ । ଉତ୍କଳମଣି ଗୋପବନ୍ଧୁଙ୍କ 'ଧର୍ମପଦ'ରୁ ଗୋଟିଏ ପଦ ମନେପଡ଼େ-

ନୟନେ ନୟନ ହେଲେ ଭେଟାଭେଟି
ହେବ ପରାଣ-ମିଳନ
ଯେ ଯାହାର ତାକୁ ଲୋଡ଼େ ସେ ସହଜେ
କରିବାକୁ ଆଲିଙ୍ଗନ ।

ଶୈଶବରୁ ବଡ଼ ହେବାର ଲକ୍ଷଣ ଦେଖାଦିଏ । ବିଜୁଙ୍କ ପରୋପକାର, ସାହାଯ୍ୟ ସହାନୁଭୂତି ଛାତ୍ର ଜୀବନରୁ ଜଣା ପଡ଼ିଥିଲା । ବନ୍ୟାବିପନ୍ନ ଲୋକମାନଙ୍କୁ ଚୁଡ଼ା ଚାଉଳ ରନ୍ଧନଖାଦ୍ୟ

ଯୋଗାଇ ଦେବା ପାଇଁ ଉତ୍କଳମଣି ଗୋପବନ୍ଧୁ କେତେଜଣ ସ୍କୁଲ ପିଲାଙ୍କୁ ସାଙ୍ଗରେ ଧରି ପଟାମୁଣ୍ଡାଇ ଯାଉଥିଲେ । ନଈ ଦୁଇକୂଳ ଖାଉଚି ଡଙ୍ଗାରେ ବସି ଗୋପବନ୍ଧୁ ନଦୀ ପାର ହେଉଛନ୍ତି । ତୁହାକୁ ତୁହା ପବନ ବହୁଛି । ଝିପିଝିପି ବର୍ଷା ସାଙ୍ଗକୁ ସାପମୁଣ୍ଡ ଛିଡ଼ା ଲହଡ଼ି । ଗୋପବନ୍ଧୁଙ୍କ ହାତରୁ ଛତାଟି ଉଡ଼ି ନଦୀଗର୍ଭରେ ପଡ଼ିଲା । ଡଙ୍ଗାରେ ବସିଥିବା ସବୁ ଛାତ୍ର ଏ ଦୃଶ୍ୟ ଦେଖୁଥାନ୍ତି କେହି ନଦୀଗର୍ଭକୁ ଯିବାକୁ ସାହସ କରୁ ନ ଥାନ୍ତି । ଇତ୍ୟବସରେ ଜଣେ ଡେଙ୍ଗା ପିଲା (ବିଜୁ) ପୂରନ୍ତା ନଈକୁ ଡେଇଁ ପଡ଼ିଲେ । ନଦୀସୁଅରେ ଭାସିଯାଉଥିବା ଛତାଟି ଆଣି ଗୋପବନ୍ଧୁଙ୍କୁ ଦେଲେ । ଏକଥା ଦେଖି ଗୋପବନ୍ଧୁ ଭୟରେ ଆଖିବୁଜି ଦେଲେ । ପିଲାଟି ପିଠିରେ ହାତ ମାରି କହିଲେ ଆରେ ବାବୁ ତୁମେ ଏ କ'ଣ କଲ ? ଜୀବନଟା ବଡ଼ ନା ମୋ ଛତାଟା ବଡ଼ ? ଗୋପବନ୍ଧୁଙ୍କ ପାଟିରୁ ପ୍ରଶ୍ନ ନ ସରୁଣୁ ପିଲାଟି ନିର୍ଭୟରେ ଉତ୍ତର ଦେଲା 'ଆପଣ ନିଜ ଜୀବନକୁ ପାଣି ଛଡ଼ାଇ କେତେ ଲୋକଙ୍କ ସେବା କରୁଛନ୍ତି । ଆପଣଙ୍କ ଛତା ମୋ ଜୀବନଠାରୁ କିଛି କମ୍ ମୂଲ୍ୟବାନ୍ ନୁହେଁ । ସେଦିନ ଗୋପବନ୍ଧୁ ବରଫଳ ଭିତରେ ଏକ ବିରାଟ ଶାଖାପ୍ରଶାଖା ବିଶିଷ୍ଟ ବଟବୃକ୍ଷକୁ ଆବିଷ୍କାର କରିଥିଲେ । 'ଧର୍ମପଦ'ର ଏକ ପଂକ୍ତି ମନେ ପଡ଼େ-

''ଶିଶୁ ବଢ଼ି କ୍ରମେ ହୁଏ ଯୁବା ବୃଦ୍ଧ
ଚତୁର ପ୍ରବୀଣ ନର
ପ୍ରଭାତ ଅରୁଣେ ଲୁଚି ରହିଥାଏ
ମଧ୍ୟାହ୍ନ ତେଜ ପ୍ରଖର'' ।

ସ୍ୱରାଜ ଆଶ୍ରମ ପରିଦର୍ଶନ ନିମନ୍ତେ ଗାନ୍ଧିଜୀ ଆସିଥିଲେ । ବିଜୁବାବୁ ଓ ତାଙ୍କ ବଡ଼ଭାଇ ଗାନ୍ଧୀଙ୍କୁ ଦେଖା କରିବାକୁ ଯାଇଥିଲେ । ସବୁ ପିଲାଙ୍କ ଭିତରେ ବିଜୁବାବୁ ଡେଙ୍ଗା ଥିବାରୁ ବାହାରକୁ ବାରି ହୋଇ ପଡୁଥିଲେ । ସେତେବେଳେ କଟକରେ ଏସ୍.ପି. ଥିଲେ ଗୋରାସାହେବ ମିଷ୍ଟର ହାରଗ୍ରିଭ । କିଛି ନବୁଝି ବିଚାରି ଗୋରା ସାହେବ ପିତ୍ତଳମୁଣ୍ଡିଆ ରୁଲ୍ ବାଡ଼ିରେ ବିଜୁଙ୍କ ମୁଣ୍ଡକୁ ବାଡ଼େଇ ଦେଲେ । ମୁଣ୍ଡ କଣା ହୋଇଗଲା, ରକ୍ତ ବୋହିଲା । ସେହିଦିନଠାରୁ ବିଜୁବାବୁଙ୍କ ମନରେ ଗୋରାମାନଙ୍କ ପ୍ରତି ଘୃଣାଭାବ ଜାଗ୍ରତ ହେଲା । ଅସନ୍ତୋଷର ବହ୍ନି ବିଜୁବାବୁଙ୍କ ମନରେ ପ୍ରଜ୍ୱଳିତ ହେଲା । ଗୋରା ସାହେବଙ୍କୁ ଦେଶରୁ ହଟେଇବା ପାଇଁ ବଜ୍ର ଶପଥ ନେଲେ ।

ଖେଳପ୍ରେମୀ ବିଜୁ ୧୯୩୨ ମସିହା ମଇ ମାସ ୩୧ ତାରିଖରେ ସାଇକେଲରେ କଟକରୁ ପେଶୱାର ଯାତ୍ରା କରିଥିଲେ । ଅମର ଦେଓ ଓ ଭ୍ରମରବର ସାହୁ ଗହଣରେ ଜୁନ୍ ଚାରି ତାରିଖରେ ପେଶୱାରରେ ପହଞ୍ଚିଥିଲେ । ପୋଲଭୋଲ୍ଟ ଖେଳ ବିଜୁ ଆରମ୍ଭ କରିଥିଲେ । ସେ ସର୍ବଦା ଖେଳରେ ପ୍ରଥମ ହେଉଥିଲେ । ସେ ଘୋଷଣା କରିଥିଲେ ପୋଲଭୋଲ୍ଟ ଖେଳରେ ଯିଏ ତାଙ୍କ ରେକର୍ଡ଼ ଭାଙ୍ଗିବ ସେ ପୁରସ୍କୃତ ହେବ । ନନ୍ଦକିଶୋର ଦାସ ବିଜୁବାବୁଙ୍କ ରେକର୍ଡ଼ ଭାଙ୍ଗିଲେ ଓ ଶହେ ଟଙ୍କା ପୁରସ୍କାର ପାଇଲେ ।

### ଆଗ୍ନେୟ ଶପଥର ମହାନାୟକ

ବିଜୁବାବୁ ପାଠ ପଢୁଥିବା ସମୟରେ ନୂଆ ହୋଇ କଟକ କିଲ୍ଲା ପଡ଼ିଆକୁ ଉଡ଼ାଜାହାଜଟିଏ ଆସିଥାଏ । ଉଡ଼ାଜାହାଜ ଦେଖିବା ପାଇଁ ବିଜୁବାବୁଙ୍କ ମନରେ ଆଗ୍ରହ କହିଲେ ନ ସରେ । ଉଡ଼ାଜାହାଜ ଚାରିପାଖ ପୋଲିସ ଛାଉଣି ତଥାପି ଲୋକଗହଳି ଭିତରେ ବିଜୁବାବୁ ଉଡ଼ାଜାହାଜ ପାଖକୁ ଗଲେ, ସନ୍ତର୍ପଣରେ ଜାହାଜକୁ ଛୁଇଁଲେ । ଏ ଦୃଶ୍ୟ ଦେଖି ଗୋରା ପୁଲିସ ରାଗିଗଲେ । ନିର୍ମମ ଭାବରେ ବିଜୁଙ୍କୁ ଚାବୁକ୍ ମାରିଲେ । ଦୃଢ଼ମନା ଯୁବକ ବିଜୁ ବଜ୍ର ଶପଥ ନେଲେ ପାଇଲଟ ହୋଇ ନୀଳ ଆକାଶରେ ମୁକ୍ତ ବିହଙ୍ଗ ପରି ଉଡ଼ିବାକୁ ସ୍ୱପ୍ନ ଦେଖିଲେ ।

କଲେଜରେ ଅଧ୍ୟୟନ ସମୟରେ ଅତୀତ ଶପଥ ମନେ ପଡ଼ିଲା । ପାଇଲଟ୍ ଟ୍ରେନିଂ ଯିବାକୁ ବାପାଙ୍କୁ ଅନୁରୋଧ କଲେ । ଆର୍ଥିକ ଅନଟନ ଭିତରେ ବିଜୁଙ୍କୁ ଉଡ଼ାଜାହାଜ ଶିକ୍ଷା କରିବାକୁ ପଠାଇବା ପାଇଁ ତାଙ୍କ ପକ୍ଷରେ କଷ୍ଟସାଧ ହୋଇପଡ଼ିଲା । ଅନେକ ମନସ୍ତାପରେ ନିଜ କୋଠାଘରଖଣ୍ଡକ ବିକ୍ରି କରି ବିଜୁଙ୍କୁ ପାଇଲଟିଂ ଟ୍ରେନିଂ ଦେବାକୁ ଇଚ୍ଛା କଲେ । କିନ୍ତୁ ବିଧିର ବିଧାନ ବିଚିତ୍ର । ଲକ୍ଷ୍ମୀନାରାୟଣଙ୍କୁ ବିଜୁଙ୍କ ପାଇଁ ଘର ବିକ୍ରି କରିବାକୁ ପଡ଼ିଲା ନାହିଁ । ଜଗନ୍ନାଥ ବିଶ୍ୱାସୀ ଲକ୍ଷ୍ମୀନାରାୟଣଙ୍କ ଡାକ ମହାପ୍ରଭୁ ଶୁଣିଲେ । ସେଦିନ ଏକ ଜରୁରୀ ଚିଠି ଆସି ପହଞ୍ଚିଲା । ପାରଳା ମହାରାଜା ମାସିକ ୧୨୦୦ ଟଙ୍କା ବେତନରେ ଲକ୍ଷ୍ମୀନାରାୟଣଙ୍କୁ ରାଜ୍ୟର ଦେବାନ କରିନେବାକୁ

ଚାହିଁଲେ । ଚିଠିଟି ପାଇବା ପରେ ପରିବାର ମଧ୍ୟରେ ଆନନ୍ଦର ଲହରି ଖେଳିଯାଇଥିଲା । ସପରିବାର ଦୟାମୟ ପ୍ରଭୁ ଜଗନ୍ନାଥଙ୍କ ଉଦ୍ଦେଶ୍ୟରେ ପ୍ରଣତି ବାଢ଼ିଲେ ।

ବହୁ ବ୍ୟୟସାପେକ୍ଷ ଉଡ଼ାଜାହାଜ ଚାଳନା ଶିକ୍ଷାକେନ୍ଦ୍ରରେ ବିଜୁ ସମସ୍ତ ଶକ୍ତି ସାହସ, ପ୍ରତ୍ୟୁତ୍ପନ୍ନମତିତା ବଳରେ କୃତିତ୍ୱର ସହ ଟ୍ରେନିଂ ଶେଷ କଲେ । ଟ୍ରେନିଂ ଶିକ୍ଷା କେନ୍ଦ୍ରରେ ସମସ୍ତ ଶିକ୍ଷାର୍ଥୀମାନଙ୍କର ଆଦର୍ଶର କେନ୍ଦ୍ରବିନ୍ଦୁ ଥିଲେ ବିଜୁ । ନିଷ୍ଠା ଦକ୍ଷତାର ପ୍ରତୀକ ବିଜୁ କଳିଙ୍ଗପୁଅର ଅନନ୍ୟ ଅବତାର ଓ ଭାବନାର ଭାସ୍କର୍ଯ୍ୟ । ଓଡ଼ିଆ ପୁଅ ଭାବରେ ସେ ଯେତିକି ଗର୍ବ ଅନୁଭବ କରୁଥିଲେ, ଅତୀତ ଗୌରବକୁ ମନେପକାଇ ସେତିକି ମନରେ ସାହସ ସଞ୍ଚୟ କରୁଥିଲେ । ବିଦେଶୀମାନଙ୍କ ଦୃଷ୍ଟିରେ ସେ ଖାରବେଳଙ୍କ ବଂଶଧର ଓ କଳିଙ୍ଗର ବୀର । କଳିଙ୍ଗର ଦ୍ୱିତୀୟ ଖାରବେଳ ଭାବରେ ସେ ଯେପରି ସମ୍ମାନନୀୟ ଓଡ଼ିଆର ସଂସ୍କୃତି ଓ ସମ୍ମାନକୁ ବିଶ୍ୱଦରବାରରେ ପହଞ୍ଚାଇଥିବାରୁ ସେ ସେପରି ଅଷ୍ଟରତ୍ନଖଚିତ ମୁକୁଟବିହୀନ ସମ୍ରାଟ୍ ଭାବରେ ସର୍ବବାଦୀସମ୍ମତ ।

ଉଡ଼ାଜାହାଜ ତାଲିମ ଶେଷ ପରେ ବିଜୁ ଇଣ୍ଡିଆନ୍ ନ୍ୟାସନାଲ ଏୟାରୱେଜରେ ନିଯୁକ୍ତି ପାଇଲେ । ଆନନ୍ଦର ବାତାବରଣ ଭିତରେ ଶୁଭ ଖବର ପ୍ରିୟଜନମାନଙ୍କୁ ଜଣାଇ ଦେଲେ । ଅନେକ ଦିନର ଆଶା ସଫଳ ହୋଇଛି ବିଜୁଙ୍କ ଆନନ୍ଦ ଆକାଶ ଛୁଉଁଚି । କଠିନ ଅଧ୍ୟବସାୟ ଓ ନୈତିକ ସାହସ ସଫଳତାର ଜନନୀ ।

### ମଙ୍ଗଳ ମହୁରି ଓ ବିଜୟ ବୈଜୟନ୍ତୀ

କାଶ୍ମିରୀ ଅନନ୍ୟ ସୁନ୍ଦରୀ ଗୁଣବତୀ କନ୍ୟା ସୁଶ୍ରୀ ଜ୍ଞାନ ଦେବୀଙ୍କ ସହିତ ୧୯୩୯ ମସିହାରେ ବିଜୁ ପଟ୍ଟନାୟକଙ୍କ ବିବାହ କାର୍ଯ୍ୟ ସମାପନ ହୋଇଥିଲା । ଜଣେ ଅସମାନ୍ୟା ଲଳନା, ଜଣେ ଦକ୍ଷ ବୈମାନିକ, ଜଣେ ଅଲିଅଳୀ ଲାଜକୁଳୀ, ଜଣେ ଗଣର ଗଜପତି ଜଣେ ଅନୁରକ୍ତ ରୂପବତୀ, ଜଣେ ସମୟର ସ୍ଥପତି ଏ ଦୁଇଟି ଆତ୍ମାର ମିଳନ, କଳିଙ୍ଗ କଳାର କାରୁକାର୍ଯ୍ୟ । ସେ ଥିଲେ ସାଧାରଣ, ତାଙ୍କ କାର୍ଯ୍ୟ ଥିଲା ଅସାଧାରଣ । ଅପୂର୍ବ ସାଜସଜ୍ଜାରେ ସଜ୍ଜିତ ସାତଟି ବିମାନ ନୀଳ ଆକାଶରେ ରାଓଲପିଣ୍ଡିରେ ଅବତରଣ କଲା, ବର ବେଶରେ କଳିଙ୍ଗବୀର ବିଜୁ ପଟ୍ଟନାୟକ ବୀର ଦର୍ପରେ ବିବାହ ମଣ୍ଡପକୁ ଚାଲିଲେ । ଶୁଭଚିନ୍ତକ, ବନ୍ଧୁପରିଜନ ବିବାହ କାର୍ଯ୍ୟରେ ଯୋଗ ଦେଲେ । ରୂପବାନ୍, ଗୁଣବାନ୍ ଯୁବକ ବିଜୁଙ୍କୁ ଦେଖି କନ୍ୟା ପକ୍ଷର ଲୋକ ବିସ୍ମିତ ହେଲେ । ସମସ୍ତଙ୍କର ସହଯୋଗ ସାହାଯ୍ୟ ଆଶୀର୍ବାଦକୁ ପାଥେୟ କରି ଜ୍ଞାନଦେବୀଙ୍କ ସହିତ ବୈବାହିକ କାର୍ଯ୍ୟ ସମ୍ପନ୍ନ ହେଲା । ବିବାହ ବନ୍ଧନରେ ସ୍ୱାମୀ ସ୍ତ୍ରୀ ରୂପରେ ବାନ୍ଧି ହୋଇ କାଳାତିପାତ କଲେ ଜ୍ଞାନଦେବୀ ଓ ବିଜୁବାବୁ ।

ରୂପ ଗୁଣ ବିଭବରେ ଅନନ୍ୟା ରୂପସୀ ଜ୍ଞାନଦେବୀ ପ୍ରତି ଓଡ଼ିଆ ପ୍ରାଣର ମମତାମୟୀ ସ୍ନେହସ୍ନିଗ୍ଧା ଜନନୀ । ଯେପରି ନାମ ସେପରି କାମ । ଆଭିଜାତ୍ୟ ମଧ୍ୟରେ ରହି ସେ ଯେପରି ସ୍ୱାମୀ ଅନୁରକ୍ତା, ବୈଭବଲକ୍ଷ୍ମୀଙ୍କ ଅଙ୍କ ମଣ୍ଡନ କରି ସେ ସେପରି ସନ୍ତାନବତ୍ସଳା, ସ୍ୱାଭିମାନୀ । ଓଡ଼ିଶାବାସୀଙ୍କ ହୃଦୟର ଦେବୀ ନଥିଲେ, ଥିଲେ ଶତ ଜନନୀର ଅଧିକାରିଣୀ ଜ୍ଞାନଦେବୀ ।

ଏସିଆ ଓ ଆଫ୍ରିକାର ଅନେକ ଦେଶ ଔପନିବେଶିକ ଶାସନ ମଧ୍ୟରେ ଶାସିତ ହୋଇ ମୁକ୍ତିର ସ୍ୱପ୍ନ ଦେଖୁଥାନ୍ତି । ବିଦେଶୀମାନଙ୍କ କବଳରୁ ମୁକ୍ତି ନିଶାରେ ଜୀବନମୂର୍ଚ୍ଛା ସଂଗ୍ରାମ କରୁଥାନ୍ତି । ଭାରତରେ ମହାତ୍ମାଗାନ୍ଧୀଙ୍କ ଡାକରାରେ ସ୍ୱାଧୀନତା ସଂଗ୍ରାମରେ ସମଗ୍ର ଭାରତବାସୀ ଝାସ ଦେଲେ ଏବଂ ୧୯୪୭ ମସିହା ଅଗଷ୍ଟ ୧୫ ତାରିଖ ଦିନ ସ୍ୱାଧୀନତା ହାସଲ କଲେ ।

ଏହି ଆନ୍ଦୋଳନ ଅନେକ ପରାଧୀନ ଜାତିକି ପ୍ରେରଣା ଯୋଗାଇଲା । ଇଂରେଜମାନଙ୍କ କବଳରୁ ଭାରତ ସ୍ୱାଧୀନତା ହାସଲ କରିବା ପରେ ଡଚ୍ ଅଧିକୃତ ଇଣ୍ଡୋନେସିଆ ଅଧିବାସୀଙ୍କ ଉପରେ ଭାରତର ପ୍ରଭାବ ପଡ଼ିଲା । ବିଦେଶୀ ଶାସନରୁ ମୁକ୍ତିଲାଭ କରିବା ନିମନ୍ତେ ଇଣ୍ଡୋନେସିଆର ବହୁ ସଂଗ୍ରାମୀ ନେତା ଜୀବନକୁ ବାଜି ଲଗେଇ ସଂଗ୍ରାମରେ ଝାସ ଦେଲେ । ନେତାଙ୍କ ମଧ୍ୟରେ ଥିଲେ ଡକ୍ଟର ସୁକର୍ଣ୍ଣୋ, ଡକ୍ଟର ମହମ୍ମଦ ହଟ୍ଟା, ଡକ୍ଟର ସାହାରିଆର ।

ଇଣ୍ଡୋନେସିଆର ଜୀବନପଣ ଆନ୍ଦୋଳନକୁ ଦବାଇବା ପାଇଁ ଡଚ୍ ସରକାର ପ୍ରବଳ ଅମାନୁଷିକ ଅତ୍ୟାଚାର ଜନସାଧାରଣଙ୍କ ଉପରେ ଚଳାଇଥାନ୍ତି । କୌଣସି ଖବର ଅନ୍ତର

ବାହାର ଦୁନିଆକୁ ଇଣ୍ଡୋନେସିଆରୁ ଯାଇପାରୁ ନ ଥିଲା । ଇଣ୍ଡୋନେସିଆକୁ ସ୍ୱାଧୀନତା ଦେବାରେ ପଣ୍ଡିତ ଜବାହରଲାଲ ନେହେରୁ ଓ ଗାନ୍ଧୀଙ୍କ ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ଦୁଃସାହସିକ, ଦୁର୍ଦ୍ଧର୍ଷ ବୈମାନିକ ବିଜୁ ପଟ୍ଟନାୟକଙ୍କୁ ପ୍ରଧାନମନ୍ତ୍ରୀ ନେହେରୁ ଇଣ୍ଡୋନେସିଆବାସୀଙ୍କୁ ସାହାଯ୍ୟ ସହଯୋଗ କରିବାକୁ ନିଯୁକ୍ତି ଦେଲେ । ଏକ ଘଡ଼ିସନ୍ଧି ମୁହୂର୍ତ୍ତରେ ବିଜୁ ବିପଦକୁ ବରଣ କଲେ । ଡଚ୍ ସରକାରଙ୍କ ସୈନ୍ୟ ଗୁଳିଗୁଳାକୁ ଖାତିର ନ କରି ଉଡ଼ାଜାହାଜରେ ଯାଇ ସମସ୍ତ ଖବର ଆଣି ନେହେରୁଙ୍କୁ ଦେଲେ । ସବୁ ଅସାଧ କାର୍ଯ୍ୟକୁ ସାଧନ କରିବାରେ ବିଜୁ ଥିଲେ ଆଗଭର ଓ ତତ୍ପର । ଜୀବନର ପ୍ରତ୍ୟେକ ମୁହୂର୍ତ୍ତ ପରୀକ୍ଷାର ସମ୍ମୁଖୀନ ହେବା ଜଣେ ବୀରପୁରୁଷର ଲକ୍ଷଣ– ପ୍ରସଙ୍ଗକ୍ରମେ ବିଜୁ କହିଥିଲେ, ଡଚ୍ ସୈନ୍ୟମାନଙ୍କ କବଳରୁ ଜୀବନବାଜି ଲଗେଇ ବିଜୁ ଇଣ୍ଡୋନେସିଆର ସ୍ୱାଧୀନତା ଆନ୍ଦୋଳନର କର୍ଣ୍ଣଧାରମାନଙ୍କୁ ଉଦ୍ଧାର କରିଥିଲେ ।

ବିଜୁବାବୁ ସହଧର୍ମିଣୀ ଜ୍ଞାନ ପଟ୍ଟନାୟକଙ୍କୁ ସାଙ୍ଗରେ ଧରି ଏକ ଡାକୋଟା ବିମାନ ଯୋଗେ ଇଣ୍ଡୋନେସିଆର ରାଜଧାନୀ ଜାକର୍ତ୍ତା ଗଲେ ଓ ସୁକର୍ଣ୍ଣୋଙ୍କୁ ସୁମାତ୍ରାର ଗୋଟିଏ ଘାଟୀରେ ଭେଟିଲେ । ସୁକର୍ଣ୍ଣୋ ବଡ଼ ଚିନ୍ତାରେ ଥାଆନ୍ତି, କାରଣ ସ୍ତ୍ରୀ ଫାତମା ଗର୍ଭଯନ୍ତ୍ରଣା ଭୋଗ କରୁଥାନ୍ତି । କିଛି ସମୟ ଅତିବାହିତ ହେବା ପରେ ସୁକର୍ଣ୍ଣୋଙ୍କର ଏକ ଝିଅ ଜନ୍ମ ହେଲା । ବିଜୁ ଓ ସୁକର୍ଣ୍ଣୋ ଆନନ୍ଦରେ କୋଳାକୋଳି ହେଲେ । ଇଣ୍ଡୋନେସିଆବାସୀ ମୁସଲମାନ ହେଲେ ମଧ୍ୟ ସେମାନେ ସନ୍ତାନସନ୍ତତିଙ୍କର ସଂସ୍କୃତ ଭାଷାରେ ନାମକରଣ କରନ୍ତି । ସୁକର୍ଣ୍ଣୋ ନବଜନ୍ମିତ ଝିଅର ନାମ ଦେବା ପାଇଁ ବିଜୁଙ୍କୁ ଅନୁରୋଧ କଲେ । ବିଜୁ କାଳବିଳମ୍ବ ନ କରି ଅନୁରୋଧ ରକ୍ଷାକରି ସୁକର୍ଣ୍ଣୋଙ୍କ ଝିଅର ନାମ ଦେଲେ ''ମେଘାବତୀ ସୁକର୍ଣ୍ଣା ପୁତ୍ରୀ'' ।

ଏକ ବିରାଟ ସମାରୋହରେ ବିଜୁଙ୍କୁ ଇଣ୍ଡୋନେସିଆର ସମ୍ମାନଜନକ ସମ୍ମାନ 'ଭୂମିପୁତ୍ର' ଉପାଧି ପ୍ରଦାନ କରାଗଲା । ସମବେତ ଶ୍ରୋତୃମଣ୍ଡଳୀ ବିଜୁଙ୍କ ଭାଷଣ ଶୁଣି ସ୍ତବ୍ଧ ଓ ଚକିତ ହେଲେ । ଇଣ୍ଡୋନେସିଆବାସୀ ପୁଷ୍ପମାଲ୍ୟରେ ବିଜୁଙ୍କୁ କୋଳାଗ୍ରତ କଲେ । ସମ୍ମାନ ଓ ଭୂଷଣରେ ଶୀର୍ଷ ଛୁଇଁଲେ ବିଜୁ । କୋଠା, ଖଣି, ଜଙ୍ଗଲ ବନ୍ଦର, ସମସ୍ତ ପ୍ରକାର ଉପହାର, ଉପଢୌକନ ବିଜୁଙ୍କ ହାତରେ ଅର୍ପଣ କଲେ ଇଣ୍ଡୋନେସିଆବାସୀ (ଯାହାର ମୂଲ୍ୟ ସେତେବେଳେ ଦଶହଜାର କୋଟି ହେବ ।) ନମ୍ରତାର ସହ ସବୁ ଗ୍ରହଣ କଲେ ବିଜୁ କିନ୍ତୁ ହସି ହସି ସବୁ ଫେରାଇ ଦେଲେ । ପ୍ରାପ୍ତିର ଆନନ୍ଦ ତାଙ୍କୁ ଅଧୀର କରି ନ ଥିଲା କି ଅପ୍ରାପ୍ତିର ବେଦନା ତାଙ୍କୁ ତିଳେମାତ୍ର ସ୍ପର୍ଶ କରି ନ ଥିଲା । ସୁଖ ଦୁଃଖରେ ସେ ଥିଲେ ଅବିଚଳିତ, ସ୍ଥିତିପ୍ରାଜ୍ଞ ଦୃଢ଼ଚିତ । ବିନମ୍ରତାର ସହିତ ବିଜୁ ଇଣ୍ଡୋନେସିଆବାସୀଙ୍କୁ ଜଣାଇଲେ ''କଳିଙ୍ଗର ରାଜା କୌଣସି ଉପହାର ନିଅନ୍ତି ନାହିଁ । ମୁଁ ସେହି କଳିଙ୍ଗମାଟିର ସନ୍ତାନ ଏସବୁକୁ ଗ୍ରହଣ କରିବି କେମିତି ?

### ପ୍ରଶଂସାର ପ୍ରତ୍ୟୟରେ ପ୍ରଥିତଯଶା

ଗୋଟିଏ ପଟରେ ଦେଶର ଆହ୍ୱାନ, ଅନ୍ୟ ପଟରେ ଚାକିରି ଜୀବନ ବିଜୁଙ୍କୁ ଗୋଲକଧନ୍ଦାର ସମ୍ମୁଖୀନ କରିଥିଲା । ଯଦିଓ ସେ ପାଇଲଟ ଚାକିରି କରିଥିଲେ କିନ୍ତୁ ଗୋରାସରକାରଙ୍କ ବିରୋଧରେ ଲଢ଼ିବାକୁ ଛାତ୍ର ଜୀବନରୁ ଶପଥ ନେଇଥିଲେ । ଜୟପ୍ରକାଶଙ୍କଠାରୁ ସମସ୍ତ ବିଷୟ ଅବଗତ ହେବା ପରେ ଚାକିରି ଛାଡ଼ି ଦେଇ ସ୍ୱାଧୀନତା ସଂଗ୍ରାମରେ ଝାସ ଦେବା ପାଇଁ ସ୍ଥିର କଲେ । ଜୟପ୍ରକାଶଜୀ ବିଜୁଙ୍କ ମନୋଭାବକୁ ଗ୍ରହଣ କଲେ ନାହିଁ । ଚାକିରିରେ ରହି ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ସାହାଯ୍ୟ ସହଯୋଗ କରିବାକୁ ବିଜୁଙ୍କୁ ଉପଦେଶ ଦେଲେ । ଦେଶ ପାଇଁ ଜୀବନ ଉତ୍ସର୍ଗର ଶପଥ ନେଇଥିଲେ ବିଜୁ ଶୈଶବରୁ । ଉତ୍କଳ ଜନନୀର ଆହ୍ୱାନ, ପିତାଙ୍କ ବଚନ ତାଙ୍କ ଶ୍ରବଣରେ ପ୍ରତିଧ୍ୱନିତ ହେଉଥିଲା ଶୟନେ ସପନେ ଜାଗରଣେ ।

ଗୋଇନ୍ଦା ବିଭାଗ ଆଖିରେ ଧୂଳି ଦେଇ ନିଜ ବିମାନରେ ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ନେବାଆଣିବା କଲେ । ଛଦ୍ମ ବେଶରେ ଦେଶର ମଙ୍ଗଳ ପାଇଁ ଗୋରାମାନଙ୍କ ଆଖିରେ ଆଖି ମିଳେଇ ଜାତୀୟ କଂଗ୍ରେସ ପ୍ରଚାରପତ୍ର ବିଜୁ ନିର୍ଭୟରେ ଉଡ଼ାଜାହାଜରେ ତଳକୁ ପକାଇଲେ । ବିଜୁଙ୍କ କାର୍ଯ୍ୟକଳାପ ଗୋରାମାନଙ୍କୁ ଅଛପା ରହିଲା ନାହିଁ । ୧୯୪୩ ମସିହା ଜାନୁୟାରୀ ୧୩ ତାରିଖରେ ଗୋରା ଗୋଇନ୍ଦା ବିଭାଗ ବିଜୁଙ୍କୁ

ଦିଲ୍ଲୀରେ ଗିରଫ କଲେ । ହାତରେ କଡ଼ି ଗୋଡ଼ରେ ବେଡ଼ି ପକାଇ ରାଜପଥରେ ନିଆଯାଇ ଲାଲକିଲ୍ଲା ଦୁର୍ଗ କାରାଗାର ଭିତରେ ବିଜୁଙ୍କୁ ରଖାଗଲା । ବହୁ ଦୁଃଖ ଓ ଯାତନା ଭିତରେ ବିଜୁ ଥିଲେ ଅବିଚଳିତ ନିର୍ଲିପ୍ତ । ଫିରୋଜପୁର ଜେଲକୁ ସ୍ଥାନାନ୍ତରିତ ହେବା ପରେ ହସ ହସ ମୁଖରେ ଦେଶବାସୀଙ୍କ ଉଦ୍ଦେଶ୍ୟରେ ବିଜୁ କହିଥିଲେ 'ଏ ଦେହର ଅବସାନ ଅଛି ଦେଶ ଜାତି ପାଇଁ କାରାବରଣ କରିବା କ'ଣ ବଡ଼ କଥା ?'

ଭାଇର କାରାବରଣ କଥା ଶୁଣି ବଡ଼ଭାଇ ଜର୍ଜ ପଟ୍ଟନାୟକ ଦୁଃଖରେ ଭାଙ୍ଗିପଡ଼ିଲେ । ପାରଳା ମହାରାଜା କୃଷ୍ଣଚନ୍ଦ୍ର ଗଜପତି ଥାଆନ୍ତି ଓଡ଼ିଶାର ପ୍ରଧାନମନ୍ତ୍ରୀ । ଭାରତର ବଡ଼ଲାଟଙ୍କ ସହିତ କୃଷ୍ଣଚନ୍ଦ୍ର ଗଜପତିଙ୍କ ସଂପର୍କ ଥିଲା କ୍ଷୀରନୀର ସଂପର୍କ । ଜର୍ଜ ପଟ୍ଟନାୟକ ପାରଳା ମହାରାଜାଙ୍କୁ ଅନୁରୋଧ କଲେ ବିଜୁଙ୍କୁ କାରାଗାରରୁ ମୁକ୍ତ କରିବା ପାଇଁ । ଅନୁରୋଧ ରକ୍ଷା କରି ପାରଳା ରାଜା ଭାରତର ତଦାନୀନ୍ତନ ବଡ଼ଲାଟ ଲର୍ଡ଼ ୱେଭେଲ୍‌ଙ୍କ ନିକଟକୁ ଗଲେ ଓ ବହୁ ସମୟ ଖୁସି ଗପ କରିବା ଭିତରେ ବିଜୁଙ୍କୁ ଜେଲରୁ ଖଲାସ କରିବାକୁ ଅନୁରୋଧ କଲେ । ଗଜପତିଙ୍କ ଅନୁରୋଧ ଶୁଣି ବଡ଼ଲାଟ ଉତ୍ତର ଦେଲେ– ''ମୁଁ ଆପଣଙ୍କର ସବୁ କଥା ରଖିବି ହେଲେ ବିଜୟାନନ୍ଦଙ୍କୁ ଜେଲରୁ ଖଲାସ କରିପାରିବି ନାହିଁ । ମୁଁ ବିଜୟାନନ୍ଦଙ୍କୁ ଭଲ ଭାବରେ ଜାଣେ । ତାଙ୍କ ପରି ସାହସୀ ପାଇଲଟ ଭାରତ କାହିଁକି ସାରା ପୃଥିବୀରେ କମ୍ ଅଛନ୍ତି । ସେହି ବିଜୟାନନ୍ଦ ମତେ ମରଣ ମୁହଁରୁ ଥରେ ବଞ୍ଚାଇଛନ୍ତି । ତାଙ୍କ ପାଖରେ ଚିରଋଣୀ । ସେ ଜେଲ ଭୋଗୁଥିବାରୁ ଆପଣଙ୍କ ପରି ମୋ ମନ ବଡ଼ ଦୁଃଖ । ହେଲେ ମୁଁ ନିରୁପାୟ । ବିଜୟାନନ୍ଦ ଥରେ ଜେଲରୁ ଖଲାସ ହୋଇଗଲେ, କେଉଁଆଡ଼େ ଉଡ଼ି ପଳାଇବେ ତାଙ୍କୁ ଆଉ ଧରିହେବ ନାହିଁ ।''

ବିଜୁଙ୍କୁ ଗଜପତି ଜେଲରୁ ମୁକୁଳାଇ ପାରିଲେନି ବୋଲି ଅନୁଶୋଚନା ନ ଥିଲା । ଓଡ଼ିଆ ପୁଅର ପ୍ରଶଂସା ଶୁଣି ମହାରାଜା ଭୋକ ଶୋଷ ଭୁଲି ଯାଇଥିଲେ । ଭାରତର ବଡ଼ଲାଟଙ୍କ ମୁହଁରୁ ଜଣେ କାରାଗାର ଅନ୍ତେବାସୀର ପ୍ରଶଂସା ପାରଳାରାଜାଙ୍କୁ ଯେତିକି ବିସ୍ମୟ କଲା ତା'ଠାରୁ ଅଧିକ ଆନନ୍ଦ ଦେଲା । ଏହାଠାରୁ ଗର୍ବ ଓ ଗୌରବର ବିଷୟ ଆଉ କ'ଣ ଥାଇପାରେ ?

### କୀର୍ତ୍ତି କୋଣାର୍କର କାରିଗର

ଯାହାର ଦୃଷ୍ଟି ଯେପରି ତା'ର ସୃଷ୍ଟି ସେପରି । ସୃଷ୍ଟି ପାଇଁ ସ୍ରଷ୍ଟା ହୁଏ ଅମର । ବ୍ୟକ୍ତିଦୃଶ୍ୟ ବ୍ୟକ୍ତିତ୍ୱ ଅଦୃଶ୍ୟ। ବ୍ୟକ୍ତିତ୍ୱ ପାଇଁ ଗଣମନରେ ବ୍ୟକ୍ତିସତ୍ତା କାଳ କାଳ ଧରି ସ୍ମରଣ ରହେ । ବିଜୁବାବୁ ଥିଲେ ଶିଳ୍ପ ପ୍ରତିଷ୍ଠାନର ପ୍ରଖ୍ୟାପକ ଓ କଳାନୈପୁଣ୍ୟର କାରିଗର । ଗରିବ ପାଇଁ ଥିଲେ ଦୟାର ଅବତାର ଶ୍ରମିକ ପାଇଁ ସେ ଥିଲେ ସମୟର ସ୍ଥପତି । କାରାଗାରରୁ ମୁକ୍ତ ହେବା ପରେ ବହୁ ଘାତ ପ୍ରତିଘାତ ଭିତରେ ଚୌଦ୍ୱାରରେ ବସାଇଲେ ବିଜୁ ଲୁଗାକଳ । ଭଲ କାମ କରିବାକୁ ଗଲେ ବହୁ ବାଧାବିଘ୍ନ ପହଞ୍ଚିବ । ସବୁକୁ ପଦାନତ କରି ଆଗକୁ ଯିବାକୁ ପଡ଼ିବ – ଏହା ଥିଲା ବିଜୁବାବୁଙ୍କ ମାନବିକତାର ପରମ ଆଦର୍ଶ । ମିଥ୍ୟା କେବେ ସତ୍ୟର ପଥରୋଧ କରିପାରେନା । ବିଜୁ ସତ୍ୟର ପୂଜାରୀ । ଚୌଦ୍ୱାର ଲୁଗାକଳରେ ବହୁ ଶ୍ରମିକ କାମ ପାଇଲେ, ଗମନାଗମନର ସୁବିଧା ହେଲା । ଟାଙ୍ଗରା ଭୂଇଁ ବିଜୁଳି ଆଲୁଅରେ ହସି ଉଠିଲା । ଗାଆଁକୁ ମିଳିଲା କାମ, ମାଆକୁ ମିଳିଲା ସମ୍ମାନ । ଓଡ଼ିଶାବାସୀଙ୍କୁ ଚୌଦ୍ୱାରର ଲୁଗାକଳ ବିଜୁବାବୁଙ୍କ ପ୍ରଥମ ଅବଦାନ ।

ବିଜୁବାବୁଙ୍କ ସ୍ୱପ୍ନ ଥିଲା ଓଡ଼ିଆ ପୁଅ ସବୁ କ୍ଷେତ୍ରରେ ଆଗରେ ରହନ୍ତୁ ଓ ଆତ୍ମନିର୍ଭରଶୀଳ ଜୀବନ ବଞ୍ଚନ୍ତୁ । ସୁପ୍ତ ଓଡ଼ିଆ ଜାତିକୁ ସାହସୀ, ଜାଗ୍ରତ କରିବା ପାଇଁ ସମୟର ସବ୍ୟସାଚୀ ବିଜୁ 'ଓଡ଼ିଶା ଫ୍ଲାଇଙ୍ଗ୍ କ୍ଲବ' ନାମକ ଏକ ଅନୁଷ୍ଠାନ ଗଢ଼ିଥିଲେ । କ୍ଲବର ସଭାପତି ଥିଲେ ଡକ୍ଟର ହରେକୃଷ୍ଣ ମହତାବ । କ୍ଲବ ପରିଚାଳନା କରିବା ପାଇଁ କରାଚିରୁ ଜଣେ ଦକ୍ଷ ଇଞ୍ଜିନିୟରଙ୍କୁ ରେଡ଼ିଓ ଅଫିସର କରି ଆଣିଥିଲେ । ଟାନା ସାହେବ କରାଚିର ହେଲେ ମଧ୍ୟ ବିଜୁଙ୍କ ଅନୁରକ୍ତ ଥିଲେ । ବିଜୁଙ୍କ କଳାକୁଶଳତା ଓ କାର୍ଯ୍ୟଦକ୍ଷତାକୁ କରାଚି ସାହେବ ଭୂରି ଭୂରି ପ୍ରଶଂସା କରୁଥିଲେ । ଜୀବନ ବିଦ୍ୟାଳୟର ବିଜୁ ଥିଲେ ଜଣେ ସାର୍ଥକ ସାଧକ ଓ ଧୂରୀଣ ଧୂର୍ଜଟୀ ।

ଚୌଦ୍ୱାରର ଲୁଗାକଳ ପରେ 'କଳିଙ୍ଗ ଟ୍ୟୁବ୍‌ସ' କାରଖାନା ବସାଇ ଲୋକଙ୍କୁ କାମ ଦେଲେ ଓ 'କଳିଙ୍ଗ ରେଫ୍ରିଜେରେଟର୍ସ', 'କଳିଙ୍ଗ ଇଣ୍ଡଷ୍ଟ୍ରିଜ' ଗଢ଼ି ଚୌଦ୍ୱାରକୁ ସମୃଦ୍ଧ କରିବା ସହିତ ଓଡ଼ିଶାକୁ ବିଶ୍ୱଦରବାରରେ ସ୍ଥାନ ଦେଲେ ।

ବିଜ୍ଞାନକୁ ଜାତୀୟ ସ୍ତରରେ ଲୋକପ୍ରିୟ କରିବା ନିମନ୍ତେ ପ୍ରଜ୍ଞାପୁରୁଷ ବିଜୁ ପଟ୍ଟନାୟକ 'କଳିଙ୍ଗ ପୁରସ୍କାର' ଆରମ୍ଭ କରିଥିଲେ । ଓଡ଼ିଶାର ଜନଜୀବନ ବାର୍ତ୍ତାକୁ ପ୍ରଚାର କରିବା ପାଇଁ ସେ 'କଳିଙ୍ଗ' ନାମକ ଦୈନିକ ସମ୍ବାଦପତ୍ର ପ୍ରକାଶ କରି ସାଧାରଣରେ ବହୁ ଆଲୋଚିତ ହୋଇଥିଲେ । ସେ ଶିକ୍ଷାରେ ସଂସ୍କାର ଆଣିବା ସଙ୍ଗେ ସଙ୍ଗେ ଗ୍ରାମପଞ୍ଚାୟତର ଜନମଙ୍ଗଳ କାର୍ଯ୍ୟଗୁଡ଼ିକୁ ସୁଚାରୁରୂପେ ଅନୁଧ୍ୟାନ କରୁଥିଲେ ।

ପଞ୍ଚଚାଳିଶ ବର୍ଷ ବୟସରେ ବିଜୁ ମୁଖ୍ୟମନ୍ତ୍ରୀ ପଦରେ ଅଭିଷିକ୍ତ ହୋଇଥିଲେ । ଦେଶବାସୀଙ୍କର ସେବା କରିବାକୁ ସୁଯୋଗ ପାଇଲେ । ପାରାଦ୍ୱୀପରେ ଭାରତର ସବୁଠାରୁ ବୃହତ୍ ଓ ଗଭୀରତମ ବନ୍ଦର ନିର୍ମାଣ କଲେ । ଓଡ଼ିଶାର ଏକ୍ସପ୍ରେସ ପଥ ନିର୍ମାଣ ତାଙ୍କ ହାତର ତାରକସୀ କାମ । ଶିଳ୍ପର ପ୍ରସାର ପାଇଁ ଶିଳ୍ପବିକାଶ ସଂସ୍ଥା ଗଠନ କରି, ଶିଳ୍ପପତିମାନଙ୍କ ସହିତ ଭାବ ବିନିମୟରେ ଓଡ଼ିଶାର ପ୍ରଭୂତ ଉନ୍ନତି କଲେ । କୋରାପୁଟର ସୁନାବେଡ଼ାଠାରେ ମିଗ୍‌ବିମାନ କାରଖାନା, ଭୁବନେଶ୍ୱରଠାରେ ସୈନିକ ସ୍କୁଲ, ଆଞ୍ଚଳିକ ଗବେଷଣା କେନ୍ଦ୍ର, ଆଞ୍ଚଳିକ ଶିକ୍ଷା ପ୍ରତିଷ୍ଠାନ ପ୍ରଭୃତି ଅନୁଷ୍ଠାନ ବିଜୁଙ୍କ ମନୀଷା ଓ ଦୂରଦୃଷ୍ଟିର ପ୍ରତୀକ ।

ବିଜୁବାବୁଙ୍କ ସମୟରେ ପାଠ୍ୟପୁସ୍ତକ ଜାତୀୟକରଣ ହୋଇଥିଲା । ରେଭେନ୍‌ସା ସାନ୍ଧ୍ୟ କଲେଜ, ଭୁବନେଶ୍ୱର ଆଞ୍ଚଳିକ ଶିକ୍ଷା ମହାବିଦ୍ୟାଳୟ, ରାଉରକେଲା ଆଞ୍ଚଳିକ ଇଞ୍ଜିନିୟରିଂ ମହାବିଦ୍ୟାଳୟ ପ୍ରଭୃତି ଶିକ୍ଷାନୁଷ୍ଠାନ ବିଜୁଙ୍କ ପରିଶ୍ରମର ବିରଳ ଉଦାହରଣ । ବିଜୁବାବୁଙ୍କ ମନ୍ତ୍ରିମଣ୍ଡଳ ସମୟରେ ଚଉତିରିଶ ଗୋଟି ବେସରକାରୀ କଲେଜ ଓଡ଼ିଶାରେ ସ୍ଥାପନ ହୋଇଥିଲା ।

ବେସରକାରୀ ଉଦ୍ୟମରେ ପ୍ରତିଷ୍ଠିତ ପୁରୀ, ବାଲେଶ୍ୱର, ବଲାଙ୍ଗୀର ଓ ସମ୍ବଲପୁର ଏପରି ଚାରିଗୋଟି ମହିଳା କଲେଜକୁ ବିଜୁବାବୁଙ୍କ ସମୟରେ ସରକାର ହାତକୁ ନେଲେ । ଢେଙ୍କାନାଳ, ସୁନ୍ଦରଗଡ଼, କେନ୍ଦୁଝର, କଳାହାଣ୍ଡିରେ ଥିବା ଚାରୋଟି ବେସରକାରୀ କଲେଜ ସରକାରୀ ହୋଇଥିଲା । ସବୁ ଜିଲ୍ଲାର ସଦର ମହକୁମାରେ ବିଜୁବାବୁ ଚାହୁଁଥିଲେ ଗୋଟିଏ ଲେଖାଏଁ ସରକାରୀ କଲେଜ ସ୍ଥାପନ ହେଉ । ଚାରିଆଡ଼େ ଶିକ୍ଷାର ପ୍ରସାର ଓ ବିସ୍ତାର ହେଉ ।

**ଅମୃତ ଆଲୋକର ଅବସାନ :**

ଓଡ଼ିଶାର ପୁରପଲ୍ଲୀରେ ବୈଭବ ଲକ୍ଷ୍ମୀଙ୍କର ପୂଜା ଚାଲିଥାଏ । ସଧବା ନାରୀମାନେ ନବବସ୍ତ୍ର ପରିଧାନ କରି ମାଣବସା ଗୁରୁବାର ପାଳନ କରୁଥାନ୍ତି । ତରୁଣ ଅରୁଣ ଆଭାରେ ତଟିନୀ ତଟମାଳିନୀ ଜନନୀ ହସୁଥାଏ । ସୁବର୍ଣ୍ଣ ସକାଳର ମନ୍ଦ ମରୁତ ଦେହରେ ଶିହରଣ ଆଣୁଥାଏ । କିଏ କେଉଁଠି ଥାଏ କାହାର ପତା ନ ଥାଏ । ୧୯୯୭ ମସିହା ଏପ୍ରିଲ ମାସ ୧୭ ତାରିଖ ପବିତ୍ର ଗୁରୁବାର ସୁଦଶାବ୍ରତ ପାଳନ ଅବସରରେ ଦିନ ୮ଟା ୧୫ ମିନିଟ୍‌ରେ ଓଡ଼ିଆ ଜାତିର ସ୍ୱାଭିମାନର ସ୍ୱରୂପ, ମହାନାୟକ ବିଜୟାନନ୍ଦ ପଟ୍ଟନାୟକଙ୍କର ଜୀବନ ପ୍ରଦୀପର ଅବସାନ ହେଲା ।

ଅନନ୍ତ ଅମୃତ ଆଲୋକର ଅବସାନ ସାରା ବିଶ୍ୱକୁ ଚକିତ କରିଦେଲା । ଦିଲ୍ଲୀରୁ ପଲ୍ଲୀ, କଟକରୁ କୋରାପୁଟ, ଭୁବନେଶ୍ୱରରୁ ଭବାନୀପାଟଣା, ଛତିଆରୁ ଛତିଶଗଡ଼, ସୁନ୍ଦରଗଡ଼ରୁ ସିକନ୍ଦରବାଦ, ଆଠଗଡ଼ରୁ ଅନୁଗୋଳ, ସୁନାବେଡ଼ାରୁ ସୋନପୁର, ଫୁଲବାଣୀରୁ ଫରିଦାବାଦ, ଇଞ୍ଜୁଡ଼ିରୁ ଇଣ୍ଡୋନେସିଆ, ଜାକର୍ତ୍ତାରୁ ଜାରକା, ପିପିଲିରୁ ଫିଲପାଇନ୍‌ସ, କେରଳରୁ କୋଇମ୍ବାଟୁର, ବାରିପଦାରୁ ବିଶାଖାପାଟନା, ଯିଏ ଯେଉଁଠି ଥିଲେ ବିଜୁଙ୍କ ଶେଷ ଦର୍ଶନ ନିମନ୍ତେ ଭୁବନେଶ୍ୱର ବିମାନବନ୍ଦରକୁ ଆସିଥିଲେ । ପୁରୀରେ ବିଜୁଙ୍କ ଶବ ଶୋଭାଯାତ୍ରା ସମୟରେ ଦ୍ୱିତୀୟ ରଥଯାତ୍ରାର ଲୋକ ଅଶ୍ରୁଳ ନୟନରେ ଶେଷ ଦର୍ଶନ କରିଥିଲେ । ଆଧୁନିକ ଓଡ଼ିଶାର ନିର୍ମାତା, ଓଡ଼ିଆ ସ୍ୱାଭିମାନର ପ୍ରତୀକ, ଜାତୀୟ ରାଜନୀତିର ପ୍ରବାଦପୁରୁଷ, ମାଟିମଲାଟର ମହାନାୟକଙ୍କ ପ୍ରସ୍ଥାନ, ଉତ୍କଳ ଜନନୀର ଅଙ୍କ ଚିରଦିନ ଶୂନ୍ୟ ହୋଇ ରହିଲା, ଏଥିରେ ତିଳେ ହେଲେ ସନ୍ଦେହର ଅବକାଶ ନାହିଁ ।



# ଶ୍ରୀ ସନ୍ତାନ ଗୋପାଳ (ଚତୁର୍ଭୁଜ ଶ୍ରୀକୃଷ୍ଣ)

ବାଳକୃଷ୍ଣ ଦାଶ

ମହାପ୍ରଭୁ ଶ୍ରୀକୃଷ୍ଣଙ୍କ ଦଣ୍ଡାୟମାନ ଅତୀବ କମନୀୟ ମୂର୍ତ୍ତି । ଓଡ଼ିଶାର ଶ୍ରୀଜଗନ୍ନାଥ ବଲ୍ଲଭ ମଠ ପରିସର ମଧ୍ୟସ୍ଥ ଏକଗୋଟି ପକ୍କା ବଖରା ମଧ୍ୟରେ ସିଂହାସନ ଗଢ଼ାଯାଇ ସେଠାରେ ସ୍ଥାପିତ । ଏଠାରେ ମହାପ୍ରଭୁ ଶ୍ରୀକୃଷ୍ଣ ଚତୁର୍ଭୁଜ ମୂର୍ତ୍ତି ଧାରଣ କରିଛନ୍ତି । ଚକ୍ର ଚିହ୍ନିତ ପ୍ରାୟ ଦଶମୂର୍ତ୍ତି ଜୀବନ୍ତ ଶାଳଗ୍ରାମ ଶ୍ରୀକୃଷ୍ଣଙ୍କ ନିକଟରେ ଅବସ୍ଥାନ କରିଛନ୍ତି । ପ୍ରଭୁଙ୍କର ଚଳନ୍ତି ପ୍ରତିମା ଦୋଳଗୋବିନ୍ଦ ମଧ୍ୟ ଏଠାରେ ପୂଜିତ । ଅନ୍ୟ ଏକ କୋଠରିରେ ରାୟ ରାମାନନ୍ଦ, ଶ୍ରୀଚୈତନ୍ୟ ଦ୍ୱୟ ଅନ୍ୟ ଏକ ସିଂହାସନ ଉପରେ ଅବସ୍ଥିତ । ଅନ୍ୟ ଏକ ବଖରାରେ ଶ୍ରୀଜଗନ୍ନାଥ, ଶ୍ରୀବଳଭଦ୍ର, ମା'ସୁଭଦ୍ରା ଓ ସୁଦର୍ଶନ ସିଂହାସନ ଉପରେ ସ୍ଥାପିତ ଓ ପୂଜିତ । କୋଠରି ସମ୍ମୁଖରେ ଏକ କମନୀୟ ଗରୁଡ ମୂର୍ତ୍ତି ମଧ୍ୟ ବାରଣ୍ଡାରେ ଅବସ୍ଥିତ । ଏସବୁ ମୂର୍ତ୍ତିମାନଙ୍କର ଅବସ୍ଥିତି ଦର୍ଶନାର୍ଥୀ ଭକ୍ତମାନଙ୍କ ହୃଦୟରେ ଯୁଗପତ୍ ଭକ୍ତିଭାବ ଉଦ୍ରେକ କରେ । ଏମାନଙ୍କ ମଧ୍ୟରେ ପ୍ରଭୁ ସନ୍ତାନ ଗୋପାଳ ବା ଚତୁର୍ଭୁଜ ଶ୍ରୀକୃଷ୍ଣ ଜଗନ୍ନାଥ ବଲ୍ଲଭ ମଠର ମୁଖ୍ୟ ଦେବତା ।

ଶ୍ରୀଜଗନ୍ନାଥ ବଲ୍ଲଭ ମଠ ସରକାରୀ ପରିଚାଳନାଧୀନ । ଦେବୋତ୍ତର ବିଭାଗ ଓଡ଼ିଶା ସରକାରଙ୍କ ଦ୍ୱାରା ଜଣେ କାର୍ଯ୍ୟ ନିର୍ବାହୀ ଅଧିକାରୀଙ୍କର ନିଯୁକ୍ତି ଦେବୋତ୍ତର କମିଶନରଙ୍କ ଦ୍ୱାରା ହୋଇଥାଏ । ଦେବୋତ୍ତର କମିଶନରଙ୍କ ଦ୍ୱାରା ତିନିବର୍ଷରେ ଥରେ ଏକ ଟ୍ରଷ୍ଟବୋର୍ଡ ମନୋନୀତ କରାଯାଇ ସଭାପତିଙ୍କ ଉପରେ ସମସ୍ତ ପ୍ରଶାସନିକ ଓ ଆର୍ଥିକ ଭାର ନ୍ୟସ୍ତ କରାଯାଇଥାଏ । କାର୍ଯ୍ୟନିର୍ବାହୀ ଅଧିକାରୀ ସଭାପତିଙ୍କ ନିର୍ଦ୍ଦେଶାନୁସାରେ ମଠ ପରିଚାଳନା କରିଥାନ୍ତି । କାର୍ଯ୍ୟନିର୍ବାହୀ ଅଧିକାରୀଙ୍କୁ ସାହାଯ୍ୟ କରିବା ପାଇଁ ଜଣେ ହିସାବ ରକ୍ଷକ ଓ ଜଣେ କିରାଣୀ ନିଯୁକ୍ତି ହୋଇଥାନ୍ତି । ମଠ ପରିଚାଳନା ପାଇଁ ୪/୫ ଜଣ ପରିଚାଳକ ଓ ୨/୩ ଜଣ ପିଅନ ଅଛନ୍ତି । ମଠର ଜମି-ବାଡ଼ି, ତୋଟା-ବଗିଚା ଆଦି ଥିବା ଜାଗାରେ ଜଣେ ଜଣେ ପରିଚାଳକ ଓ ଜଣେ ଜଣେ ପିଅନ ଅଛନ୍ତି । ଏସବୁ ଜାଗାରେ ମଠର କାର୍ଯ୍ୟାଳୟ ଅବସ୍ଥିତ । ସମସ୍ତ କାର୍ଯ୍ୟାଳୟ ଓ କର୍ମଚାରୀଙ୍କର କାର୍ଯ୍ୟକୁ କାର୍ଯ୍ୟନିର୍ବାହୀ ଅଧିକାରୀ ତନଖି କରିଥାନ୍ତି ଓ ମାସିକ ବେତନ ଦେବା ପାଇଁ ସଭାପତିଙ୍କ ନିକଟକୁ ପ୍ରତି ମାସରେ ନଥି ପେଶ୍ କରିଥାନ୍ତି ।

ଯେଉଁ ପର୍ଯ୍ୟନ୍ତ କାର୍ଯ୍ୟନିର୍ବାହୀ ଅଧିକାରୀ ମଠରେ ନିଯୁକ୍ତି ପାଇନଥାନ୍ତି, ସେତେବେଳ ପର୍ଯ୍ୟନ୍ତ ସଭାପତିଙ୍କର ତତ୍ତ୍ୱାବଧାନରେ ସମସ୍ତ କାର୍ଯ୍ୟ ପରିଚାଳିତ ହୋଇଥାଏ । ଶ୍ରୀଜଗନ୍ନାଥ ବଲ୍ଲଭ ମଠରେ ସଂରକ୍ଷିତ ରେକର୍ଡପତ୍ରରୁ ଜଣାଯାଏ ସନ ୧୮୭୬ ମସିହା ପର୍ଯ୍ୟନ୍ତ ଏହି ମଠର ପରିଚାଳନା ଭାର ମହନ୍ତମାନଙ୍କର ହାତରେ ନ୍ୟସ୍ତ ଥିଲା ଓ ମଠ ମହନ୍ତମାନଙ୍କ ଦ୍ୱାରା ସ୍ୱାଧୀନ ଭାବରେ ପରିଚାଳିତ ହେଉଥିଲା । ଶେଷ ମହନ୍ତ ଶ୍ରୀରାମଚନ୍ଦ୍ର ଦାସଙ୍କୁ ଗୁରୁତର ଅପରାଧରେ ୧୮୭୬ ମସିହାରେ ବହିଷ୍କାର କରାଯାଇଥିଲା । ତା' ପରଠାରୁ ଏହି ମଠ ସରକାରୀ ପରିଚାଳନାଧୀନ ରହିଅଛି ।

ଚୈତନ୍ୟ ଚରିତାମୃତରୁ ଜଣାଯାଏ,

'ଜଗନ୍ନାଥ ବଲ୍ଲଭ ବଡପୁଷ୍ପାରାମ
ନବଦିନ କରେନ୍ ପ୍ରଭୁ ତାହି ତେ ବିଶ୍ରାମ୍'

ଶ୍ରୀଚୈତନ୍ୟ ମହାପ୍ରଭୁଙ୍କ ପୁରୀ ଆଗମନ ସମୟରେ ଶ୍ରୀଜଗନ୍ନାଥ ବଲ୍ଲଭ ମଠରେ ରହି ରାୟ ରାମାନନ୍ଦଙ୍କର ସାନ୍ନିଧ ପାଇଥିଲେ । ଗଜପତି ଶ୍ରୀ ପ୍ରତାପରୁଦ୍ର ଦେବଙ୍କ ଶାସନ କାଳ ସନ ୧୪୯୭ରୁ ୧୫୩୫ ଖ୍ରୀଷ୍ଟାବ୍ଦ ମଧ୍ୟରେ ହୋଇଥିଲା । ପ୍ରଫେସର ଶ୍ରୀ କୃଷ୍ଣଚନ୍ଦ୍ର ଦେବଙ୍କ ମତାନୁଯାୟୀ କୃଷ୍ଣଙ୍କୁ ଯେତେବେଳେ ନାରାୟଣ-ମାଧବ ରୂପରେ ଗ୍ରହଣ କରାଯାଉଥିଲା, ସେହି ସମୟରେ ରାଧାକୃଷ୍ଣଙ୍କୁ ମଧ୍ୟ ଏକକ ମୂର୍ତ୍ତି ରୂପେ ପୂଜା କରାଯାଉଥିଲା । ତେଣୁ ତ୍ରୟୋଦଶ ଶତାବ୍ଦୀରୁ ଏହି ମଠ ପ୍ରତିଷ୍ଠିତ । କାରଣ ମଠର ଅଧିଷ୍ଠିତ ବିଗ୍ରହ ହେଉଛନ୍ତି ଶ୍ରୀ ଚତୁର୍ଭୁଜ ଗୋପାଳ ଜୀଉ । ଶ୍ରୀକୃଷ୍ଣଙ୍କ ଉପର ଦୁଇହାତରେ ଶଙ୍ଖ ଓ ଚକ୍ର  ଓ ନିମ୍ନ ଦୁଇଟି ହାତରେ ବଂଶୀଧରି ବାଦନ କରୁଛନ୍ତି । ଏହା କୃଷ୍ଣ-ବିଷ୍ଣୁଙ୍କର ସମ୍ମିଶ୍ରଣ ଚିହ୍ନ ।

ଶ୍ରୀଚୈତନ୍ୟ ମହାପ୍ରଭୁଙ୍କର ଓଡ଼ିଶା ଆଗମନ ଗଜପତି ମହାରାଜା ଶ୍ରୀ ପ୍ରତାପରୁଦ୍ର ଦେବଙ୍କ ଶାସନ କାଳ ପଞ୍ଚଦଶ ଶତାବ୍ଦୀର ଶେଷାର୍ଦ୍ଧ ଓ ଶେଷ ଶତାବ୍ଦୀର ପ୍ରଥମାର୍ଦ୍ଧରେ ହୋଇଥିଲା । ଶ୍ରୀଚୈତନ୍ୟ ମହାପ୍ରଭୁ ପୁରୀରେ ବହୁ ସମୟ ଅତିବାହିତ କରୁଥିଲେ । ତାଙ୍କର ନଦିୟା ନବଦ୍ୱୀପ ଯେତିକି ପ୍ରିୟ ଥିଲା ପୁରୀ ବା ପୁରୁଷୋତ୍ତମ କ୍ଷେତ୍ର ସେତିକି ପ୍ରିୟ ଥିଲା । ସେତିକିବେଳେ ଶ୍ରୀଜଗନ୍ନାଥ ବଲ୍ଲଭ ମଠର ପ୍ରଥମ ପରିଚାଳକ ବା ମହନ୍ତ ରୂପେ ରାୟ ରାମାନନ୍ଦଙ୍କୁ ପ୍ରତାପରୁଦ୍ର ଦେବ ଅଧିଷ୍ଠିତ କରିଥିଲେ । ସେ ରାଜାଙ୍କର କେତେଜଣ ଦେଓ୍ୱାନଙ୍କ ମଧ୍ୟରୁ ଜଣେ ଦେଓ୍ୱାନ ଥିଲେ ଓ ରାଜ ମହେନ୍ଦ୍ରିରେ ଥିବା ରାଜାଙ୍କର ସମ୍ପତ୍ତି ବାଡିର ରକ୍ଷଣାବେକ୍ଷଣ କରୁଥିଲେ । ସେ ଜଣେ ପରମ ବୈଷ୍ଣବ ଥିଲେ । ତାଙ୍କୁ ଶ୍ରୀଚୈତନ୍ୟ 'ହରେକୃଷ୍ଣ ହରେରାମ ମନ୍ତ୍ର'ର ମଧୁର ବାଣୀ ପ୍ରଚାର କରିବାର ଅବକାଶ ଦେଇ ପୁରୀକୁ ଫେରିବା ସମୟରେ ରାୟ ରାମାନନ୍ଦ ମଧ୍ୟ ତାଙ୍କ କୀର୍ତ୍ତନ ଦଳ ମଧ୍ୟରେ କୀର୍ତ୍ତନ କରି କରି ରାଜମହେନ୍ଦ୍ରିରୁ ପୁରୀ ଫେରିଆସି ଜଗନ୍ନାଥ ବଲ୍ଲଭ ମଠରେ ଅବସ୍ଥାନ କଲେ । ରାଜା ପ୍ରତାପରୁଦ୍ର ଦେବ ମଧ୍ୟ ଗୌଡୀୟ ଧର୍ମରେ ଦୀକ୍ଷିତ ହେଲେ ଓ ହରେକୃଷ୍ଣ ହରେରାମ ମନ୍ତ୍ର ମଧ୍ୟରେ ମଜ୍ଜି ରହିଲେ । ସେତେବେଳେ ଜଗନ୍ନାଥ ବଲ୍ଲଭ ମଠର ଜମିବାଡି, ତୋଟା, ବଗିଚା, ପୁଷ୍କରିଣୀ ମଠ ପରିସରଭୁକ୍ତ କରି ରାୟ ରାମାନନ୍ଦଙ୍କୁ ଅବସ୍ଥାପିତ କଲେ । ତେଣୁ ଶ୍ରୀଚୈତନ୍ୟ ମହାପ୍ରଭୁ ନଦିୟା ନବଦ୍ୱୀପରୁ ଆଗମନ କାଳରେ ରାୟ ରାମାନନ୍ଦଙ୍କର ସାନ୍ନିଧ ଲାଭ କରିବା ପାଇଁ କୀର୍ତ୍ତନ ଦଳ ସହିତ ସେଠାରେ ଅବସ୍ଥାନ କରୁଥିଲେ । ପରେ ରାଧାକାନ୍ତ ମଠ ନାମରେ ଏକ ମଠ ଓ ଏହା ସହିତ ଜମିବାଡି, କୋଠା ଇତ୍ୟାଦି ସ୍ୱତନ୍ତ୍ର ଭାବରେ ଚୈତନ୍ୟ ମହାପ୍ରଭୁଙ୍କୁ ରାଜା ଦାନ କରିଥିଲେ । ସେହିଠାରେ ଚୈତନ୍ୟ ମହାପ୍ରଭୁ ଯେଉଁ ବଖରାରେ ରହୁଥିଲେ ତାକୁ 'ଗୌର ବଖରା' ବା 'ଗୌର ଗମ୍ଭୀରା' ବୋଲି କୁହାଯାଉଥିଲା । ଏବେ ମଧ୍ୟ ସେ ଗୌର ବଖରା ଅବସ୍ଥିତ ଓ ଚୈତନ୍ୟ ନିତ୍ୟାନନ୍ଦ ମହାପ୍ରଭୁଙ୍କର କମନୀୟ ମୂର୍ତ୍ତି ସେଠାରେ ଅବସ୍ଥିତ । ଚୈତନ୍ୟ ମହାପ୍ରଭୁ ସେଠାରେ ଅବସ୍ଥାନ କରୁଥିବା ସମୟରେ ବଉଳ ଗଛର କାଠିରେ ଦାନ୍ତକାଠି କରି ଦାନ୍ତ ଘଷୁଥିଲେ । ଏକଦା ଦାନ୍ତକାଠିକୁ ଦିଭାଗ କରି ଜିଭ ଛେଲିଲା ପରେ ତାକୁ ବର୍ତ୍ତମାନର ବକୁଳ ମଠ ପରିସରରେ ପୋତି ଦେଇଥିଲେ ଓ ଢାଳରୁ ଅବଶିଷ୍ଟ ପାଣି ଢାଳି ଦେଇଥିଲେ । ପାଣି ପାଇ ସେହି ଦାନ୍ତକାଠି ଜୀବନ୍ତ ହେଲା ଏବଂ ଏକ ବିରାଟ ବଉଳ ଗଛରେ ପରିଣତ ହେଲା । ତାହା ବର୍ତ୍ତମାନ ମଧ୍ୟ ବକୁଳମଠ ତା ବଉଳମଠ ପରିସରରେ ବିଦ୍ୟମାନ । ଏହି ବଉଳ ଗଛର ପରିସରରେ ରାଜାଙ୍କ ଅନୁଗ୍ରହରୁ ଏକ ମଠ ସ୍ଥାପିତ ହେଲା । ବଉଳ ଗଛର ନାମାନୁସାରେ ଏହା ବଉଳ ମଠ ବା ବକୁଳ ମଠରେ ପରିଣତ ହେଲା । ରାଧାକାନ୍ତ ମଠ ସହିତ ଏହି ମଠ ଓ ଏହା ପାଇଁ ଖଞ୍ଜା ବାଡି ଦେଇ ରାଜା ଶ୍ରୀଚୈତନ୍ୟ ମହାପ୍ରଭୁଙ୍କ ନାମରେ ଦାନ କରିଥିଲେ । ଶ୍ରୀଚୈତନ୍ୟ ମହାପ୍ରଭୁ ରାଧାକାନ୍ତ ମଠରେ ଓ ବଉଳ ମଠରେ ତାଙ୍କ ଆଜ୍ଞାଧୀନ ଦୁଇଜଣ ଭକ୍ତଙ୍କୁ ମହନ୍ତ ହିସାବରେ ବରଣ କରିଥିଲେ । ଏବେ ମଧ୍ୟ ସେହି ମହନ୍ତମାନଙ୍କର ଶିଷ୍ୟ ପ୍ରଶିଷ୍ୟମାନେ ଏହି ମଠଦ୍ୱୟରେ ଅବସ୍ଥିତ । ଅବଶ୍ୟ ସରକାରଙ୍କର ଦେବୋତ୍ତର ଆଇନ ପ୍ରବର୍ତ୍ତନ ହେଲା ପରେ ଦେବୋତ୍ତର କମିଶନରଙ୍କ ଶାସନାଧୀନ ହୋଇଅଛି । ଶ୍ରୀ ରାୟ ରାମାନନ୍ଦ ଓ ଚୈତନ୍ୟ ମହାପ୍ରଭୁଙ୍କର ମିଳନ ମଣିକାଞ୍ଚନ ସ୍ୱରୂପ ପ୍ରସିଦ୍ଧି ଲାଭ କରିଥିଲା । ତାଙ୍କ ଦୁଇଜଣଙ୍କର ଭାବଧାରାରେ ଓଡ଼ିଶାର ପୁରପଲ୍ଲୀରେ 'ହରେ ରାମ ହରେ କୃଷ୍ଣ' ମନ୍ତ୍ରର ଧ୍ୱନି ବ୍ୟାପିଗଲା । ଶ୍ରୀଚୈତନ୍ୟ ମହାପ୍ରଭୁ ଆଉ ନାହାନ୍ତି କିମ୍ବା ଶ୍ରୀ ରାୟ ରାମାନନ୍ଦ ମଧ୍ୟ ନାହାନ୍ତି ।

ଗଜପତି ମହାରାଜା ପ୍ରତାପରୁଦ୍ର ଦେବ ମଧ୍ୟ କେବେଠାରୁ ଶରୀର ତ୍ୟାଗ କଲେଣି । କିନ୍ତୁ ସେମାନଙ୍କର ନାମ ଓଡ଼ିଶାର ପୁରପଲ୍ଲୀରେ ପ୍ରତିଧ୍ୱନିତ ।

ଇଏତ ଗଲା ଶ୍ରୀ ସନ୍ତାନ ଗୋପାଳ ବା ଚତୁର୍ଭୁଜ ଶ୍ରୀକୃଷ୍ଣ ମହାପ୍ରଭୁଙ୍କର ଐତିହାସିକ ତଥ୍ୟ ଓ କିଛି କିମ୍ବଦନ୍ତୀୟ ତଥ୍ୟ । ବିସ୍ତୃତ କିମ୍ବଦନ୍ତୀ ଓ ତଥ୍ୟ କୁହେ- ଶ୍ରୀକୃଷ୍ଣ ଓ ଜ୍ୟେଷ୍ଠ ଭ୍ରାତା ଶ୍ରୀବଳରାମ ସନ୍ଦିପନୀ ମୁନିଙ୍କ ଆଶ୍ରମରେ ରହି ଶିକ୍ଷା ସମାପ୍ତ କଲେ । ଶିକ୍ଷା ସମାପ୍ତି ପରେ ଗୁରୁଙ୍କୁ ଦକ୍ଷିଣା ଦେବା ଶିଷ୍ୟର ସେସମୟରେ କର୍ତ୍ତବ୍ୟ ଥିଲା । ପ୍ରଭୁ ଶ୍ରୀକୃଷ୍ଣ ଓ ଶ୍ରୀବଳରାମ ଯୋଡ-ହସ୍ତରେ ଗୁରୁଙ୍କୁ ପଚାରିଥିଲେ, କି ପ୍ରକାର ଦକ୍ଷିଣା ଦ୍ୱାରା ଗୁରୁ ସନ୍ତୁଷ୍ଟ ହେବେ । ଗୁରୁ ସନ୍ଦିପନୀ କୃଷ୍ଣ-ବଳରାମଙ୍କୁ ଶିଷ୍ୟ ରୂପରେ ପାଇଥିବାରୁ ତାଙ୍କ ଜୀବନ ଧନ୍ୟ ହୋଇଛି ବୋଲି କହି ଆଉ ଅଧିକ ଦକ୍ଷିଣା ଅନାବଶ୍ୟକ ବୋଲି କହିଥିଲେ । ପରେ ସେମାନେ ଗୁରୁପତ୍ନୀଙ୍କୁ ଭେଟି ଦକ୍ଷିଣା ଯାଚିବାରୁ ସେ ତାଙ୍କର ଏକମାତ୍ର ପୁତ୍ର ତୀର୍ଥାଟନରେ ଯାଇ ତୀର୍ଥ ଜଳରେ ବୁଡି ଯାଇଥିବା ଦର୍ଶାଇ ତାକୁ ପୁନଶ୍ଚ ଉଦ୍ଧାର କରି ଆଣିବାକୁ ଅନୁରୋଧ କରିଥିଲେ । ଗୁରୁପତ୍ନୀ ଦିବ୍ୟ ଦୃଷ୍ଟିରେ ଜାଣିଥିଲେ ଶ୍ରୀକୃଷ୍ଣ ବଳରାମ ଅଲୌକିକ ଶକ୍ତିଧାରୀ ଦେବ ପୁରୁଷ । ତେଣୁ ତାଙ୍କୁ ଏପରି ଏକ ଅନୁରୋଧ କରି ବସିଥିଲେ । ପ୍ରଭୁ ଶ୍ରୀକୃଷ୍ଣ ଓ ବଳରାମ ବରୁଣ ଦେବତାଙ୍କୁ ଆହ୍ୱାନ ଦେଇଥିଲେ । ବରୁଣ ଦେବ ସେମାନଙ୍କୁ ନଚିହ୍ନି ନଶୁଣିବା ଭଳି ରହିବାରୁ ସେ ଦୁଇଜଣ ଶର ନିକ୍ଷେପ କରି ସମୁଦ୍ରକୁ ଶୁଖାଇ ଦେବାକୁ କହିଲେ । ବରୁଣ ଦେବ ଭୟ ପାଇ ଭ୍ରାତା ଦୁହିଁଙ୍କ ସମ୍ମୁଖରେ ଉପସ୍ଥିତ ହେଲେ । ବିନୀତ କଣ୍ଠରେ ସେ ଦୁହେଁ କିଏ ବୋଲି ପଚାରିଥିଲେ । ଉଭୟ ସ୍ୱୟଂ ନାରାୟଣ ଓ ଅନନ୍ତ ଦେବ ମନୁଷ୍ୟ ରୂପରେ ଦୁଷ୍ଟ ଦଳନ କରିବା ପାଇଁ ଅବତାର ଗ୍ରହଣ କରିଥିବା ପ୍ରକାଶ କରିଥିଲେ । ଶ୍ରୀ ବରୁଣଦେବଙ୍କ ଅନୁରୋଧକ୍ରମେ ଶ୍ରୀବଳରାମ ସହସ୍ର ଫେଣାଯୁକ୍ତ ଅନନ୍ତ ନାରାୟଣ ଓ ଶ୍ରୀକୃଷ୍ଣ ଶଙ୍ଖ, ଚକ୍ର, ଗଦା, ପଦ୍ମଧାରୀ ନାରାୟଣ ରୂପେ ଦର୍ଶନ ଦେଇଥିଲେ । ପୁନଶ୍ଚ ବରୁଣ ଦେବଙ୍କ ଅନୁରୋଧକ୍ରମେ ଶ୍ରୀବଳରାମ ହଳ-ମୂଷଳଧାରୀ ସଂକର୍ଷଣ ଓ ଶ୍ରୀକୃଷ୍ଣ ଶଙ୍ଖ-ଚକ୍ର ବଇଁଶୀଧାରୀ ଶ୍ରୀକୃଷ୍ଣ- ବିଷ୍ଣୁ ରୂପରେ ଦେଖାଦେଇଥିଲେ । ଏପରି ଦର୍ଶନ କରି ବରୁଣ ଦେବ ସନ୍ଦିପନୀ ମୁନିଙ୍କ ପୁତ୍ରକୁ ତାଙ୍କଠାରୁ ଯମରାଜ ନେଇ ଯମାଳୟରେ ରଖିଥିବା ପ୍ରକାଶ କରିଥିଲେ । ଦୁହେଁ ସେହି ରୂପରେ ଯମାଳୟ ଯାଇ ଯମଙ୍କୁ ଫେରାଇ ଦେବାକୁ ନିର୍ଦ୍ଦେଶ ଦେଇଥିଲେ । ଯମ ଯୋଡ-ହସ୍ତରେ ପ୍ରଭୁ ଦ୍ୱୟଙ୍କୁ ଆଭୂମ ପ୍ରଣାମ କରି ସଶରୀରେ ଗୁରୁପୁତ୍ରଙ୍କୁ ସମର୍ପଣ କରି ଉଭୟଙ୍କୁ ବିଦାୟ ଦେଇଥିଲେ । ଉଭୟ ଗୁରୁ ଆଶ୍ରମକୁ ଫେରି ଗୁରୁଦକ୍ଷିଣା ସ୍ୱରୂପ ମୁନିପୁତ୍ରଙ୍କୁ ପୂର୍ବାବସ୍ଥାରେ ସମର୍ପଣ କରି ପ୍ରଣାମ ପୂର୍ବକ ଗୁରୁ ଓ ଗୁରୁପତ୍ନୀଙ୍କଠାରୁ ବିଦାୟ ନେଇ ସ୍ୱଗୃହକୁ ପ୍ରତ୍ୟାବର୍ତ୍ତନ କରିଥିଲେ ।

ଏହି କିମ୍ବଦନ୍ତୀୟ ତଥ୍ୟକୁ ଆଧାର କରି ଜଗନ୍ନାଥ ବଲ୍ଲଭ ମଠରେ ମୁଖ୍ୟ ଆରାଧ୍ୟ ଦେବତାଭାବେ ଚତୁର୍ଭୁଜ ଶ୍ରୀକୃଷ୍ଣଙ୍କୁ ଆରାଧନା କରାଯାଉଅଛି । ଏହି କିମ୍ବଦନ୍ତୀୟ ତଥ୍ୟ ଅନୁସାରେ ଚତୁର୍ଭୁଜ ଶ୍ରୀକୃଷ୍ଣଙ୍କ ଅନ୍ୟନାମ ସନ୍ତାନ ଗୋପାଳ । କାରଣ ଗୁରୁ ସନ୍ଦିପନୀଙ୍କର ଛୋଟ ବା ଗୋପାଳ ସନ୍ତାନକୁ ଉଦ୍ଧାର କରି ଫେରାଇ ଥିବାରୁ, ତେଣୁ ତାଙ୍କ ନାମ ସନ୍ତାନ ଗୋପାଳ ।

'ଓଁ ନମୋ ଭଗବତେ ବାସୁଦେବାୟ
ଓଁ ଦ୍ୱାର୍ଭ୍ୟାଂ କରାଭ୍ୟାଂ ଧୃତ ଶଙ୍ଖ ଚକ୍ରମ୍ ।
ଦ୍ୱାର୍ଭ୍ୟାଂ କରାଭ୍ୟାଂ ମୁରଲୀ ଦଧାନମ୍ ।
ସନ୍ଦିପନେ ପୁତ୍ରଃ ଅମ୍ବୁଦାଭ୍ୟାମ୍ ।
ସନ୍ତାନ ଗୋପାଳମହଂ ପ୍ରପଦ୍ୟେ ।'

(ସଂଗୃହୀତ)

ସବୁ ତଥ୍ୟର ତତ୍ତ୍ୱ ଥାଏ । ସନ୍ତାନ ଗୋପାଳ ଉର୍ଦ୍ଧ୍ୱ ଦୁଇ ହସ୍ତରେ ଶଙ୍ଖ-ଚକ୍ର ଧାରଣ କରିଛନ୍ତି । ନିମ୍ନ ଦୁଇ ହସ୍ତରେ ମୂରଲୀ ଧରି ବାଦନ କରୁଛନ୍ତି । ଏହି ସନ୍ତାନ ଗୋପାଳ ଗୁରୁ ସନ୍ଦିପନୀ ମୁନିଙ୍କର ସନ୍ତାନକୁ ଅମ୍ବୁନିଧି ବା ସମୁଦ୍ର ଅଧିପତି ବରୁଣ ଦେବତାଙ୍କଠାରୁ ଖବର ପାଇ ଯମରାଜଙ୍କଠାରୁ ଉଦ୍ଧାର କରି ଗୁରୁଦେବଙ୍କୁ ଅକ୍ଷତ ପୂର୍ବାବସ୍ଥାରେ ପ୍ରଦାନ କରିଥିବାରୁ ତାଙ୍କୁ 'ସନ୍ତାନ ଗୋପାଳ' କୁହାଯାଇଥାଏ । ସେହି ସନ୍ତାନ ଗୋପାଳଙ୍କୁ ମୁଁ ବହୁବାର ପ୍ରଣାମ କରୁଅଛି ।

ସଂସ୍କୃତ ଭାଗବତରେ କୁହାଯାଇଛି-

'ସର୍ବ ବେଦାନ୍ତ ସାରଂ ଯତ୍ ବ୍ରହ୍ମା ଚୈତ୍ୱତ ଲକ୍ଷଣମ୍ ।
ତନିଚ୍ଛ ଦ୍ୱିତୀୟମ୍ ତନିଚ୍ଛ କୈବଲ୍ୟମ୍ ପ୍ରୟୋଜନମ୍ ।

ନିମ୍ନ ଗାନାଂ ଯଥା ଗଙ୍ଗା ଦେବାନାଂ ଅଚ୍ୟୁତ ଯଥା ।
ବୈଷ୍ଣବାନାମ୍ ଯଥାଶମ୍ଭୋ ପୁରାଣାନାମ୍
ଇଦଂ ଦ୍ୱିତୀୟଂ ନାସ୍ତି ।'

(ସଂସ୍କୃତ ଭାଗବତ)

ସମସ୍ତ ବେଦ ବେଦାନ୍ତର ସାର ଏକ ବ୍ରହ୍ମ ଦ୍ୱିତୀୟ ନାସ୍ତି । ଅର୍ଥାତ୍ ସମସ୍ତ ବେଦ ବେଦାନ୍ତର ଏକମାତ୍ର ସାର ହେଉଛନ୍ତି ଶ୍ରୀକୃଷ୍ଣ (ଜଗନ୍ନାଥ) ଅଟନ୍ତି । ସମସ୍ତ ବସ୍ତୁ ମଧ୍ୟରେ ଯେପରି କୈବଲ୍ୟ ବା ମହାପ୍ରସାଦ, ସେହିପରି ଶ୍ରୀକୃଷ୍ଣଙ୍କର ନାମ କୀର୍ତ୍ତନ ଓ ଧ୍ୟାନ ଇତ୍ୟାଦି ଶ୍ରେଷ୍ଠ ବସ୍ତୁ । ସମସ୍ତ ବୈଷ୍ଣବମାନଙ୍କ ମଧ୍ୟରେ ଯେପରି ଶମ୍ଭୁ ବା ଶିବ ପରମ ବୈଷ୍ଣବ, ଯେପରି ନିମ୍ନଗାମୀ ନଦୀମାନଙ୍କ ମଧ୍ୟରେ ମା' ଗଙ୍ଗା ଶ୍ରେଷ୍ଠା, ସେହିପରି ସମସ୍ତ ଗ୍ରନ୍ଥମାନଙ୍କ ମଧ୍ୟରେ ଶ୍ରୀକୃଷ୍ଣ (ଜଗନ୍ନାଥ)ଙ୍କର ମହିମା ବର୍ଣ୍ଣିତ ଗ୍ରନ୍ଥ ସର୍ବଶ୍ରେଷ୍ଠ ଅଟେ । ତେଣୁ ଚତୁର୍ଭୁଜ କୃଷ୍ଣ ହୁଅନ୍ତୁ କିମ୍ବା ବଇଁଶୀଧାରୀ ଶ୍ରୀକୃଷ୍ଣ ହୁଅନ୍ତୁ, ସେ ସର୍ବଶ୍ରେଷ୍ଠ ଦେବତା ।

'ତପସ୍ୱୀନୋ ଦାନପରା ଯଶସ୍ୱୀନୋ ।
ମନସ୍ୱୀନୋ ମନ୍ତ୍ରବିଦୋଃ ସୁମଙ୍ଗଳମ୍ ।
କ୍ଷମଂ ନ ବଦନ୍ତି ଦିନାନା ଦର୍ପଣମ୍ ।
ତସ୍ମୈ ଶୁଭଦ୍ରା ସ୍ରବସେ ନମୋଃନମଃ ।'

(ଜଗନ୍ନାଥ ସ୍ତବକମ୍)

ତପସ୍ୱୀମାନଙ୍କ ତପସ୍ୟା, ଯଶସ୍ୱୀମାନଙ୍କର ଦାନ, ମନସ୍ୱୀମାନଙ୍କର ମନ୍ତ୍ର, ଯାହାଙ୍କୁ ପାଇବା ପାଇଁ ଉଦ୍ଦିଷ୍ଟ, ଯାହାଙ୍କୁ ଅର୍ପଣ ନକଲେ ବା ଯାହାଙ୍କ ନାମ ଉଚ୍ଚାରଣ ନକଲେ କୌଣସି ବସ୍ତୁ ପବିତ୍ର ହୋଇନଥାଏ, ଏପରି ଶ୍ରୀକୃଷ୍ଣ ଜଗନ୍ନାଥଙ୍କୁ ମୁଁ ବାରମ୍ବାର ପ୍ରଣାମ କରୁଛି ।

ପ୍ରଭୁ ଶ୍ରୀକୃଷ୍ଣଙ୍କୁ କେଉଁଠାରେ 'ଯୋଗେଶ୍ୱର', କେଉଁଠାରେ 'ପୀଠେଶ୍ୱର', କେଉଁଠାରେ 'ଶ୍ରୀଜଗନ୍ନାଥ', କେଉଁଠାରେ 'ଇନ୍ଦିରା-ମନ୍ଦିର'ଭାବେ ବର୍ଣ୍ଣନା କରାଯାଇଛି ।

'ବସୁଦେବ ସୁତଂ ଦେବ କଂସ ଚାଣୁର ମର୍ଦ୍ଦନମ୍ ।
ଦେବକୀ-ପରମାନନ୍ଦଂ କୃଷ୍ଣ ବନ୍ଦେ ଜଗତ୍ ଗୁରୁମ୍' ।

(ସଂସ୍କୃତ ଭାଗବତ)

ଗୁରୁଣାଂ ଗୁରୁ ଜଗତ୍ ଗୁରୁ । ପ୍ରଭୁ ବସୁଦେବଙ୍କ ପୁତ୍ର ହେତୁ ବାସୁଦେବ ବା ସମସ୍ତଙ୍କ ହୃଦୟରେ ବାସ କରୁଥିବାରୁ ତାଙ୍କୁ ବାସୁଦେବ କୁହାଯାଏ । ସେ ମାତା ଦେବକୀଙ୍କୁ ପରମ ଆନନ୍ଦ ଦାନ କରୁଥିବାରୁ ତାଙ୍କୁ ପରମାନନ୍ଦ କୁହାଯାଏ । ଏପରି ମହାପ୍ରଭୁଙ୍କୁ ମୋର ଆଭୂମ ପ୍ରଣାମ ।

ଯୋଗେଶ୍ୱରଂ ଚାରୁ ବିଚିତ୍ର ମୌଳି-
ମଜ୍ଞେୟମଗ୍ର୍ୟଂ ପ୍ରକୃତେ ପରସ୍ଥମ୍,
କ୍ଷେତ୍ରଜ୍ଞମାମ୍ ପ୍ରଭବଂ ବରେଣ୍ୟଂ,
ତଂ ବାସୁଦେବଂ ଶରଣ ପ୍ରପଦ୍ୟେ ।

(ସଂସ୍କୃତ ସ୍ତବକମ୍)

ଯେଉଁ ଯୋଗେଶ୍ୱର ପୁରୁଷୋତ୍ତମ ଶ୍ରୀକୃଷ୍ଣ ପ୍ରକୃତିର ପର, ଯେ ଅଜ୍ଞେୟ, ଯେ ଅଗ୍ରପୂଜ୍ୟ-ଅଗ୍ର୍ୟଂ, ଯେ ସମସ୍ତ ପ୍ରାଣୀମାନଙ୍କ ମଧ୍ୟରେ ବିଦ୍ୟମାନ, ସେହି ବିଚିତ୍ର ରୂପଧାରୀ ଯଜ୍ଞପୁରୁଷ ବାସୁଦେବ ଶ୍ରୀକୃଷ୍ଣଙ୍କୁ ମୁଁ ବାରମ୍ବାର ପ୍ରଣାମ କରୁଛି ।

ଜପ, ତପ, ଧ୍ୟାନ, ଯୋଗରେ ଥାଇ ନଥାଉ ତୁହି
ମମତାର ଲୁହ ଝରିଲେ ତୁହି ନପାରୁ ସହି ।
ଧାଇଁ ଆସୁ ଧରାଧାମକୁ ତେଜି ବୈକୁଣ୍ଠପୁର
ଧନ୍ୟ ତୋ ଭକତ ଧନ୍ୟ ତୁ କଳାଠାକୁର ।

(ଭକ୍ତ ମଣ୍ଡଳୀ, ଧାନଘର ଖୋଲ)

ସେହି କଳାଠାକୁର ଶ୍ରୀକୃଷ୍ଣ ଭକ୍ତମାନଙ୍କର ଆତୁରରେ ଚତୁର୍ଭୁଜ ଶ୍ରୀକୃଷ୍ଣ ରୂପରେ ଶଙ୍ଖ ଚକ୍ର ଉର୍ଦ୍ଧ୍ୱ ହସ୍ତରେ ଓ ନିମ୍ନ ହସ୍ତରେ ବଇଁଶୀ ଧାରଣ କରୁଛନ୍ତି । ତାଙ୍କର ମହିମା ଅପାର । ଏପରି ଠାକୁରଙ୍କୁ ବହୁବାର ପ୍ରଣାମ କରୁଛି ।

ଏହି ମଠରେ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ବେଣ୍ଟଯାତ୍ରା, ଫଗୁଦୋଳ ଯାତ୍ରା ଓ ଅନ୍ୟାନ୍ୟ ବହୁ ପର୍ବ ଅନୁଷ୍ଠିତ ହେଉଥିବାରୁ ଏହି ମଠକୁ 'ଜଗନ୍ନାଥ-ବଲ୍ଲଭ' ମଠ କୁହାଯାଏ । ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କର ବଲ୍ଲଭଭୋଗ ଯେପରି ପ୍ରିୟ, ଏହି ମଠ ମଧ୍ୟ ସେପରି ପ୍ରିୟ ।

**ସେବା ପୂଜା**

ଶ୍ରୀଜଗନ୍ନାଥଙ୍କ ସହିତ ଏହି ମଠ ଅଙ୍ଗାଙ୍ଗୀ ଭାବେ ଜଡିତ ଥିବାରୁ ମହାପ୍ରଭୁଙ୍କର ନୀତି ଅନୁସାରେ ଏହି ମଠର ନିଜସ୍ୱ

ଆୟରୁ ପ୍ରାୟ ଅର୍ଦ୍ଧାଧିକ ନୀତିକାନ୍ତି ପାଳିତ ହୋଇଥାଏ । ଏବେ ମଧ୍ୟ ଦୁଇପ୍ରହର ଧୂପ ପରେ ଏହି ମଠରେ ଅତିଥି ଅଭ୍ୟାଗତଙ୍କୁ ମଠ ତରଫରୁ ଭୋଗ ପ୍ରଦାନ କରାଯାଇଥାଏ । ଯେପରି ମହାପ୍ରସାଦ ବିକ୍ରୀ କରାଯାଇଥାଏ, ଏହି ମଠରେ ମଧ୍ୟ ଦୂରଦୂରାନ୍ତରୁ ଆସିଥିବା ଭକ୍ତମାନଙ୍କୁ ଭୋଗ ବିକ୍ରୀ କରାଯାଇଥାଏ ।

୧. ତଥ୍ୟଗତ ସୂଚନା- ଜଗନ୍ନାଥ ବଲ୍ଲଭର ମୁଖ୍ୟ ପୂଜକ ଶ୍ରୀ ରଥଙ୍କଠାରୁ ବିଷୟବସ୍ତୁ ସଂଗୃହୀତ ।

୨. ଶ୍ରୀଭାଗବତ- ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ (ପୂର୍ବତନ ମୁଖ୍ୟମନ୍ତ୍ରୀ, ଓଡ଼ିଶା)

୩. ଶ୍ରୀଜଗନ୍ନାଥ ସ୍ତବକମ୍- ଧାନଘର ଖୋଲ ଭକ୍ତ ମଣ୍ଡଳୀ

୪. ମଠ ସଂସ୍କୃତି- ଡକ୍ଟର ଭାସ୍କର ମିଶ୍ର

ଅବସରପ୍ରାପ୍ତ (ବରିଷ୍ଠ ପ୍ରଶାସନିକ ଅଧିକାରୀ)
ବ୍ରାହ୍ମଣ ସାହି, ଖଣ୍ଡପଡାଗଡ
ଚୈତନ୍ୟ ବିହାର, ପୁରୀ-୨

# ଦୋଳ ଯାତରା

**ଅମ୍ବିକା ସ୍ୱାଇଁ**

ବସନ୍ତ ଆସିଲା ମଳୟ ହସିଲା
ପ୍ରୀତିର ମହକ ଧରି
ଆମ୍ର ବୃକ୍ଷେ ଶୋଭା ପାଇଲା ବଉଳ
ଫଗୁ ରଙ୍ଗ ଗଲା ଝରି ।

ରଙ୍ଗର ପସରା ମେଲାଇ ଫଗୁଣ
ଆସିଅଛି ସଜ ହୋଇ
ନାଲି, ନେଳି, ରଙ୍ଗ ଅବିର ଭଣ୍ଡାର
ସାଥେ ଆଣିଅଛି ବୋହି ।

ରାଧାକୃଷ୍ଣଙ୍କର ଅପୂର୍ବ ମିଳନ
ଧରଣୀକୁ କରେ ପ୍ରୀତ
କଷି ଆମ୍ବ ପେଣ୍ଡା ଅର୍ପି ଦେଇ ତାଙ୍କୁ
ମନ ହୁଏ ପୁଲକିତ ।

ବିମାନରେ ବସି ଯୁଗଳ ମୂରତି
ଗାଁ ସାହି ସାହି ବୁଲନ୍ତି



ହର୍ଷ ମନେ ଜନେ ଘଣ୍ଟ ଘଣ୍ଟା ନାଦେ
ପ୍ରଭୁଙ୍କୁ ପାଛୋଟି ଆଣନ୍ତି ।

ଫଗୁରଙ୍ଗ ଧରି ରଙ୍ଗାୟିତ ମନେ
ନାଚୁଥାନ୍ତି ଗାଇ ଗାଇ
ଖଜା, ଖଇ, ଚଣା ସାଥେ ଫଳମୂଳ
ଦିଅନ୍ତି ଭୋଗ ଲଗାଇ ।

ସଭିଏଁ ଧରନ୍ତି ରଙ୍ଗର ପସରା
ଖେଳନ୍ତି ରଙ୍ଗର ହୋଲି
ଦୋଳ ପୂର୍ଣ୍ଣିମାରେ ମେଳଣ ଯାତରା
ବିମାନ ହୁଅନ୍ତି ମେଳି ।

ଆମ ପରମ୍ପରା ଦୋଳ ପରବକୁ
ପାଳୁଥିବା ମନଖୋଲି
ପରସ୍ପର ସ୍ନେହ ପ୍ରେମ ବାଣ୍ଟୁଥିବା
ରାଗ ଅଭିମାନ ଭୁଲି ।

ଭୁବନେଶ୍ୱର

# ୨୦୧୯–୨୦ (ଲେଖାନୁଦାନ) ବଜେଟ୍ ଆକଳନର ମୁଖ୍ୟାଂଶ

୭ ଫେବୃଆରୀ ୨୦୧୯ରେ ମାନ୍ୟବର ଅର୍ଥମନ୍ତ୍ରୀ ଶ୍ରୀଯୁକ୍ତ ଶଶିଭୂଷଣ ବେହେରା ୨୦୧୯–୨୦ ଆର୍ଥିକ ବର୍ଷ ନିମନ୍ତେ ୧ ଲକ୍ଷ ୩୨ ହଜାର ୬ ଶହ ୬୦ କୋଟି ଟଙ୍କାର ଲେଖାନୁଦାନ ବଜେଟ୍ ବିଧାନସଭା ଅନୁମୋଦନ ପାଇଁ ଉପସ୍ଥାପନ କରିଛନ୍ତି । ଏହି ଜନକଲ୍ୟାଣକାରୀ ବଜେଟ୍‌ରେ ଅଭିବୃଦ୍ଧି, ବିକାଶ, ଭିତ୍ତିଭୂମି ଉନ୍ନୟନ ଓ ପୁଞ୍ଜି ନିବେଶ ଉପରେ ଗୁରୁତ୍ୱ ଆରୋପ କରାଯାଇଅଛି । ଏହି ବଜେଟ୍ ବିଗତ ୨୦୧୮–୧୯ ଆର୍ଥିକ ବର୍ଷ ତୁଳନାରେ ୧୦.୪% ଅଧିକ ଅଟେ ।

ପଞ୍ଚଦଶ ବିଧାନସଭାର ଅବଧି ଅଳ୍ପ କେତେ ମାସ ପରେ ଶେଷ ହୋଇଯିବ । ନିର୍ବାଚନ ତାରିଖ ଘୋଷଣା ପରେ ସଙ୍ଗେ ସଙ୍ଗେ ଆଦର୍ଶ ଆଚରଣ ବିଧି ଲାଗୁ ହେବ । ପରମ୍ପରାକ୍ରମେ ନୂତନ ସରକାରଙ୍କ ନୂତନ କାର୍ଯ୍ୟକ୍ରମ ଏବଂ ଯୋଜନା ଘୋଷଣା କରିବାର ଅଧିକାର ଅଛି । ସୁତରାଂ ୨୦୧୯–୨୦ ଆର୍ଥିକ ବର୍ଷ ପାଇଁ ପୂର୍ଣ୍ଣାଙ୍ଗ ବଜେଟ୍ ପରିବର୍ତ୍ତେ ଆର୍ଥିକ ବର୍ଷର ପ୍ରଥମ ଚାରିମାସ ପାଇଁ ଚାଲୁରହିଥିବା ଯୋଜନା ଓ କାର୍ଯ୍ୟକ୍ରମ ନିମିତ୍ତ ସରକାର ଲେଖାନୁଦାନ ଆଗତ କରିବା ପାଇଁ ପ୍ରସ୍ତାବ ରଖିଛନ୍ତି ।

**୨୦୧୮–୧୯ ଏବଂ ୨୦୧୯–୨୦ ଆର୍ଥିକ ବର୍ଷ ବଜେଟ୍‌ର ତୁଳନାତ୍ମକ ବିବରଣୀ ନିମ୍ନଲିଖିତ ସାରଣୀରେ ଦର୍ଶାଯାଇଛି ।**

(କୋଟି ଟଙ୍କା ହିସାବରେ)

| କ୍ରମିକ ସଂଖ୍ୟା | ପ୍ରକାର | ୨୦୧୮–୧୯ ଆର୍ଥିକ ବର୍ଷର ବଜେଟ୍ ଆକଳନ | ୨୦୧୯–୨୦ ଆର୍ଥିକ ବର୍ଷର ବଜେଟ୍ ଆକଳନ |
|---|---|---|---|
| ୧. | ପ୍ରଶାସନିକ ଖର୍ଚ୍ଚ | ୫୦,୭୬୧ | ୫୮,୧୭୦ |
| ୨. | କାର୍ଯ୍ୟକ୍ରମ ଖର୍ଚ୍ଚ | ୬୨,୦୦୦ | ୬୬,୦୦୦ |
| ୩. | ବିପର୍ଯ୍ୟୟ ପ୍ରଶମନ ପାଣ୍ଠିରୁ ଖର୍ଚ୍ଚ | ୧,୮୬୫ | ୨,୦୦୦ |
| ୪. | ରାଜ୍ୟ ସରକାରଙ୍କ ଦ୍ୱାରା ହସ୍ତାନ୍ତରିତ ହେଉଥିବା ଅର୍ଥରୁ ଖର୍ଚ୍ଚ | ୫,୪୦୨ | ୬,୪୯୦ |
| | ମୋଟ – | ୧,୨୦,୦୨୮ | ୧,୩୨,୬୬୦ |

୨୦୧୯–୨୦ ଆର୍ଥିକ ବର୍ଷର ଏପ୍ରିଲରୁ ଜୁଲାଇ ମାସ ପର୍ଯ୍ୟନ୍ତ ଖର୍ଚ୍ଚ ବାବଦକୁ ୫୬ ହଜାର ୯୨୧ କୋଟି ଟଙ୍କାର ଲେଖାନୁଦାନ ଆଗତ କରାଯାଇଅଛି । ଏଥିରେ ପ୍ରାକୃତିକ ବିପର୍ଯ୍ୟୟ ଏବଂ ନିର୍ବାଚନ ସମ୍ବନ୍ଧୀୟ ଖର୍ଚ୍ଚ ବାବଦକୁ ମୋଟ୍ ବାର୍ଷିକ ବ୍ୟୟ ଅଟକଳର ଶତ ପ୍ରତିଶତ ଏବଂ ଅନ୍ୟାନ୍ୟ ଖର୍ଚ୍ଚ ବାବଦକୁ ବ୍ୟୟ ଅଟକଳର ୪୦ ପ୍ରତିଶତ ଅନ୍ତର୍ଭୁକ୍ତ ।

### ୧. ରାଜ୍ୟ ବଜେଟ୍‌ର ଗୁଣାତ୍ମକ ଦିଗ

- କାର୍ଯ୍ୟକ୍ରମ ଖର୍ଚ୍ଚର ପରିମାଣ ୬୬ ହଜାର କୋଟି ଟଙ୍କା ଅଟକଳ କରାଯାଇଛି ।
- ଏହି ବଜେଟ୍‌ରେ କୃଷି ଓ ଆନୁଷଙ୍ଗିକ କ୍ଷେତ୍ର ପାଇଁ ବ୍ୟୟ ଅଟକଳ ଯଥେଷ୍ଟ ବୃଦ୍ଧି କରାଯାଇ ୧୯ ହଜାର ୫୫୭ କୋଟି ଟଙ୍କା ଆକଳନ କରାଯାଇଅଛି ।
- ଶିକ୍ଷା ଏବଂ ଦକ୍ଷତା କ୍ଷେତ୍ର ପାଇଁ ୧୯ ହଜାର ୯୧୧ କୋଟି ଟଙ୍କା ବ୍ୟୟ ବରାଦ ।
- ସ୍ୱାସ୍ଥ୍ୟ କ୍ଷେତ୍ରରେ ୬ ହଜାର ୭୦୮ କୋଟି ଟଙ୍କାର ବ୍ୟୟ ବରାଦ ।
- ପାଇପ୍ ଯୋଗେ ପାନୀୟ ଜଳ ଯୋଗାଣ ପ୍ରକଳ୍ପ ପାଇଁ ୨ ହଜାର ୯୩୫ କୋଟି ଟଙ୍କାର ପୁଞ୍ଜି ବିନିଯୋଗ ।
- ଅନୁସୂଚିତ ଜନଜାତି ଓ ଜାତିମାନଙ୍କ ପାଇଁ ଚିହ୍ନିତ ଯୋଜନା ଦ୍ୱାରା କାର୍ଯ୍ୟକ୍ରମ ବ୍ୟୟ ମାଧ୍ୟମରେ ୨୨ ହଜାର ୪୪ କୋଟି ଟଙ୍କାର ବ୍ୟୟ ବରାଦ ।
- ଉନ୍ନୟନ ଖର୍ଚ୍ଚ ବାବଦକୁ ଚିହ୍ନିତ ଅର୍ଥର ପରିମାଣ ମୋଟ ବଜେଟ୍ ଅଟକଳର ୭୫ ପ୍ରତିଶତରୁ ଅଧିକ ଅଟେ ।
- ଟିକସ ଓ ରାଜ୍ୟ ସାମଗ୍ରିକ ଘରୋଇ ଉତ୍ପାଦର ଅନୁପାତ ୨୦୧୯-୨୦(B.E) ରେ ୬.୧ ପ୍ରତିଶତ ହେବା ପାଇଁ ଅଟକଳ କରାଯାଇଛି ।
- ରାଜସ୍ୱ ବଳକା, ରାଜ୍ୟ ସାମଗ୍ରିକ ଘରୋଇ ଉତ୍ପାଦର ୧.୬ ପ୍ରତିଶତ ହେବ ବୋଲି ଆକଳନ କରାଯାଇଛି ।
- ବିତ୍ତୀୟ ନିଅଣ୍ଟ, ଘରୋଇ ଉତ୍ପାଦର ଧାର୍ଯ୍ୟ ଲକ୍ଷ୍ୟର ୩ ପ୍ରତିଶତ ମଧ୍ୟରେ ସୀମିତ ରହିବ ।

**ବିଭାଗୱାରୀ ଆବଣ୍ଟନ**

(କୋଟି ଟଙ୍କା ହିସାବରେ)

| ଦାବି ସଂଖ୍ୟା | ବିଭାଗ | ପ୍ରଶାସନିକ ବ୍ୟୟ | କାର୍ଯ୍ୟକ୍ରମ ବ୍ୟୟ | ବିପର୍ଯ୍ୟୟ ପ୍ରଶମନ ପାଣ୍ଠି | ରାଜ୍ୟରୁ ସ୍ଥାନାନ୍ତର | ସର୍ବ ମୋଟ |
|---|---|---|---|---|---|---|
| ୧ | ସ୍ୱରାଷ୍ଟ୍ର ବିଭାଗ | ୪,୫୨୯.୫୪ | ୭୬୧.୦୩ | - | - | ୫,୨୯୦.୫୭ |
| ୨ ଓ ୧୮ | ସାଧାରଣ ପ୍ରଶାସନ ଓ ସାଧାରଣ ଅଭିଯୋଗ ବିଭାଗ | ୨୦୨.୩୬ | ୨୦୨.୦୦ | - | - | ୪୦୪.୩୬ |
| ୩ | ରାଜସ୍ୱ ଓ ବିପର୍ଯ୍ୟୟ ପରିଚାଳନା ବିଭାଗ | ୯୮୩.୬୦ | ୧୪୬.୬୧ | - | - | ୧,୧୩୦.୨୧ |
| ୪ | ଆଇନ ବିଭାଗ | ୪୧୩.୨୬ | ୨୭.୭୭ | - | - | ୪୪୧.୦୩ |
| ୫ | ଅର୍ଥ ବିଭାଗ | ୨୮,୮୨୦.୩୫ | - | - | - | ୨୮,୮୨୦.୩୫ |

| | | | | | | |
|---|---|---|---|---|---|---|
| ୬ | ବାଣିଜ୍ୟ ବିଭାଗ | ୭୪.୩୯ | ୧୮.୯୫ | – | – | ୯୩.୩୪ |
| ୭ | ର୍ନିମାଣ ବିଭାଗ | ୧,୫୫୧.୯୦ | ୨,୫୨୭.୩୦ | – | – | ୪,୦୭୯.୨୦ |
| ୮ | ଓଡିଶା ବିଧାନସଭା | ୮୦.୧୭ | – | – | – | ୮୦.୧୭ |
| ୯ | ଖାଦ୍ୟ ଯୋଗାଣ ଓ ଖାଉଟି କଲ୍ୟାଣ ବିଭାଗ | ୭୬.୨୬ | ୧,୦୫୭.୮୯ | – | – | ୧,୧୩୪.୧୫ |
| ୧୦ | ବିଦ୍ୟାଳୟ ଓ ଗଣଶିକ୍ଷା ବିଭାଗ | ୧୦,୨୮୦.୮୩ | ୬,୧୧୯.୧୭ | – | – | ୧୬,୪୦୦.୦୦ |
| ୧୧ | ଅନୁସୂଚିତ ଜନଜାତି ଓ ଅନୁସୂଚିତ ଜାତି ଉନ୍ନୟନ ଏବଂ ସଂଖ୍ୟାଲଘୁ ସଂପ୍ରଦାୟ ଓ ପଛୁଆବର୍ଗ କଲ୍ୟାଣ ବିଭାଗ | ୭୫୦.୩୧ | ୨,୮୮୦.୧୮ | – | – | ୩,୬୩୦.୪୯ |
| ୧୨ | ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ ବିଭାଗ | ୨,୩୯୧.୪୮ | ୪,୩୧୬.୦୪ | – | – | ୬,୭୦୭.୫୨ |
| ୧୩ | ଗୃହ ନିର୍ମାଣ ଓ ପୌର ଉନ୍ନୟନ ବିଭାଗ | ୬୨୬.୪୫ | ୩,୦୪୧.୯୭ | – | ୧,୯୧୦.୨୭ | ୫,୫୭୮.୬୯ |
| ୧୪ | ଶ୍ରମ ଓ ରାଜ୍ୟ କର୍ମଚାରୀ ବୀମା ବିଭାଗ | ୧୦୬.୫୧ | ୪୯.୧୯ | – | – | ୧୫୫.୭୦ |
| ୧୫ | କ୍ରୀଡା ଓ ଯୁବସେବା ବିଭାଗ | ୩୫.୩୧ | ୨୨୬.୦୦ | – | – | ୨୬୧.୩୧ |
| ୧୬ | ଯୋଜନା ଓ ସଂଯୋଜନ ବିଭାଗ | ୫୧.୭୮ | ୧,୧୭୨.୦୭ | – | – | ୧,୨୨୩.୮୫ |
| ୧୭ | ପଞ୍ଚାୟତିରାଜ ଓ ପାନୀୟ ଜଳ ବିଭାଗ | ୩୯୭.୯୬ | ୧୦,୯୨୧.୧୭ | – | ୪,୫୭୯.୭୩ | ୧୫,୮୯୮.୮୬ |
| ୧୯ | ଶିଳ୍ପ ବିଭାଗ | ୫.୨୨ | ୨୩୨.୧୭ | – | – | ୨୩୭.୩୯ |
| ୨୦ | ଜଳ ସମ୍ପଦ ବିଭାଗ | ୧,୨୬୬.୬୧ | ୮,୪୪୬.୮୨ | – | – | ୯,୭୧୩.୪୩ |
| ୨୧ | ପରିବହନ ବିଭାଗ | ୧୦୯.୨୦ | ୪୯୦.୩୭ | – | – | ୫୯୯.୫୮ |
| ୨୨ | ଜଙ୍ଗଲ ଓ ପରିବେଶ ବିଭାଗ | ୪୮୫.୯୬ | ୩୮୬.୫୭ | – | – | ୮୭୨.୫୩ |
| ୨୩ | କୃଷି ଓ କୃଷକ ସଶକ୍ତିକରଣ ବିଭାଗ | ୮୩୯.୨୨ | ୬,୭୧୩.୦୫ | – | – | ୭,୫୫୨.୨୭ |
| ୨୪ | ଇସ୍ପାତ ଓ ଖଣି ବିଭାଗ | ୬୨.୭୨ | ୫୯.୫୨ | – | – | ୧୨୨.୨୪ |

| | | | | | | |
|---|---|---|---|---|---|---|
| ୨୫ | ସୂଚନା ଓ ଲୋକସମ୍ପର୍କ ବିଭାଗ | ୫୨.୮୩ | ୫୨.୫୦ | – | – | ୧୦୫.୩୩ |
| ୨୬ | ଅବକାରୀ ବିଭାଗ | ୧୧୯.୮୧ | ୧୦.୦୦ | – | – | ୧୨୯.୮୧ |
| ୨୭ | ବିଜ୍ଞାନ ଓ ବୈଷୟିକ ବିଭାଗ | ୧୪.୪୪ | ୫୫.୪୮ | – | – | ୬୯.୯୨ |
| ୨୮ | ଗ୍ରାମ୍ୟ ଉନ୍ନୟନ ବିଭାଗ | ୧,୨୬୭.୯୯ | ୪,୧୧୦.୩୦ | – | – | ୫,୩୭୮.୨୯ |
| ୨୯ | ସଂସଦୀୟ ବ୍ୟାପାର ବିଭାଗ | ୫୮.୩୨ | ୦.୦୪ | – | – | ୫୮.୩୬ |
| ୩୦ | ଶକ୍ତି ବିଭାଗ | ୩୦.୧୭ | ୧,୬୨୮.୨୧ | – | – | ୧,୬୫୮.୩୮ |
| ୩୧ | ହସ୍ତତନ୍ତ, ବୟନଶିଳ୍ପ ଓ ହସ୍ତଶିଳ୍ପ ବିଭାଗ | ୬୨.୮୨ | ୧୨୦.୦୦ | – | – | ୧୮୨.୮୨ |
| ୩୨ | ପର୍ଯ୍ୟଟନ ବିଭାଗ | ୧୫.୪୦ | ୧୬୮.୧୦ | – | – | ୧୮୩.୫୦ |
| ୩୩ | ମତ୍ସ୍ୟ ଓ ପଶୁ ସମ୍ପଦ ଉନ୍ନୟନ ବିଭାଗ | ୪୪୩.୦୭ | ୪୫୧.୫୨ | – | – | ୮୯୪.୫୯ |
| ୩୪ | ସମବାୟ ବିଭାଗ | ୧୨୭.୭୧ | ୧,୨୭୩.୨୦ | – | – | ୧,୪୦୦.୯୧ |
| ୩୫ | ସାଧାରଣ ଉଦ୍ୟୋଗ ବିଭାଗ | ୩.୩୭ | ୫.୦୦ | – | – | ୮.୩୭ |
| ୩୬ | ମହିଳା ଓ ଶିଶୁ କଲ୍ୟାଣ ଓ ମିଶନ ଶକ୍ତି ବିଭାଗ | ୨୩.୬୨ | ୩,୨୯୦.୬୯ | – | – | ୩,୩୧୪.୩୧ |
| ୩୭ | ଇଲେକ୍ଟ୍ରୋନିକ୍ସ ଓ ସୂଚନା ପ୍ରଯୁକ୍ତିବିଦ୍ୟା ବିଭାଗ | ୫.୩୦ | ୧୧୩.୬୦ | – | – | ୧୧୮.୯୦ |
| ୩୮ | ଉଚ୍ଚ ଶିକ୍ଷା ବିଭାଗ | ୧,୩୧୨.୪୧ | ୧,୦୬୨.୯୩ | – | – | ୨,୩୭୫.୩୪ |
| ୩୯ | ଦକ୍ଷତା ବୃଦ୍ଧି ଓ ବୈଷୟିକ ଶିକ୍ଷା ବିଭାଗ | ୩୨୨.୫୫ | ୩୯୪.୪୯ | – | – | ୭୧୭.୦୪ |
| ୪୦ | ଅଣୁ, କ୍ଷୁଦ୍ର ଓ ମଧ୍ୟମ ଉଦ୍ୟୋଗ ବିଭାଗ | ୭୨.୨୬ | ୧୨୦.୨୧ | – | – | ୧୯୨.୪୭ |
| ୪୧ | ସାମାଜିକ ସୁରକ୍ଷା ଓ ଭିନ୍ନକ୍ଷମ ସଶକ୍ତିକରଣ ବିଭାଗ | ୬୨.୧୭ | ୩,୧୦୧.୭୫ | – | – | ୩,୧୬୩.୯୨ |
| ୪୨ | ବିପର୍ଯ୍ୟୟ ପରିଚାଳନା ବିଭାଗ | ୩.୫୨ | ୧୦୩.୦୬ | ୨,୦୦୦.୦୦ | – | ୨,୧୦୬.୫୮ |
| ୪୩ | ଓଡ଼ିଆ ଭାଷା, ସାହିତ୍ୟ ଓ ସଂସ୍କୃତି ବିଭାଗ | ୩୦.୮୫ | ୧୪୩.୦୫ | – | – | ୧୭୩.୯୦ |
| | ସର୍ବ ମୋଟ | ୫୮,୧୭୦.୦୦ | ୬୬,୦୦୦.୦୦ | ୨,୦୦୦.୦୦ | ୬,୪୯୦.୦୦ | ୧,୩୨,୬୬୦.୦୦ |

## ୨. କ୍ଷେତ୍ରୀୟ ମୁଖ୍ୟାଂଶ

### (କ) କୃଷି ଓ ଆନୁଷଙ୍ଗିକ କାର୍ଯ୍ୟକ୍ରମ

- କୃଷି ଓ ଆନୁଷଙ୍ଗିକ କାର୍ଯ୍ୟକ୍ରମ ପାଇଁ ୧୯ ହଜାର ୫୫୭ କୋଟି ଟଙ୍କାର ବ୍ୟୟ ବରାଦ କରାଯାଇଅଛି । ପ୍ରଥମ କରି ୨୦୧୩-୧୪ ଆର୍ଥିକ ବର୍ଷରେ ଉପସ୍ଥାପିତ ହୋଇଥିବା କୃଷି ବଜେଟ୍‌ରେ ୭ ହଜାର କୋଟି ୧୬୨ ଲକ୍ଷ ଟଙ୍କାର ବ୍ୟୟ ବରାଦ ହୋଇଥିବା ବେଳେ ଏବେ ଏହା ୧୭୩ ପ୍ରତିଶତକୁ ବୃଦ୍ଧି ପାଇଛି ।
- ୨୦୧୯-୨୦ ବଜେଟ୍‌ରେ କୃଷି ଓ ଆନୁଷଙ୍ଗିକ କାର୍ଯ୍ୟକ୍ରମ ପାଇଁ ବ୍ୟୟ ବରାଦ ଗତ ବର୍ଷଠାରୁ ୧୬.୭ ପ୍ରତିଶତ ଅଧିକ, ଯାହାକି ମୋଟ ବଜେଟ୍ ଆକଳନର ୧୪.୭ ପ୍ରତିଶତ ।
- ଚାଷୀମାନଙ୍କର ସାମଗ୍ରିକ କଲ୍ୟାଣ ନିମନ୍ତେ କାଳିଆ ଯୋଜନାରେ ୪ ହଜାର ୪୬୧ କୋଟି ଟଙ୍କାର ବ୍ୟୟବରାଦ କରାଯାଇଅଛି ।
- ବାଣିଜ୍ୟିକ ଓ ସମବାୟ ବ୍ୟାଙ୍କ ମାଧ୍ୟମରେ ଚାଷୀମାନଙ୍କୁ ସୁଧ ରିହାତି ନିମନ୍ତେ ୮୦୦ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।
- ଉନ୍ନତମାନର ବିହନ ଓ ସାର ଯୋଗାଣ ପାଇଁ ଗଠିତ ହୋଇଥିବା ପାଣ୍ଠିକୁ ଚାଲୁ ରଖିବା ପାଇଁ ୨୬୦ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।
- ରାଜ୍ୟ ସରକାରଙ୍କର 'କ୍ଷେତ ଯାନ୍ତ୍ରୀକରଣ ଯୋଜନା' (Farm Mechanisation) ପାଇଁ ବଜେଟ୍‌ରେ ୨୯୫ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।
- ଜାତୀୟ କୃଷି ସମ୍ପ୍ରସାରଣ ଓ ବୈଷୟିକ ମିଶନ (National Mission on Agriculture Extension & Technology)ରେ ୨୮୫ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।
- ଉଦ୍ୟାନ କୃଷି, ଫୁଲ ଓ ମସଲା ଚାଷ ପାଇଁ ଜାତୀୟ ଉଦ୍ୟାନ କୃଷି ମିଶନ ଅଧୀନରେ ୧୦୦ କୋଟି ଟଙ୍କାର ବ୍ୟୟବରାଦ ।
- ପ୍ରଧାନମନ୍ତ୍ରୀ ଫସଲବୀମା ଯୋଜନା ବାବଦକୁ ରାଜ୍ୟ ସରକାରଙ୍କ ଅଂଶ ବାବଦରେ ୪୦୦ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।
- ଖାର ଜଳ ମାଛଚାଷ, ସାମୁଦ୍ରିକ ସଘନ ମାଛ ଚାଷ ଏବଂ ଆଭ୍ୟନ୍ତରୀଣ ମାଛ ଚାଷର ଉନ୍ନୟନ ନିମନ୍ତେ ୬୩ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।
- ନୀଳ ବିପ୍ଲବ (Blue Revolution) ଯୋଜନା ଅଧୀନରେ ବିଭିନ୍ନ କାର୍ଯ୍ୟକ୍ରମ ଯଥା ମତ୍ସ୍ୟ ବିହନ ଉତ୍ପାଦନ କେନ୍ଦ୍ର, ଜଳ ଭଣ୍ଡାରଗୁଡ଼ିକର ସମନ୍ୱିତ ଉନ୍ନୟନ, ଜଳାଶୟ ନବୀକରଣ ଏବଂ ମତ୍ସ୍ୟଜୀବୀଙ୍କର ଦକ୍ଷତା ବିକାଶ ନିମନ୍ତେ ୮୩ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।
- ଗୋପାଳନ ଓ ପଶୁଧନ ପରିଚାଳନା ପାଇଁ ଉଦ୍ଦିଷ୍ଟ ଶ୍ୱେତ ବିପ୍ଳବ (White Revolution) ଯୋଜନା ପାଇଁ ୬୮ କୋଟି ଟଙ୍କା ବ୍ୟବସ୍ଥା କରାଯାଇଛି ।

### (ଖ) ଖାଦ୍ୟ ନିରାପତ୍ତା

- ରାଜ୍ୟର ନିଜସ୍ୱ ଖାଦ୍ୟ ନିରାପତ୍ତା ଯୋଜନା ମାଧ୍ୟମରେ ୨୩ ଲକ୍ଷ ଅତିରିକ୍ତ ହିତାଧିକାରୀଙ୍କୁ ମାସକୁ ୫ କିଲୋ ଚାଉଳ ରିହାତି ଦରରେ କେଜି ପିଛା ୧ ଟଙ୍କା ମୂଲ୍ୟରେ ଯୋଗାଇ ଦିଆଯାଉଛି । ରାଜ୍ୟବାସୀଙ୍କୁ କିଲୋ ପିଛା ୧ ଟଙ୍କା ଦରରେ ଚାଉଳ ଯୋଗାଇଦେବା ପାଇଁ ୧ ହଜାର ୨୮ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।

### (ଗ) ସାମାଜିକ ନିରାପତ୍ତା ବ୍ୟବସ୍ଥା

- ମଧୁବାବୁ ପେନ୍‌ସନ୍ ଯୋଜନାରେ ୮୦ ବର୍ଷରୁ କମ୍ ବୟସର ବୃଦ୍ଧ, ବିଧବା ଏବଂ ଦିବ୍ୟାଙ୍ଗ ହିତାଧିକାରୀଙ୍କୁ ପ୍ରତିମାସ ୫୦୦ ଟଙ୍କା ହିସାବରେ ଓ ୮୦ ବର୍ଷରୁ ଊର୍ଦ୍ଧ୍ୱ ହିତାଧିକାରୀଙ୍କୁ ମାସିକ ୭୦୦ ଟଙ୍କା ହିସାବରେ ମୋଟ ୪୮ ଲକ୍ଷ ଭତ୍ତା ପ୍ରଦାନ କରାଯାଉଛି । ଏଥିପାଇଁ ବଜେଟରେ ୨ ହଜାର ୧୨୦ କୋଟି ଟଙ୍କା ବ୍ୟୟବରାଦ କରାଯାଇଛି ।
- National Social Assistance Programme ପାଇଁ ୮୬୩ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।
- ମହାତ୍ମା ଗାନ୍ଧୀ ଜାତୀୟ ନିଶ୍ଚିତ ଗ୍ରାମୀଣ କର୍ମନିଯୁକ୍ତି (MGNREGA) ଯୋଜନାରେ ମ୍ୟାଟେରିଆଲ୍ କମ୍ପୋନେଣ୍ଟ୍ (Material Component) ପାଇଁ ୧ ହଜାର ୨୦୧ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି । ଏହି ଯୋଜନା ଅନୁଯାୟୀ ଶ୍ରମିକମାନଙ୍କର ମଜୁରି ସିଧାସଳଖ ସେମାନଙ୍କ ବ୍ୟାଙ୍କ ଆକାଉଣ୍ଟରେ ଜମା କରିବାର ବ୍ୟବସ୍ଥା ଅଛି ।

### (ଘ) ସମସ୍ତଙ୍କ ପାଇଁ ସ୍ୱାସ୍ଥ୍ୟ ସେବା

- ବିଜୁ ସ୍ୱାସ୍ଥ୍ୟ କଲ୍ୟାଣ ଯୋଜନାରେ ମାଗଣା ଔଷଧ ଯୋଗାଇବା ପାଇଁ ପୁରୁଷ ହିତାଧିକାରୀଙ୍କ କ୍ଷେତ୍ରରେ ପରିବାର ପିଛା ୫ ଲକ୍ଷ ଟଙ୍କା ଓ ମହିଳା ହିତାଧିକାରୀଙ୍କ କ୍ଷେତ୍ରରେ ପରିବାର ପିଛା ୭ ଲକ୍ଷ ଟଙ୍କା ପର୍ଯ୍ୟନ୍ତ ଦେବାପାଇଁ ମୋଟ ୮୬୪ କୋଟି ଟଙ୍କାର ବ୍ୟୟବରାଦ ।
- ମୁଖ୍ୟମନ୍ତ୍ରୀ ସ୍ୱାସ୍ଥ୍ୟ ସେବା ମିଶନ ମାଧ୍ୟମରେ ସ୍ୱାସ୍ଥ୍ୟ ସେବା ଭିତ୍ତିଭୂମିର ବିକାଶ ପାଇଁ ୫୬୮ କୋଟି ଟଙ୍କା ବ୍ୟୟବରାଦର ପ୍ରସ୍ତାବ ରହିଛି ।
- ଭେଷଜ ମହାବିଦ୍ୟାଳୟଗୁଡ଼ିକୁ ସହାୟତା ବାବଦକୁ ୧୨୮ କୋଟି ଟଙ୍କାର ବ୍ୟୟବରାଦ ।
- ଶିଶୁ ଓ ମାତୃ ମୃତ୍ୟୁହାର ସମ୍ପୂର୍ଣ୍ଣ ନିରାକରଣ ଯୋଜନା (SAMPURNA), ମାଧ୍ୟମରେ ଶିଶୁ ଓ ମାତୃ ମୃତ୍ୟୁହାରକୁ ଦ୍ରୁତ ହ୍ରାସ କରିବା ପାଇଁ ୧୧୩ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।
- ରାଷ୍ଟ୍ରୀୟ ସ୍ୱାସ୍ଥ୍ୟ ମିଶନ ଯୋଜନାରେ ୧ ହଜାର ୩୨୩ କୋଟି ଟଙ୍କା ବ୍ୟୟବରାଦ ।

### (ଙ) ମହିଳା ସଶକ୍ତିକରଣ

- ଏଯାବତ୍ ମମତା ଯୋଜନାରେ ୧ ହଜାର ୬୫୫ କୋଟି ଟଙ୍କା ବ୍ୟୟ କରାଯାଇ ୩୫ ଲକ୍ଷ ୬୯ ହଜାର ହିତାଧିକାରୀଙ୍କୁ ସୁବିଧା ଯୋଗାଇ ଦିଆଯାଇଛି । ୨୦୧୯-୨୦ ଏଥିପାଇଁ ୩୦୫ କୋଟି ଟଙ୍କାର ବ୍ୟୟବରାଦ ।
- ସମନ୍ୱିତ ଶିଶୁ ବିକାଶ ଯୋଜନାରେ ୧ ହଜାର ୫୯ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି । ଏଥିପାଇଁ କେନ୍ଦ୍ର ଓ ରାଜ୍ୟ ୬୦:୪୦ ଅନୁପାତରେ ଅର୍ଥ ଯୋଗାଇ ଦେବେ । ଏହି ଯୋଜନା ବାବଦକୁ ଅତିରିକ୍ତ ରାଜ୍ୟ ସହାୟତା ୩୫୧ କୋଟି ଟଙ୍କାର ବ୍ୟବସ୍ଥା କରାଯାଇଛି ।

♦ Supplementary Nutrition Programme ଅଧୀନରେ ୧ ହଜାର ୩୬ କୋଟି ଟଙ୍କାର ବ୍ୟୟବରାଦ ।

♦ ମାଳତୀ ଦେବୀ ପ୍ରାକ୍ ବିଦ୍ୟାଳୟ ପରିଧାନ ଯୋଜନାରେ ପ୍ରାକ୍-ବିଦ୍ୟାଳୟ ଶିକ୍ଷା ଗ୍ରହଣ କରୁଥିବା ପିଲାମାନଙ୍କୁ ୟୁନିଫର୍ମ ଯୋଗାଇ ଦେବାକୁ ୫୮ କୋଟି ଟଙ୍କାର ବ୍ୟୟବରାଦ ।

♦ ମୁଖ୍ୟମନ୍ତ୍ରୀ ମହିଳା ସଶକ୍ତିକରଣ ଯୋଜନା ଅଧୀନରେ ମହିଳା ସ୍ୱୟଂସହାୟକ ଗୋଷ୍ଠୀ ଏବଂ ମିଶନ ଶକ୍ତି ଅଧୀନରେ ସେମାନଙ୍କର ସଂଘ ପାଇଁ ୩୦୧ କୋଟି ଟଙ୍କାର ସହାୟତା ।

**(ଚ) ଅନୁସୂଚିତ ଜନଜାତିର ବିକାଶ**

♦ ଆକାଂକ୍ଷା ଯୋଜନାରେ ଅନୁସୂଚିତ ଜନଜାତି ଛାତ୍ରୀମାନଙ୍କ ଉଚ୍ଚ ଶିକ୍ଷା ଚାଲୁ ରଖିବା ପାଇଁ ନଗରାଞ୍ଚଳରେ ଛାତ୍ରାବାସ ନିର୍ମାଣ ନିମନ୍ତେ ୨୨୬ କୋଟି ଟଙ୍କାର ବ୍ୟୟବରାଦ କରାଯାଉଛି ।

♦ ପ୍ରି-ମାଟ୍ରିକ୍ ଓ ପୋଷ୍ଟ-ମାଟ୍ରିକ୍ ବୃତ୍ତି ପାଇଁ ୯୫୯ କୋଟି ଟଙ୍କାର ବ୍ୟୟବରାଦ ।

**(ଛ) ଯୁବ କଲ୍ୟାଣ ଏବଂ କ୍ରୀଡାର ପ୍ରୋତ୍ସାହନ**

♦ ଯୁବବର୍ଗଙ୍କ ମଧ୍ୟରେ ନେତୃତ୍ୱ ଓ ସ୍ୱେଚ୍ଛାକୃତ ସେବା ମନୋବୃତ୍ତିକୁ ଉତ୍ସାହିତ କରିବା, କ୍ରୀଡା ଓ ଖେଳୁଆଡ ମନୋଭାବର ବିକାଶ, ସ୍ୱାସ୍ଥ୍ୟମୟ ଜୀବନଯାପନ, ଉତ୍ସାହୀ ଯୁବଗୋଷ୍ଠୀର ଏକତ୍ରିକରଣ ପାଇଁ ମଞ୍ଚ ସୃଷ୍ଟି ଓ ଯୁବଗୋଷ୍ଠୀଙ୍କ ମଧ୍ୟରେ ସମନ୍ୱୟ ନିମନ୍ତେ ବିଜୁ ଯୁବ ବାହିନୀ କାର୍ଯ୍ୟକ୍ରମ ପାଇଁ ୧୦୫ କୋଟି ଟଙ୍କାର ବ୍ୟୟବରାଦ ।

♦ କ୍ରୀଡା ଭିତ୍ତିଭୂମିର ବିକାଶ ଓ ପରିଚାଳନା ପାଇଁ ୮୦ କୋଟି ଟଙ୍କାର ବ୍ୟୟବରାଦ ।

♦ କ୍ରୀଡା ଓ ଶାରୀରିକ ଶିକ୍ଷାର ପ୍ରୋତ୍ସାହନ ପାଇଁ ୩୫ କୋଟି ଟଙ୍କାର ବ୍ୟୟବରାଦ ।

**(ଜ) ଶିକ୍ଷା**

♦ ଓଡିଶା ଆଦର୍ଶ ବିଦ୍ୟାଳୟ ଯୋଜନା ଅଧୀନରେ ବିଦ୍ୟାଳୟର ସ୍ଥାପନା ଓ ପରିଚାଳନା ଖର୍ଚ୍ଚ ପାଇଁ ୩୦୦ କୋଟି ଟଙ୍କାର ବ୍ୟୟବରାଦ ।

♦ ସମଗ୍ର ଶିକ୍ଷା ଓ ମଧ୍ୟାହ୍ନ ଭୋଜନ ଯୋଜନା ପାଇଁ ଯଥାକ୍ରମେ ୨ ହଜାର ୫୫୦ କୋଟି ଟଙ୍କା ଓ ୮୪୪ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି, ଯେଉଁଥିରେ ୪୦ ପ୍ରତିଶତ ରାଜ୍ୟ ଅଂଶ ଅଟେ । ଏଥିସହିତ ମଧ୍ୟାହ୍ନ ଭୋଜନ ପାଇଁ ରୋଷେଇ ଖର୍ଚ୍ଚ ତୁଲେଇବାକୁ ୫୮ କୋଟି ଟଙ୍କା ଓ ସମଗ୍ର ଶିକ୍ଷାର ପ୍ରଚଳନ ପାଇଁ ରାଜ୍ୟର ସହାୟତା ବାବଦରେ ୩୭୫ କୋଟି ଟଙ୍କାର ବ୍ୟୟବରାଦ ।

♦ ଗଙ୍ଗାଧର ମେହେର ଶିକ୍ଷା ମାନକ ବୃଦ୍ଧି ଯୋଜନା (GMSMY) ଅଧୀନରେ ପ୍ରଥମ ଶ୍ରେଣୀରୁ ପଞ୍ଚମ ଶ୍ରେଣୀ ପର୍ଯ୍ୟନ୍ତ ପିଲାମାନଙ୍କୁ ମାଗଣା ସ୍କୁଲ ବ୍ୟାଗ୍, ପ୍ରଥମ ଶ୍ରେଣୀରୁ ଅଷ୍ଟମ ଶ୍ରେଣୀ ପର୍ଯ୍ୟନ୍ତ ପିଲାଙ୍କୁ ମାଗଣା ବହି, ଯୋତା ସମେତ ସ୍କୁଲ ୟୁନିଫର୍ମ ଏବଂ ସରକାରୀ ଓ ବେସରକାରୀ ଅନୁଦାନପ୍ରାପ୍ତ ନବମ ଶ୍ରେଣୀ, ସଂସ୍କୃତ ଟୋଲ ଏବଂ ମଦ୍ରାସାରେ ପଢୁଥିବା ଛାତ୍ରଛାତ୍ରୀଙ୍କୁ ମାଗଣା ସାଇକେଲ ପ୍ରଦାନ କରିବାକୁ ୨୩୯ କୋଟି ଟଙ୍କାର ବ୍ୟୟବରାଦ ।

♦ ମାଧ୍ୟମିକ ବିଦ୍ୟାଳୟମାନଙ୍କର ଭିତ୍ତିଭୂମିର ବିକାଶ ପାଇଁ ମୋ ସ୍କୁଲ ଅଭିଯାନ ଯୋଜନା ରାଜ୍ୟର ଜନସାଧାରଣ ଏବଂ ପୂର୍ବତନ ଛାତ୍ରଛାତ୍ରୀମାନଙ୍କୁ ନିୟୋଜିତ କରି ଆରମ୍ଭ କରାଯାଇଛି । ଏହି ଯୋଜନାରେ ସରକାର ଜନସାଧାରଣଙ୍କ ଦ୍ୱାରା

ପ୍ରଦତ୍ତ ରାଶିର ଦୁଇଗୁଣ ପ୍ରଦାନ କରି ବିଜ୍ଞାନାଗାର, ପାଠାଗାର ଓ କ୍ରୀଡାର ବିକାଶ କରିବେ । ଏଥିପାଇଁ ୪୦ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।

- ଉଚ୍ଚ ମାଧ୍ୟମିକ ଶିକ୍ଷା ସମାପ୍ତି ପରେ ମେଧାବୀ ଛାତ୍ରଛାତ୍ରୀଙ୍କୁ ଲାପ୍‌ଟପ୍ ଯୋଗାଇ ଦେବା ନିମନ୍ତେ ୪୦ କୋଟି ଟଙ୍କା ବ୍ୟୟବରାଦ ।
- ଉଚ୍ଚଶିକ୍ଷା ଅନୁଷ୍ଠାନଗୁଡିକରେ ଭିତ୍ତିଭୂମିର ବିକାଶ ପାଇଁ ୧୫୦ କୋଟି ଟଙ୍କା ବ୍ୟୟବରାଦ କରାଯାଇଛି ।
- ଉଚ୍ଚଶିକ୍ଷା ଏବଂ ବୈଷୟିକ ଶିକ୍ଷାର ଗୁଣାତ୍ମକ ମାନର ଅଭିବୃଦ୍ଧି ପାଇଁ ରାଷ୍ଟ୍ରୀୟ ଉଚ୍ଚତର ଶିକ୍ଷା ଅଭିଯାନ (RUSA) ଯୋଜନାରେ ୨୨୫ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।
- ବୈଷୟିକ ବିଶ୍ୱବିଦ୍ୟାଳୟ, ଯାନ୍ତ୍ରିକ ମହାବିଦ୍ୟାଳୟ, ଯାନ୍ତ୍ରିକ ବିଦ୍ୟାଳୟ, ପଲିଟେକ୍‌ନିକ୍ ଓ ITIଗୁଡିକର ଭିତ୍ତିଭୂମି ବିକାଶ ପାଇଁ ୧୯୦ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।

**(ଞ) କୁଶଳୀ ଓଡିଶା**

- ରାଜ୍ୟରେ ବିଶ୍ୱସ୍ତରୀୟ ପ୍ରତିଯୋଗୀ ତଥା ଉଚ୍ଚ ତାଲିମପ୍ରାପ୍ତ କୁଶଳୀ ଶ୍ରମଶକ୍ତି ସୃଷ୍ଟି କରିବା ନିମନ୍ତେ Asian Development Bankର ସହାୟତାରେ ଓଡିଶା ଦକ୍ଷତା ବିକାଶ ପ୍ରକଳ୍ପ ଅଧୀନରେ ଗୋଟିଏ ବିଶ୍ୱ ଦକ୍ଷତା କେନ୍ଦ୍ର ଏବଂ ITI/Polytechnicଗୁଡିକର ଉନ୍ନତିକରଣ ତଥା ଉଚ୍ଚମାନର ଦକ୍ଷତା ତାଲିମ କେନ୍ଦ୍ର ପ୍ରତିଷ୍ଠା ପାଇଁ ୧୦୦ କୋଟି ଟଙ୍କାର ବ୍ୟୟବରାଦ ।

**(ଟ) ଗ୍ରାମ୍ୟ ଉନ୍ନୟନ**

- ପ୍ରଧାନମନ୍ତ୍ରୀ ଗ୍ରାମୀଣ ଆବାସ ଯୋଜନା ଏବଂ ବିଜୁ ପକ୍କାଘର ଯୋଜନାର ସଂଯୋଜନ ମାଧ୍ୟମରେ ୩ ହଜାର ୬୦୦ କୋଟି ଟଙ୍କାର ବ୍ୟୟବରାଦ ।
- BASUDHA ଯୋଜନାରେ ଗ୍ରାମାଞ୍ଚଳ ଜଳଯୋଗାଣ ପାଇଁ ୨ ହଜାର ୫୦୦ କୋଟି ଟଙ୍କା ଏବଂ ୪୩୫ କୋଟି ଟଙ୍କା ବ୍ୟୟ ଅଟକଳ କରାଯାଇଛି ।
- ଜନସାଧାରଣଙ୍କୁ ସରକାରଙ୍କର ବିଭିନ୍ନ ଯୋଜନା ଓ କାର୍ଯ୍ୟକ୍ରମ ସମ୍ବନ୍ଧରେ ସଚେତନ କରିବା ସହିତ ବିଭିନ୍ନ ଯୋଜନାର ଯୋଗ୍ୟ ହିତାଧିକାରୀମାନଙ୍କୁ ସେମାନଙ୍କର ପ୍ରାପ୍ୟ ସୁନିଶ୍ଚିତ କରିବା ପାଇଁ 'ଆମ ଗାଁ ଆମ ବିକାଶ - ପିଠା'ରେ ୪୦୦ କୋଟି ଟଙ୍କାର ବ୍ୟୟବରାଦ ।
- ସ୍ୱଚ୍ଛ ଭାରତ ମିଶନ ଅଧୀନରେ ଗ୍ରାମାଞ୍ଚଳ ପାଇଁ ୧ ହଜାର ୬୦୦ କୋଟି ଟଙ୍କା ବ୍ୟୟବରାଦ ।
- ଚତୁର୍ଦ୍ଦଶ ଅର୍ଥ କମିଶନ ଓ ଚତୁର୍ଥ ରାଜ୍ୟ ଅର୍ଥ ଆୟୋଗଙ୍କ ସୁପାରିଶକ୍ରମେ ପଞ୍ଚାୟତିରାଜ ସଂସ୍ଥା ପାଇଁ ଯଥାକ୍ରମେ ୨ ହଜାର ୬୮୨ କୋଟି ଟଙ୍କା ଏବଂ ୧ ହଜାର ୮୯୮ କୋଟି ଟଙ୍କା ପ୍ରଦାନ କରିବାକୁ ପ୍ରସ୍ତାବ ରଖାଯାଇଛି ।
- ପ୍ରଧାନମନ୍ତ୍ରୀ ଗ୍ରାମ ସଡ଼କ ଯୋଜନା (PMGSY)ରେ ରାସ୍ତା ନିର୍ମାଣ ପାଇଁ ୨ ହଜାର ୯୦୦ କୋଟି ଟଙ୍କା ବ୍ୟୟବରାଦ କରାଯାଇଛି ।
- ପ୍ରଧାନମନ୍ତ୍ରୀ ଗ୍ରାମ ସଡ଼କ ଯୋଜନା (PMGSY)ରେ ଅନ୍ତର୍ଭୁକ୍ତ ନଥିବା ଅଞ୍ଚଳଗୁଡିକୁ ରାସ୍ତା ସଂଯୋଗୀକରଣ ପାଇଁ ମୁଖ୍ୟମନ୍ତ୍ରୀ ସଡ଼କ ଯୋଜନାରେ ୫୦ କୋଟି ଟଙ୍କା ବ୍ୟବସ୍ଥା କରାଯାଇଛି ।

- ଚରମ ବାମପନ୍ଥୀ ଉପଦ୍ରୁତ ଜିଲ୍ଲା ଅଧୀନରେ ଥିବା ଅଗମ୍ୟ ବିଚ୍ଛିନ୍ନାଞ୍ଚଳର ସଂଯୋଗୀକରଣ ପାଇଁ ବିଚ୍ଛିନ୍ନ ଗ୍ରାମକୁ ସଂଯୋଗୀକରଣ (Connecting Unconnected Villages) ଯୋଜନାରେ ୫୦ କୋଟି ଟଙ୍କାର ବ୍ୟୟବରାଦ ।
- ବିଜୁ କେବିକେ ଯୋଜନାରେ ସଡ଼କ, ବିଜୁଳି ଓ ପାଣି ପ୍ରକଳ୍ପର ସଫଳ ରୂପାୟନ ପାଇଁ ୧୨୦ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।

### (ଟ) ଜଳସେଚନର ସଂପ୍ରସାରଣ

- ପାର୍ବତୀ ଗିରି ବୃହତ୍ ଉଠା ଜଳସେଚନ ପ୍ରକଳ୍ପ ପାଇଁ ୧ ହଜାର ୭୬୭ କୋଟି ଟଙ୍କାର ବ୍ୟୟବରାଦ ।
- ୨୦୧୯-୨୦ ଆର୍ଥିକ ବର୍ଷରେ ତ୍ୱରିତ ଜଳସେଚନ ସୁବିଧା ଯୋଜନା (Accelerate Irrigation Benefit Programme) ନିମନ୍ତେ ୨ ହଜାର ୧୭୫ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି । ଏହାପାଇଁ NABARD ଅଧୀନରେ ଦୀର୍ଘମିଆଦୀ ଜଳସେଚନ ପାଣ୍ଠି (Long Term Irrigation Fund) ସହ ଅନୁବନ୍ଧନ କରାଯାଇଛି ।
- ମୁଖ୍ୟମନ୍ତ୍ରୀ ଆଡ଼ିବନ୍ଧ ତିଆରି ଯୋଜନା (MATY) ଅଧୀନରେ ୪୦୨ କୋଟି ଟଙ୍କା ବ୍ୟୟବରାଦ ।
- ଅଚଳ ଉଠା ଜଳସେଚନର ପୁନରୁଦ୍ଧାର ଲାଗି ୧୧୦ କୋଟି ଟଙ୍କାର ବ୍ୟୟବରାଦ ।
- ଗଭୀର ନଳକୂପ ଖନନ ନିମନ୍ତେ ୩୦୦ କୋଟି ଟଙ୍କା ଏବଂ ବିଜୁ କୃଷକ ବିକାଶ ଯୋଜନା ଅନ୍ତର୍ଗତ ଗୋଷ୍ଠୀ ଉଠା ଜଳସେଚନ ପ୍ରକଳ୍ପ ନିର୍ମାଣ ନିମନ୍ତେ ୪୦୦ କୋଟି ଟଙ୍କାର ବ୍ୟୟବରାଦ ।
- ପ୍ରଧାନମନ୍ତ୍ରୀ କୃଷି ସିଞ୍ଚାଇ ଯୋଜନା ଅଧୀନରେ କୃଷି ବିଭାଗ ମାଧ୍ୟମରେ ଅଣୁ ଜଳସେଚନ ନିମନ୍ତେ ୨୧୮ କୋଟି ଟଙ୍କାର ବ୍ୟୟବରାଦ ।
- ଜଳ ସଞ୍ଚାଳନଜନିତ କ୍ଷତିକୁ କମାଇବା ପାଇଁ Canal Lining System Rehabilitation Programme (CLSRP) ଅଧୀନରେ କେନାଲ ଆସ୍ତରଣ କାର୍ଯ୍ୟ ସମ୍ପୂର୍ଣ୍ଣ କରିବା ନିମନ୍ତେ ୨୧୦ କୋଟି ଟଙ୍କାର ବ୍ୟୟବରାଦ ।
- ବନ୍ୟା ନିୟନ୍ତ୍ରଣ ଓ ଜଳ ନିଷ୍କାସନ ପାଇଁ ୯୬୦ କୋଟି ଟଙ୍କାର ବ୍ୟୟବରାଦ ।

### (ଠ) ରେଳବାଇ ପ୍ରକଳ୍ପରେ ନିବେଶ

- ରେଳ ଭିତ୍ତିଭୂମିର ତ୍ୱରିତ ଉନ୍ନତିକରଣ ପାଇଁ ୪୦୦ କୋଟି ଟଙ୍କାର ବ୍ୟୟବରାଦ ।
- SPV ମାଧ୍ୟମରେ ଗୁରୁତ୍ୱପୂର୍ଣ୍ଣ ରେଳ ପ୍ରକଳ୍ପଗୁଡ଼ିକୁ ସମ୍ପୂର୍ଣ୍ଣ କରିବା ନିମନ୍ତେ ୧୦ କୋଟି ଟଙ୍କାର ବ୍ୟୟବରାଦ ।

### (ଡ) ଶିଳ୍ପରେ ଆର୍ଥିକ ନିବେଶ

- ଶିଳ୍ପ ବିଭାଗ ଲାଗି ବ୍ୟୟ ବରାଦକୁ ୨୩୭ କୋଟି ଟଙ୍କାକୁ ବୃଦ୍ଧି କରାଯାଇଛି, ଯେଉଁଥିରେ IPR ବାବଦକୁ ବକେୟା ରାଶି ହିସାବରେ ୧୮୮ କୋଟି ଟଙ୍କା ପ୍ରଦାନ ଅନ୍ତର୍ଭୁକ୍ତ ।
- ହସ୍ତତନ୍ତ, ହସ୍ତଶିଳ୍ପ, ରେଶମ ଶିଳ୍ପ ଏବଂ ବୟନ ଶିଳ୍ପ କ୍ଷେତ୍ର ପାଇଁ ୧୮୩ କୋଟି ଟଙ୍କା ଏବଂ ଅଣୁ, କ୍ଷୁଦ୍ର ଓ ମଧ୍ୟମ ଉଦ୍ୟୋଗ (MSME) କ୍ଷେତ୍ର ନିମନ୍ତେ ୧୯୨ କୋଟି ଟଙ୍କା ବ୍ୟୟବରାଦ ।

### (ଢ) ସହରାଞ୍ଚଳ ଉନ୍ନୟନ

- ସହରାଞ୍ଚଳ ଭିତ୍ତିଭୂମି ବିକାଶ ପାଇଁ UNNATI ଯୋଜନାରେ ୪୦୧ କୋଟି ଟଙ୍କାର ବ୍ୟୟବରାଦ ।
- ସରକାରୀ ଓ ଘରୋଇ ଭାଗିଦାରୀରେ ଭୁବନେଶ୍ୱରରେ ପରିବହନ ବ୍ୟବସ୍ଥାର ଉନ୍ନତିକରଣ ପାଇଁ ୧୨୫ କୋଟି ଟଙ୍କାର ବ୍ୟୟବରାଦ ।

- ସହରାଞ୍ଚଳରେ ବସ୍ତି ବାସଗୃହ ନିର୍ମାଣ ପାଇଁ ୪୦୦ କୋଟି ଟଙ୍କାର ଅତିରିକ୍ତ ବ୍ୟୟବରାଦ । ଏହିପରି ଭାବେ ବାସଗୃହ କ୍ଷେତ୍ର ପାଇଁ ମୋଟ ୪ ହଜାର କୋଟି ଟଙ୍କାର ବ୍ୟୟବରାଦ ।
- BASUDHA ଯୋଜନାରେ ସହରାଞ୍ଚଳ ଜଳଯୋଗାଣ ପାଇଁ ୪୩୫ କୋଟି ଟଙ୍କା ବ୍ୟୟ ଅଟକଳ ।
- ଚତୁର୍ଦ୍ଦଶ ଅର୍ଥ ଆୟୋଗ ଓ ଚତୁର୍ଥ ରାଜ୍ୟ ଅର୍ଥ ଆୟୋଗଙ୍କ ସୁପାରିଶ ଭିତ୍ତିରେ ରାଜ୍ୟର ସହରାଞ୍ଚଳ ନିକାୟ ସଂସ୍ଥାକୁ ଯଥାକ୍ରମେ ୫୪୨ କୋଟି ଓ ୧ ହଜାର ୨୮୮ କୋଟି ଟଙ୍କା ହସ୍ତାନ୍ତର କରାଯିବାର ପ୍ରସ୍ତାବ ଅଛି ।
- ନଗରାଞ୍ଚଳ ପୁନର୍ଜୀବନ ଏବଂ ନଗରାଞ୍ଚଳ ରୂପାନ୍ତରୀକରଣ ପାଇଁ AMRUT (ଅମୃତ) ଯୋଜନାରେ ୪୦୦ କୋଟି ଟଙ୍କା ଏବଂ ଜାତୀୟ ସହରାଞ୍ଚଳ ଜୀବିକା ମିଶନ ପାଇଁ ୫୨ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି ।
- JICA ସହାୟତାରେ କାର୍ଯ୍ୟକାରୀ ହେଉଥିବା କଟକ ଓ ଭୁବନେଶ୍ୱରର ସ୍ୱରେଜ୍ ପ୍ରକଳ୍ପ ପାଇଁ ୧୩୬ କୋଟି ଟଙ୍କାର ବ୍ୟୟବରାଦର ପ୍ରସ୍ତାବ ରହିଛି ।
- ସ୍ୱଚ୍ଛ ଭାରତ ମିଶନ ଅଧୀନରେ ସହରାଞ୍ଚଳ ପାଇଁ ୯୦ କୋଟି ଟଙ୍କା ବ୍ୟୟବରାଦ ।

**(ଣ) ଭିତ୍ତିଭୂମି ବିକାଶ**

- ରାଜ୍ୟର ରାସ୍ତା ନିର୍ମାଣ ଓ ଉନ୍ନତିକରଣ ପାଇଁ ରାସ୍ତା ଉନ୍ନତିକରଣ ପ୍ରକଳ୍ପ ଅଧୀନରେ ୧ ହଜାର ୩୦୦ କୋଟି ଟଙ୍କାର ବ୍ୟୟବରାଦ ।
- ଓଡିଶା ବିତରଣ ବ୍ୟବସ୍ଥା ସୁଦୃଢ଼ୀକରଣ ଯୋଜନାରେ ନୂତନ ୩୩ x ୧୧ କେ.ଭି. ସବ୍‌ଷ୍ଟେସନ ନିର୍ମାଣ ନିମିତ୍ତ ୫୩୩ କୋଟି ଟଙ୍କା ବ୍ୟୟବରାଦ ।
- ୨୪ ଘଣ୍ଟିଆ ନିରବଚ୍ଛିନ୍ନ ବିଦ୍ୟୁତ ସେବା ଯୋଗାଣ ନିମନ୍ତେ ରାଜ୍ୟ ରାଜଧାନୀ ଅଞ୍ଚଳ ବିଦ୍ୟୁତ ସରବରାହ ଉନ୍ନତି ପ୍ରଣାଳୀ (State Capital Region Improvement of Power System-SCRIPS) ଯୋଜନାରେ ୧୦୦ କୋଟି ଟଙ୍କାର ବ୍ୟୟ ବରାଦ କରାଯାଇଛି ।
- ରାଜ୍ୟ ରାଜପଥ ଉନ୍ନୟନ କାର୍ଯ୍ୟକ୍ରମ (SHDP) ଅନ୍ତର୍ଗତ ରାଜ୍ୟ ରାଜପଥ ଦୋହରିକରଣ ପାଇଁ ୨୦୦ କୋଟି ଟଙ୍କା, ସରକାରୀ ଓ ଘରୋଇ ଭାଗିଦାରୀ (PPP) ମାଧ୍ୟମରେ ସଡ଼କ ପ୍ରକଳ୍ପ ନିମିତ୍ତ ୬୫ କୋଟି ଟଙ୍କା, ପଶ୍ଚିମ ଓଡ଼ିଶା ଓ କେବିକେ ଜିଲ୍ଲାରେ ସଂଯୋଗୀକରଣର ଉନ୍ନତି ପାଇଁ ବିଜୁ ଏକ୍ସପ୍ରେସ୍ ୱେ ଯୋଜନାରେ ୫୦ କୋଟି ଟଙ୍କା ଓ କେନ୍ଦ୍ର ସଡ଼କ ପାଣ୍ଠି ପ୍ରକଳ୍ପ ପାଇଁ ୨୫୦ କୋଟି ଟଙ୍କାର ବ୍ୟୟବରାଦ ପ୍ରସ୍ତାବ ରହିଛି ।
- ସେତୁ ନିର୍ମାଣ ପାଇଁ ବିଜୁ ସେତୁ ଯୋଜନା ଅଧୀନରେ ୫୦୦ କୋଟି ଟଙ୍କା ବ୍ୟୟବରାଦ ।

**(ତ) ବିପର୍ଯ୍ୟୟ ପରିଚାଳନା**

- ପ୍ରାକୃତିକ ବିପର୍ଯ୍ୟୟ ପ୍ରଶମନ ପାଇଁ ମୋଟ ୨ ହଜାର କୋଟି ଟଙ୍କା ବ୍ୟୟବରାଦ ମଧ୍ୟରୁ SDRF ପାଇଁ ୯୦୯ କୋଟି ଟଙ୍କା ଏବଂ NDRF ପାଇଁ ୧ ହଜାର ୯୧ କୋଟି ଟଙ୍କା ।

**୩. ୨୦୧୯–୨୦ (ବଜେଟ୍ ଆକଳନ)ରେ ବିତ୍ତୀୟ ଉତ୍ତରଦାୟୀ ଓ ବଜେଟ୍ ପରିଚାଳନାର ଅନୁପାଳନ**

- ଆନୁମାନିକ ରାଜସ୍ୱ ବଳକା, ରାଜ୍ୟ ସାମଗ୍ରିକ ଘରୋଇ ଉତ୍ପାଦର ୧.୫୬ ପ୍ରତିଶତ ଅଟେ ଏବଂ ଏହା FRBM ଅନୁପାଳନ ଅନୁସାରେ ଶୂନ୍ୟ ରାଜସ୍ୱ ନିଅଣ୍ଟ ମଧ୍ୟରେ ସୀମିତ ଅଟେ ।
- ବିତ୍ତୀୟ ନିଅଣ୍ଟ ରାଜ୍ୟ ସାମଗ୍ରିକ ଘରୋଇ ଉତ୍ପାଦର ଧାର୍ଯ୍ୟ ଲକ୍ଷ୍ୟ ୩ ପ୍ରତିଶତ ମଧ୍ୟରେ ସୀମିତ ଅଟେ ।

- ସୁଧ ଦେୟ ଓ ରାଜସ୍ୱ ଆଦାୟ **(IP/RR)**ର ଅନୁପାତକୁ ୫.୮୭ ପ୍ରତିଶତ ମଧ୍ୟରେ ସୀମିତ କରାଯାଇଛି, ଯାହାକି FRBM ଅନୁପାଳନର ୧୫ ପ୍ରତିଶତରୁ କମ୍ ଅଟେ ।
- ବକେୟା ଋଣ ଓ ରାଜ୍ୟ ସାମଗ୍ରିକ ଘରୋଇ ଉତ୍ପାଦ ଅନୁପାତ ୨୦୧୯-୨୦ ଆର୍ଥିକ ବର୍ଷ ଶେଷରେ ଆନୁମାନିକ ୧୯.୨୦ ପ୍ରତିଶତ, ଯାହାକି FRBM ଅନୁପାଳନର ୨୫ ପ୍ରତିଶତରୁ କମ୍ ଅଟେ ।
- ୨୦୧୯-୨୦ ଆର୍ଥିକ ବର୍ଷର ଲେଖାନୁଦାନ ବଜେଟ FRBMକୁ ଅନୁପାଳନ କରୁଅଛି ।

### ୪. ଆର୍ଥିକ ପରିଚାଳନା ସଂସ୍କାର

### (କ) ସମନ୍ୱିତ ଆର୍ଥିକ ପରିଚାଳନା ବ୍ୟବସ୍ଥାର ଉନ୍ନତି ବିଧାନ *(IFMS-2.0)*

- ସମନ୍ୱିତ ଆର୍ଥିକ ପରିଚାଳନା ବ୍ୟବସ୍ଥା (IFMS)କ୍ଷେତ୍ରରେ ଓଡିଶା ସମଗ୍ର ଦେଶରେ ଏକ ଅଗ୍ରଣୀ ରାଜ୍ୟ ଅଟେ । ସମସ୍ତ ସରକାରୀ ଅର୍ଥ କାରବାରକୁ ସମ୍ପୂର୍ଣ୍ଣ ଭାବେ ଅନ୍‌ଲାଇନ ମାଧ୍ୟମରେ ସମ୍ପନ୍ନ କରିବା ପାଇଁ ଓଡିଶା IFMS୨.୦ ବ୍ୟବସ୍ଥାକୁ ପ୍ରଚଳନ କରାଯାଉଛି । ଏହାଦ୍ୱାରା ଆଗାମୀ ଦିନମାନଙ୍କରେ ରାଜ୍ୟ ସରକାରଙ୍କର ସମସ୍ତ ଆର୍ଥିକ କାରବାରକୁ ପେପରଲେସ୍ କରାଯାଇପାରିବ ।

### (ଖ) ସମନ୍ୱିତ ଆର୍ଥିକ ପରିଚାଳନା ବ୍ୟବସ୍ଥା (IFMS) ସହିତ ଏସ୍.ବି.ଆଇ.ଇ-ପେର ସହବନ୍ଧନ

- ଓଡିଶା କୋଷାଗାର ପୋର୍ଟାଲରେ ଅନଲାଇନ ଓ ଅଫ୍‌ଲାଇନ ମାଧ୍ୟମରେ କର ପ୍ରଦାନ ପାଇଁ ଓଡିଶା ସମନ୍ୱିତ ଆର୍ଥିକ ପରିଚାଳନା ବ୍ୟବସ୍ଥା ସହିତ ଏସ୍.ବି.ଆଇ. ଇ-ପେର ସହବନ୍ଧନ ହୋଇଛି । ଏହି ନୂତନ ବ୍ୟବସ୍ଥା ଦ୍ୱାରା ରାଜସ୍ୱ ଓ ବିପର୍ଯ୍ୟୟ ପରିଚାଳନା, ପରିବହନ, ଶିଳ୍ପ ଓ ଇସ୍ପାତ ଓ ଖଣି ବିଭାଗରେ ଇ-ପେମେଣ୍ଟକୁ ପ୍ରୋତ୍ସାହନ ମିଳିବା ସହିତ ସୁବିଧାରେ ବ୍ୟବସାୟ ବାତାବରଣ ସୃଷ୍ଟି କରିବାରେ ସହାୟକ ହେବ ।

### (ଗ) ସରକାରୀ ଆର୍ଥିକ ପରିଚାଳନା ପଦ୍ଧତି (PFMS)

- ସରକାରୀ ଆର୍ଥିକ ପରିଚାଳନା ପଦ୍ଧତି ପ୍ରଣୟନ କରି ଅନେକ କାର୍ଯ୍ୟକାରୀ ସଂସ୍ଥା ମାଧ୍ୟମରେ ଅର୍ଥ ବିନିଯୋଗର ନିରୀକ୍ଷଣ କରିବାରେ ଓଡ଼ିଶା ଏକ ଅଗ୍ରଣୀ ରାଜ୍ୟ ଭାବରେ ପରିଗଣିତ ହୋଇପାରିଛି । ଓଡିଶା ସମନ୍ୱିତ ଆର୍ଥିକ ପରିଚାଳନା ବ୍ୟବସ୍ଥା (IFMS) ସହିତ ସରକାରୀ ଆର୍ଥିକ ପରିଚାଳନା ପଦ୍ଧତି (PFMS)ର ସଂଯୋଗୀକରଣ ପ୍ରକ୍ରିୟା ସମ୍ପୂର୍ଣ୍ଣ ହୋଇଅଛି । PFMSର କାର୍ଯ୍ୟକାରିତା ପାଇଁ ବିଭିନ୍ନ ବିଭାଗ ଓ କାର୍ଯ୍ୟକାରୀ ସଂସ୍ଥାମାନଙ୍କୁ ସହାୟତା ଯୋଗାଇବା ନିମିତ୍ତ କୋଷାଗାର ଓ ପରିଦର୍ଶନ ନିର୍ଦ୍ଦେଶାଳୟରେ ରାଜ୍ୟ ପ୍ରକଳ୍ପ ପରିଚାଳନା ୟୁନିଟ (SPMU) ପ୍ରତିଷ୍ଠା କରାଯାଇଛି । PFMS କାର୍ଯ୍ୟକାରିତାକୁ ନିୟମିତ ସମୀକ୍ଷା କରିବା ପାଇଁ ରାଜ୍ୟ ଉପଦେଷ୍ଟା ମଣ୍ଡଳୀ ପ୍ରତିଷ୍ଠା କରାଯାଇଛି ।

### (ଘ) ଇଲେକ୍ଟ୍ରୋନିକ୍ ଜରିଆରେ ପେନ୍‌ସନ୍ ପ୍ରଦାନ ପ୍ରକ୍ରିୟା ଓ ବେସରକାରୀ ଅନୁଦାନପ୍ରାପ୍ତ ଶିକ୍ଷାନୁଷ୍ଠାନ କର୍ମଚାରୀମାନଙ୍କର ଅନ୍ତିମ ଦେୟ ପ୍ରଦାନର ତୁରନ୍ତ ସମାଧାନ

- ଅବସରପ୍ରାପ୍ତ ସରକାରୀ କର୍ମଚାରୀମାନଙ୍କର ପେନ୍‌ସନ୍ IFMSରେ ଇଲେକ୍ଟ୍ରୋନିକ୍ ମାଧ୍ୟମରେ ଅନୁମୋଦନ କରାଯାଉଛି । ଏହା ପେନ୍‌ସନ୍ ପ୍ରଦାନ ବ୍ୟବସ୍ଥାକୁ ତ୍ୱରାନ୍ୱିତ କରୁଅଛି ।

### (ଙ) ଅନ୍ ଲାଇନ୍‌ରେ ପେନ୍‌ସନ୍ ସଂଶୋଧନ ପାଇଁ 'ଅର୍ପଣ' ପୋର୍ଟାଲର ପ୍ରଚଳନ

- ୨୦୧୭ ନଭେମ୍ବର ମାସରେ ରାଜ୍ୟ ସରକାର ଅନ୍ ଲାଇନ୍‌ରେ ପେନ୍‌ସନ୍ ସଂଶୋଧନ ପାଇଁ 'ଅର୍ପଣ' ପୋର୍ଟାଲ୍ କାର୍ଯ୍ୟକାରୀ କରିଛନ୍ତି । ଏହି ପଦକ୍ଷେପ ପୁରାତନ ପେନ୍‌ସନ୍‌ଭୋଗୀମାନଙ୍କୁ ସମସ୍ୟାମୁକ୍ତ ସେବା ଯୋଗାଇ ଦେଉଛି ।



# ଧାର୍ମିକ ପର୍ବ : ଜାଗର

**ଡକ୍ଟର କିଶୋର ମହାନ୍ତି**

ଦେବ ଦେବ ମହାଦେବ, ଆମର ପୁରାଣ ଓ ସଂସ୍କୃତି, ତଥା ଧର୍ମ ଧାରଣାରେ ଏକ ଅଲୌକିକ ଚରିତ୍ର । ଏପରି ଏକ ମନୋରମ ଚରିତ୍ର ଆଉ କେଉଁଠାରେ ମିଳିବା ଅସମ୍ଭବ । ଜଟାଜୁଟ ପରିଶୋଭିତ, ଅର୍ଦ୍ଧନଗ୍ନ ଶରୀର, ଭସ୍ମରେ ଲେପିତ, ସଦାସର୍ବଦା ଧ୍ୟାନସ୍ଥ ମୁଦ୍ରାରେ ଉପବିଷ୍ଟ ପ୍ରଭୁ ଶଙ୍କର ଜଗତକୁ ସୁରକ୍ଷା ଦେବା ପାଇଁ ସାଜିଛନ୍ତି ଭୋଳାନାଥ । ତାଙ୍କ ସାଥି ଥାଏ ବାସୁଆ ବଳଦ, ଆଉ ସର୍ପ କଣ୍ଠରେ ମାଳା ସଦୃଶ ଲମ୍ବିଥାନ୍ତି । କି ଅପୂର୍ବ ଶୋଭାରାଶି । ତାଙ୍କ ସୌନ୍ଦର୍ଯ୍ୟର ତୁଳନା ନାହିଁ । ଏଇଠୁ ହିଁ ପ୍ରମାଣିତ ହେଉଛି ଦେବ ଦେବ ମହାଦେବ ପଶୁ, ସରୀସୃପ ଓ ପ୍ରାଣୀ ସକଳଙ୍କୁ କେତେ ଭଲ ପାଇଥାନ୍ତି । ସେ ତ ପଶୁମାନଙ୍କର ଦେବତା ତେଣୁ ତାଙ୍କର ଅନ୍ୟନାମ ପଶୁପତି । ସେ ମଧ୍ୟ ସର୍ପକୁ କଣ୍ଠରେ ଧରି ରଖୁଥିବାରୁ ସେ ଆଶୀବିଷଧର । ଶୂନ୍ୟ ଭିତରେ ପ୍ରଭୁ ଶିବଙ୍କର ଅବସ୍ଥାନ । ସେ କେବଳ ଯୋଗୀ ନୁହଁନ୍ତି ସେ ମହାଯୋଗୀ । ତାଙ୍କୁ କୁହନ୍ତି ତ୍ରିନେତ୍ର । ତୃତୀୟ ନେତ୍ର ସମସ୍ତ ଜଗତକୁ ଆଲୋକିତ କରୁଥାଏ । ସେ ପୁଣି ଶ୍ମଶାନବାସୀ । ପ୍ରକାରନ୍ତରେ ସେ ବୈରାଗୀ ପୁଣି ସଂସାରୀ । ସେ ଉମାପତି, ସେ ପୁଣି ସତୀଙ୍କର ପ୍ରାଣ । ସେ ତାଙ୍କର ସୁଶୋଭିତ ଜଟାଜୁଟ ମସ୍ତକରେ ଗଙ୍ଗାଙ୍କୁ ଧାରଣ କରିଥିବାରୁ ସେ ଗଙ୍ଗାଧର । ସେ ଶକ୍ତିମୟ ପୁରୁଷ ଶ୍ରେଷ୍ଠ । ତାଙ୍କ ହାତରେ ଧନୁ ଏବଂ ତ୍ରିଶୂଳ ଶୋଭା ପାଇଥାଏ ।



ସେ ପୁଣି ଡମ୍ବରୁଧର । ଧନୁର୍ବାଣରେ ତ୍ରିପୁରାସୁରକୁ ବଧ କରିଥିଲେ ସେ । ତାଙ୍କର ଶାଣିତ ତ୍ରିଶୂଳରେ ଶଙ୍ଖାସୁରକୁ ମଧ୍ୟ ମାରିଥିଲେ ।

ମହାଶିବରାତ୍ରି ହିନ୍ଦୁମାନଙ୍କର ଏକ ଧାର୍ମିକ ପର୍ବ । ଯେଉଁ ହିନ୍ଦୁ ଧର୍ମର ମୁଖ୍ୟ ଦେବତା ହେଉଛନ୍ତି ମହାଦେବ ଅର୍ଥାତ୍ ଶିବ । ଏହା ମଧ୍ୟ ଶିବଙ୍କର ଜନ୍ମୋତ୍ସବ ଭାବରେ ପାଳିତ ହୋଇଥାଏ । ମହାଶିବରାତ୍ରି ଫାଲ୍‌ଗୁନ ମାସର କୃଷ୍ଣ ପକ୍ଷ ଚତୁର୍ଦ୍ଦଶୀରେ ଅନୁଷ୍ଠିତ ହୋଇଥାଏ । ଏହିଦିନ ଶିବଭକ୍ତ ଏବଂ ଶିବଙ୍କ ପ୍ରତି ଆସ୍ଥା ପ୍ରକଟ କରିଥିବା ଶ୍ରଦ୍ଧାଳୁ ବ୍ରତ ଉପବାସ ରଖିଥାନ୍ତି । ଶ୍ରଦ୍ଧାଳୁମାନେ ଶୁଦ୍ଧପୂତ ଭାବରେ ଏହି ବ୍ରତ ପାଳନ କରନ୍ତି । ମହାଶିବରାତ୍ରି ମଧ୍ୟ ଜାଗର ଭାବରେ ପାଳିତ ହୋଇଥାଏ ।

ଏହି ବିଶେଷ ଦିନରେ ସ୍ୱୟଂ ବ୍ରହ୍ମା ରୁଦ୍ର ରୂପ ଧାରଣପୂର୍ବକ ମଧ୍ୟରାତ୍ରରେ ଭଗବାନ ଶଙ୍କର ଭାବରେ

ଅବତରଣ କରିଥିଲେ । ଆହୁରି ମଧ୍ୟ ମତ ରହିଛି ଯେ ଏହି ଦିନଟିରେ ପ୍ରଭୁ ମହାଦେବ ତାଣ୍ଡବ ନୃତ୍ୟ ପରିବେଷଣ କରି ତାଙ୍କର ତ୍ରିନେତ୍ର ପଟଳ ଉନ୍ମୁକ୍ତ କରିଥିଲେ । ଏତଦ୍‌ବ୍ୟତୀତ ଏଇଦିନ ଭଗବାନ ଶଙ୍କରଙ୍କର ବିବାହ ହୋଇଥିଲା ବୋଲି କଥିତ ଅଛି ।

ଏହି ଧାର୍ମିକ ଦିବସରେ ଦେବ ଦେବ ମହାଦେବଙ୍କର ପାର୍ବତୀ ଦେବୀଙ୍କ ସହ ବିବାହ ଉତ୍ସବ ଅନୁଷ୍ଠିତ ହୋଇଥାଏ । କିନ୍ତୁ ଫାଲ୍‌ଗୁନ ମାସର କୃଷ୍ଣ ଚତୁର୍ଦ୍ଦଶୀରେ ଅନୁଷ୍ଠିତ ଶିବରାତ୍ରି



ଅତୀବ ମହତ୍ତ୍ୱପୂର୍ଣ୍ଣ । ଏହା ମହାପ୍ରଭୁ ଭୋଳାନାଥଙ୍କର ଆରାଧନା କରିବା ବା ତୁଷ୍ଟ କରିବାର ବିଶେଷ ପର୍ବ ।

ଏହି ସମୟରେ ଶୈବଧର୍ମାଲମ୍ବୀମାନେ ପ୍ରଭୁଙ୍କ ପୂଜାର୍ଚ୍ଚନା କରି ଆଶିଷ ଭିକ୍ଷା କରିଥାନ୍ତି ଓ ବରପ୍ରାପ୍ତ ହୁଅନ୍ତି । ଏହା ଏମିତି ଏକ ପବିତ୍ର ଦିନ, ଯେଉଁଠି କି ଶିବମନ୍ଦିରମାନଙ୍କରେ ଅସମ୍ଭବ ପ୍ରକାରର ଭିଡ଼ ଜମେ । ଏହିଦିନ ମହାଦେବ ଶଙ୍କରଙ୍କର ବିଭିନ୍ନ ଅଭିଷେକ ହୋଇଥାଏ, ଯେପରି ଜଳାଭିଷେକ, ବେଲପତ୍ର, ଧୁତୁରା ଫୁଲ, ଅବିର ଇତ୍ୟାଦି ଅର୍ପଣ କରାଯାଏ । ଦିନତମାମ ଉପବାସ ରହି ଭକ୍ତମାନେ ପୂରା ରାତି ଉଜାଗର ରହିଥାନ୍ତି ।

କୁହାଯାଏ, ସମୁଦ୍ର ମନ୍ଥନ ବେଳେ ଦେବତା ଓ ଅସୁରଙ୍କ ମଧ୍ୟରେ ଲଢ଼େଇ ହେଇଥିଲା ଅମୃତ ପାଇବା ପାଇଁ । ପ୍ରଭୁ ମହାଦେବ କାଳକୂଟ ବିଷକୁ ପାନ କରି ଦେଇଥିଲେ, ଯାହା ସମୁଦ୍ର ମନ୍ଥନ ବେଳେ ମିଳିଥିଲା । ରାତ୍ରିସାରା ଉଜାଗର ରହି ପ୍ରଭୁଙ୍କୁ ଦୀପଦାନ ହେଉଛି ଏହାର ମହତ ଉଦ୍ଦେଶ୍ୟ । ଏହିଦିନ ମନ୍ଦିର ଅଗ୍ରଭାଗରେ ମହାଦୀପ ଉଠେ । ବିଭିନ୍ନ ଶୈବପୀଠରେ ଭଜନ, କୀର୍ତ୍ତନରେ ସମଗ୍ର ମନ୍ଦିରର ପରିବେଶ ଲୋକାରଣ୍ୟ ହୋଇଯାଇଥାଏ ଏବଂ ସମ୍ପୂର୍ଣ୍ଣ ଧାର୍ମିକ ପରିବେଶରେ ଶୈବ ଭକ୍ତମାନେ ମଜ୍ଜି ଯାଇଥାନ୍ତି । ଏହାର ମହତ ଉଦ୍ଦେଶ୍ୟ ହେଉଛି ଅଜ୍ଞାନ ରୂପୀ ଅନ୍ଧକାର ଦୂରୀଭୂତ କରିବା ଓ ନିଜ ମନ ଭିତରେ ଥିବା ସମସ୍ତ ଦୁର୍ଗୁଣଗୁଡ଼ିକୁ ପରିତ୍ୟାଗ କରି ସେଇ ମହାନ୍ ଆଲୋକରେ ଆଲୋକିତ ହେବା । ନିଜ ମନ ଭିତରେ ଅବିଗୁଣ ଓ ଆବିଳତାକୁ ଦୂରେଇ ଦେବାର ଏହା ହେଉଛି ସଂକଳ୍ପର ଦିନ । ଏହା ଜାଗର ଅମାବାସ୍ୟା ଭାବରେ କଥିତ । ଓଡ଼ିଶାର ପ୍ରସିଦ୍ଧ ଶୈବପୀଠ ଯଥା – ଭୁବନେଶ୍ୱରର ପ୍ରସିଦ୍ଧ ଲିଙ୍ଗରାଜ ମନ୍ଦିର, ଢ଼େଙ୍କାନାଳର କପିଳାସଠାରେ ଶିବମନ୍ଦିର, ମୁକ୍ତେଶ୍ୱର ମନ୍ଦିର, ଅଷ୍ଟଶମ୍ଭୁ ଶିବ ମନ୍ଦିର, ଭଦ୍ରକର ଆରଡ଼ିଠାରେ ଆଖଣ୍ଡଳମଣି ମନ୍ଦିର, ଜଗତସିଂହପୁରଠାରେ ଗୋରଖନାଥ ମନ୍ଦିର ଏବଂ ଅଷ୍ଟଶମ୍ଭୁ ମନ୍ଦିର, ସମ୍ବଲପୁରଠାରେ ହୁମା ମନ୍ଦିର, ପୁରୀର ପ୍ରସିଦ୍ଧ ଶୈବପୀଠ ଶ୍ରୀଲୋକନାଥ, କୋରାପୁଟର ଗୁପ୍ତେଶ୍ୱର ମନ୍ଦିର, ନୟାଗଡ଼ର ଶୈବପୀଠ ଲଡୁକେଶ୍ୱର ମନ୍ଦିର, ପ୍ରସିଦ୍ଧ ଦୀଘା ବାଲେଶ୍ୱରଠାରେ ଚନ୍ଦନେଶ୍ୱର ମନ୍ଦିର । ଓଡ଼ିଶାର ଗ୍ରାମାଞ୍ଚଳ ତଥା ସହରମାନଙ୍କରେ ପ୍ରତିଷ୍ଠିତ ଶୈବପୀଠମାନଙ୍କରେ ମଧ୍ୟ ଜାଗର ଉତ୍ସବ ମହାସମାରୋହରେ ପାଳିତ ହୁଏ । କଟକର ଧବଳେଶ୍ୱରରେ ମଧ୍ୟ ଜାଗର ଯାତ୍ରା ପାଳିତ ହୋଇଥାଏ ।

ଜାଗର ଅର୍ଥ ଉଜାଗର ରହିବା । ନିଜର ଜାଗରୁକତା ହିଁ ଏହି ପର୍ବର ପ୍ରଧାନ ଉଦ୍ଦେଶ୍ୟ । ଓଁ ନମଃ ଶିବାୟ ଉଚ୍ଚାରଣ ମାତ୍ରକେ ବ୍ରତଧାରୀ ଓ ଭକ୍ତଙ୍କ ମଙ୍ଗଳପ୍ରାପ୍ତ ହୋଇଥାଏ ବୋଲି ବିଶ୍ୱାସ ରହିଛି । ଶିବ ହେଉଛନ୍ତି ମଙ୍ଗଳର ଦ୍ୟୋତକ । ସେ ସତ୍ୟ, ଶିବ ଓ ସୁନ୍ଦରର ପ୍ରତୀକ । ମହାଦେବଙ୍କୁ ସନ୍ତୁଷ୍ଟ କରିପାରିଲେ ଭକ୍ତ ଜୀବନର ଧର୍ମ, ଅର୍ଥ, କାମ, ମୋକ୍ଷ ଫଳପ୍ରାପ୍ତି ହୋଇଥାଏ ।

ଇ–୫୦, ସେକ୍ଟର–୭
ମର୍କତ ନଗର, କଟକ–୧

# ଓଡ଼ିଆ ଅସ୍ମିତାର ବାର୍ତ୍ତାବହ ବାରିଷ୍ଟର ବିଶ୍ୱନାଥ ମିଶ୍ର

**ସ୍ୱସ୍ତିଦା ପାଳ**

ବାରିଷ୍ଟର ବିଶ୍ୱନାଥ ମିଶ୍ରଙ୍କ ଜୀବନକାଳ ଓଡିଶା ଇତିହାସର ଏକ ଗଠନମୂଳକ ସମୟ । ଭାରତର ଚତୁର୍ଦ୍ଦିଗରେ ସେହି ସମୟର ତାତ୍ପର୍ଯ୍ୟ ଏକାପରି ଥିଲା । ଭୌତିକ ଓ ତାତ୍ତ୍ୱିକ ବିକାଶର ଅପରିହାର୍ଯ୍ୟ କ୍ରିୟା ପ୍ରକ୍ରିୟା ମଧ୍ୟରେ ଜାତିର ଭୌତିକ ଓ ପାର୍ଥିବ ପରିବର୍ତ୍ତନ ଅବଶ୍ୟମ୍ଭାବୀ ଥିଲା ଏବଂ ଓଡିଶାର ମିଶ୍ରଣ ଆନ୍ଦୋଳନ ଥିଲା ତାହାର ଏକ ପରିପ୍ରକାଶ । ଏହା ଅତ୍ୟନ୍ତ ଆଶ୍ଚର୍ଯ୍ୟର ବିଷୟ ଯେ ଭାରତର ଅନ୍ୟ କୌଣସି ପ୍ରାନ୍ତରେ ଭାଷାଭିତ୍ତିକ ପ୍ରଦେଶ ଗଠନ ପାଇଁ ପରିକଳ୍ପନା ସୁଦ୍ଧା ନ ଥିଲା ବେଳେ ଓଡିଶାର ମହାମନୀଷୀମାନେ ଆନ୍ଦୋଳନ କରିଥିଲେ ମାତୃଭାଷାର ପରିଚୟଭିତ୍ତିକ ଏକ ପ୍ରଦେଶ ଗଠନ ପାଇଁ। ଓଡିଶାର ଦୈନ୍ୟ ଏବଂ ଓଡିଆଙ୍କ ହୀନମନ୍ୟତା ଯୋଗୁଁ ଅପେକ୍ଷାକୃତ ଅବହେଳିତ ଏହି ଆଳରେ ମୃତ ସଞ୍ଜିବନୀର ସଂଚାର କରିବା ପାଇଁ ଯେଉଁ ଯୋଗଜନ୍ମାମାନେ ସାଧନା କରିଥିଲେ ସେମାନଙ୍କ ମଧ୍ୟରେ ଅଗ୍ରଗଣ୍ୟ ଥିଲେ ବାରିଷ୍ଟର ବିଶ୍ୱନାଥ ମିଶ୍ର । ଉତ୍କଳ ଐତିହ୍ୟର ମହାନ୍ ପ୍ରେରଣାକୁ ହୃଦୟରେ ଗ୍ରହଣ କରି ଛିନ୍ନମସ୍ତା, ଛିନ୍ନହସ୍ତ ମାତୃଭୂମିର କ୍ରନ୍ଦନରୋଳ ମଧ୍ୟରେ ଯେପରି ସେ ଶୁଣିପାରିଥିଲେ ସମୟ ତରଙ୍ଗ ସେପାରିରୁ ଭାସିଆସୁଥିବା ପ୍ରାଚୀନ କଳିଙ୍ଗର ଗୌରବୋଜ୍ଜ୍ୱଳ ଐତିହ୍ୟର ତୂର୍ଯ୍ୟନାଦକୁ । ବିଦେଶୀ ସରକାରଙ୍କର ସୁପ୍ତ କର୍ଣ୍ଣକୁହରରେ ସେ ଢାଳିଦେଇଥିଲେ ବିସ୍ମୃତ ଅତୀତର ଗୌରବଗାଥା ।

ଏକ ଦୀନାତିଦୀନ ରକ୍ଷଣଶୀଳ ବ୍ରାହ୍ମଣ ପରିବାରରୁ ଆଗତ ଜଣେ ଯୁବକ ସାମାଜିକ ବନ୍ଧନର ନିଗଡକୁ ଛିନ୍ନ କରି ବିଲାତ ଯାଇ ବାରିଷ୍ଟର ହୋଇ ଫେରିଆସି ଦେଶରେ ଓଡିଆ ଜାତିର ମୁକ୍ତି ଆନ୍ଦୋଳନ ଓ ସମାଜ ସଂସ୍କାରରେ ନିଜକୁ ଯେ



ଉତ୍ସର୍ଗ କରିଥଲେ, ଏହା କମ୍ ସାହସର କଥା ନୁହେଁ । ଏହି ସମ୍ମିଳନୀ ୧୯୦୩ର ପ୍ରଥମ ଉତ୍କଳ ସମ୍ମିଳନୀରେ ଜଣେ ସ୍ୱେଚ୍ଛା ସେବକ ଭାବେ ଯୋଗଦେଇଥିବା ଉତ୍ସାହୀ ଛାତ୍ର ଯେ ଦିନେ ଭାଷାଭିତ୍ତିକ ସ୍ୱତନ୍ତ୍ର ପ୍ରଦେଶ ଗଠନ ଆନ୍ଦୋଳନର ମଙ୍ଗ ଧରିପାରେ ଏହା ଥିଲା କଳ୍ପନାତୀତ। ୧୯୦୪ ମସିହାରେ ଏଫ୍.ଏ. ପାସ୍ ପରେ ଉତ୍କଳଗୌରବ ମଧୁସୂଦନ ଦାସଙ୍କ

ପ୍ରେରଣା ଓ ପ୍ରୋତ୍ସାହନକ୍ରମେ ଗଞ୍ଜାମ ଜିଲ୍ଲାକୁ ନିଜର ପ୍ରଥମ କର୍ମଭୂମି ଭାବେ ବାଛି ନେଇଥିଲେ ସେ । ସେସମୟରେ ରସୁଲକୋଣ୍ଡା ବା ଭଞ୍ଜ ନଗର ତାଲିମ ବିଦ୍ୟାଳୟରେ ଓଡିଆ ଓ ତେଲୁଗୁ ଉଭୟ ଭାଷାକୁ ପଢାଇ ପାରିବାଲାଗି ୟୁ. ବି. ପି ବା ଉଭୟ ଭାଷା ପ୍ରବୀଣ ଶିକ୍ଷକମାନଙ୍କୁ ପ୍ରସ୍ତୁତ କରାଯାଉଥିଲା । ସେଠାରେ ସେ ତେଲୁଗୁ ଭାଷୀମାନଙ୍କୁ ମାତ୍ର ଛଅ ମାସ ମଧ୍ୟରେ ଓଡିଆ ଭାଷାରେ ପ୍ରବୀଣ ହେବାପାଇଁ ପ୍ରଦାନ କରାଯାଉଥିବା ତାଲିମ କାର୍ଯ୍ୟକ୍ରମରେ ଓଡିଆ ପଣ୍ଡିତ ଭାବେ ଯୋଗ ଦେଲେ । ସେସମୟର ଶିକ୍ଷକମାନଙ୍କର ବିଚିତ୍ର ଓଡିଆ ଶିକ୍ଷାର ଏକ ନମୁନା ଶୁଣନ୍ତୁ । କୋରାପୁଟର କୌଣସି ପରୀକ୍ଷାକେନ୍ଦ୍ରର ଛାତ୍ରମାନଙ୍କର ଇତିହାସ ଖାତାର ମୂଲ୍ୟାୟନ ବେଳେ ଜଣେ ଓଡିଆ ଭାଷୀ ଶିକ୍ଷକ ହତଚକିତ ହୋଇପଡିଥିଲେ । ଖାତାରେ ସମସ୍ତ ଛାତ୍ର ଗୋଟିଏ ପ୍ରକାର ବାକ୍ୟ ଲେଖିଥିଲେ, ତାହା ହେଲା ଆଲେକ୍ଜାଣ୍ଡାର ପୁରୁ ରାଜାଙ୍କ ଧୈର୍ଯ୍ୟକୁ ମେଞ୍ଚି ତାଙ୍କ ସହ ଓଅଡମ୍ବାଡିକା କଲେ । ମୂଲ୍ୟାୟନକାରୀ ଶିକ୍ଷକମାନେ ଚକିତ ହେଲେ । ଓଡିଆ ଭାଷାରେ ସେ ତ ପୂର୍ବରୁ ମେଞ୍ଚି ଓଅଡମ୍ବାଡିକା ଭଳି ଶବ୍ଦ ଜାଣିନଥିଲେ !! ଅନୁଧ୍ୟାନରୁ ଜଣାଗଲା ଯେ ଉଭୟ ଭାଷା ପ୍ରବୀଣ ତେଲୁଗୁ ଭାଷୀ ଇତିହାସ ଶିକ୍ଷକ ସେହିପରି ନୋଟ୍ ଶ୍ରେଣୀରେ ଡାକିଥିଲେ । ସେ ମହାଶୟ କଳନା କରି ଏବଂ ସନ୍ଧି ଭଳି ଓଡିଆ ଶବ୍ଦ ସହ ପରିଚିତ ନଥିବାରୁ ମେଞ୍ଚି ଏବଂ ଓଅଡମ୍ବାଡିକା ଭଳି ଶବ୍ଦ ଯଥାକ୍ରମେ ପ୍ରୟୋଗ କରିଥିଲେ । କଳନା କରନ୍ତୁ ଓଡିଆ ଭାଷାର ଅବସ୍ଥା ସେସମୟର ମାନ୍ଦ୍ରାଜ ପ୍ରେସିଡେନ୍ସି ଅଧୀନସ୍ଥ ଓଡିଆ ଭାଷାଭାଷୀ ବିଚ୍ଛିନ୍ନାଞ୍ଚଳରେ କଣ ଥିଲା । ପୁଣି ଗଞ୍ଜାମ, ଭଞ୍ଜନଗର – ଯାହାକି ଭଞ୍ଜଭୂମି ଓଡିଶାର ସାହିତ୍ୟ ସଂସ୍କୃତିର ପ୍ରାଣକେନ୍ଦ୍ର ଅଟେ !! କବି ସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କର ଜନ୍ମପୀଠରେ ଓଡିଆ ଭାଷାର ଦୁରବସ୍ଥା ବ୍ୟାକୁଳ କରିଥିଲା ମନଙ୍କୁ ତାଙ୍କର । ନିଜର ସମବୟସ୍କ ବା ନିଜଠାରୁ ବୟସ୍କ ଶିକ୍ଷକ ଛାତ୍ରମାନଙ୍କର ଦୋଷତ୍ରୁଟିକୁ ସୁଧାରିବାର ଗୁରୁଦାୟିତ୍ୱ ବହନ କରି ଭାଷା ସୁରକ୍ଷାର ଅଗ୍ରଣୀ ସେନାନୀ ଭୂମିକା ନିର୍ବାହ କରୁ କରୁ ମନ ତାଙ୍କର ଉଚ୍ଚାଟ ହେଲା ସମଗ୍ର ଓଡିଆ ଭାଷାଭାଷୀ ବିଚ୍ଛିନ୍ନାଞ୍ଚଳକୁ ଏକତ୍ରିତ କରି ଏକ ସ୍ୱତନ୍ତ୍ର ପ୍ରଦେଶ ଗଠନ କରିବା ପାଇଁ ୨୮.୧୨.୧୯୦୪ରେ କଟକର ଏକ ଜରୁରୀ ନିର୍ଦ୍ଧାରଣର ସମର୍ଥକ ରୂପେ ସେ ସ୍ୱାକ୍ଷର କରିଥିବା ନିର୍ଦ୍ଧାରଣର ସ୍ୱରୂପ ଥିଲା ସମଗ୍ର ଉତ୍କଳଭାଷୀ ଅଞ୍ଚଳକୁ ଏକ ଶାସନାଧୀନ କରାଇବା । ଏହି ଅୟମାରମ୍ଭର ବୀରବାଦ୍ୟ ସହ ବୀର ସୈନିକ ରୂପେ ସମ୍ମିଳନୀର ପରବର୍ତ୍ତୀ ଅଧିବେଶନ ମାନଙ୍କରେ ଯୋଗଦେଇ ଚାଲିଥିଲେ । ୧୯୦୬ରେ ପ୍ଲିଡରସିପ ଏବଂ ୧୯୦୮ରେ ପବ୍ଲିକ୍ ଏକ୍ଜାମିନେସନ ପାସ୍ କରିବା ପରେ ୧୯୧୦ର ଲଣ୍ଡନ୍‌ରେ ବାରିଷ୍ଟରୀ ପଢିବା ପାଇଁ ଗଲେ । ୧୯୧୩ ସମ୍ମିଳନୀରେ ଇଞ୍ଜିନିୟରିଂ ସ୍କୁଲ୍ ପ୍ରସ୍ତାବ, ୧୯୧୪ର ପାରଳାଖେମୁଣ୍ଡି ଉତ୍କଳ ସମ୍ମିଳନୀରେ ଓଡିଆକୁ କୋର୍ଟକଚେରୀ ଭାଷା ରୂପେ ଗ୍ରହଣ ତଥା ଓଡିଆ ଶିକ୍ଷାର ବିସ୍ତାର ନିମନ୍ତେ ପ୍ରଚେଷ୍ଟା ପାଇଁ ସେ ପ୍ରସ୍ତାବକ ମଧ୍ୟ ଥିଲେ । ୧୯୧୫ ସମ୍ବଲପୁର ସମ୍ମିଳନୀ ଏକାଦଶ ଅଧିବେଶନରେ ସିଂହଭୂମ, ଫୁଲଝର, ପଦ୍ମପୁର, ଚନ୍ଦ୍ରପୁର ଆଦି ଓଡିଆ ଅଂଚଳରେ ଓଡିଆ କଚେରୀ ଭାଷା ରୂପେ ଗୃହୀତ ହେବା ପାଇଁ ଉଦ୍ଦିଷ୍ଟ ବିଧେୟକର ସେ ଅନୁମୋଦକ ମଧ୍ୟ ଥିଲେ । କଟକ ସମ୍ମିଳନୀର ବିଶେଷ ଅଧିବେଶନରେ ଓଡିଆ ଭାଷାଭାଷୀ ଅଞ୍ଚଳର ଏକତ୍ରିକରଣ ଦାବୀକୁ ଦୋହରାଇବା ଥିଲା ମୂଳ ଲକ୍ଷ୍ୟ । ଏହି ସମ୍ମିଳନୀରେ ବଡଲାଟଙ୍କୁ ଧନ୍ୟବାଦ ଦିଆଯାଇଥିଲା ସତ କିନ୍ତୁ ମଣ୍ଟେଗୁ ଚେମସ୍‌ଫୋର୍ଡ କମିଟିର ଉଦ୍ୟମର ଅଭାବକୁ କ୍ଷୋଭର ସହ ନିନ୍ଦା ମଧ୍ୟ କରାଯାଇଥିଲା । ଏହି ନିର୍ଦ୍ଧାରଣରେ ବାରିଷ୍ଟର୍ ମିଶ୍ର ଓ ଗଞ୍ଜାମର ଶଶୀଭୂଷଣ ରଥ ମଧ୍ୟ ମୁଖ୍ୟ ଭୂମିକାରେ ଥିଲେ ।

ମାର୍ଚ୍ଚ ୧୯୨୧ରେ ମହାତ୍ମା ଗାନ୍ଧୀଙ୍କ ସହ ତାଙ୍କର ସାକ୍ଷାତ ଆଲୋଚନା ହୋଇଥିଲା ଗାନ୍ଧିଜୀଙ୍କ ବ୍ରହ୍ମପୁର ଗସ୍ତ ସମୟରେ । ଗାନ୍ଧିଜୀ ସେହି ବ୍ରହ୍ମପୁର ସଭାରେ ଘୋଷଣା କରିଥିଲେ ଯେ ତାଙ୍କର ଅସହଯୋଗ ଆନ୍ଦୋଳନ କାର୍ଯ୍ୟକ୍ରମ ପୂର୍ଣ୍ଣପ୍ରାଣରେ ପାଳିତ ହେଲେ ଏକ ବର୍ଷ ମଧ୍ୟରେ ଭାରତର ସ୍ୱରାଜ ପ୍ରତିଷ୍ଠିତ ହେବ । ସ୍ୱରାଜ୍ୟ ପରିପ୍ରେକ୍ଷୀରେ ବିଶ୍ୱନାଥ ଓ ତାଙ୍କର ସମଚିନ୍ତକ ସହକର୍ମୀମାନଙ୍କୁ ଗାନ୍ଧିଜୀ ପରାମର୍ଶ ଦେଲେ ଯେ ତାଙ୍କର ଆନ୍ଦୋଳନରେ ୧) ସରକାରୀ ଶିକ୍ଷାନୁଷ୍ଠାନ, ୨) ସରକାରୀ ବିଚାରାଳୟ, ୩) ବିଦେଶୀ ବସ୍ତ୍ର, ୪) ମାଦକ ଦ୍ରବ୍ୟ, ୫) ସରକାରୀ ଉପାଧି ବର୍ଜନ କରିବାକୁ । ସେ ପରାମର୍ଶ ଦେଲେ ଯେ ପ୍ରତ୍ୟେକ ଦେଶ ମିଶ୍ରଣ ଅଭିଳାଷୀ ଓଡିଆ ଗୋଟିଏ ବର୍ଷ ତାଙ୍କରି ଅସହଯାଗର ନିର୍ଦ୍ଦିଷ୍ଟ ବର୍ଜନ ନୀତି ଗ୍ରହଣ

କରନ୍ତୁ । ତା' ବାହାରେ ସେମାନେ ଭାଷା ପ୍ରଚାର ଓ ପ୍ରସାର ପାଇଁ ଲାଗିପଡନ୍ତୁ ସେଥିରେ ତାଙ୍କର ଆପତ୍ତି ନାହିଁ। ବିଶ୍ୱନାଥ ଏହି ସମୟରେ କଲିକତାଠାରୁ ନିଜର ଓକିଲାତିର ବ୍ୟବସ୍ଥା ଉଠାଇ ଆଣି କଟକର କାଠଯୋଡି କୂଳର ପୁରୀଘାଟଠାରେ ବାସଗୃହ ନିର୍ମାଣ କରି ଅବସ୍ଥାନ କଲେ। ଅସହଯୋଗ ଆନ୍ଦୋଳନ ପ୍ରତି ନିଷ୍ଠାପର ପ୍ରତିଶ୍ରୁତି ଭାବେ ସେ କୌଣସି ବିଲାତି କୋର୍ଟ କଚେରୀ ସହ ସଂପର୍କ ରଖି ନଥିଲେ। ଚୌରିଚୌରା ଘଟଣା ପରେ ଅସହଯୋଗ ଆନ୍ଦୋଳନ ସ୍ଥଗିତ ହେଲା ଏବଂ ମାର୍ଚ୍ଚ ୧୦ରେ ଗାନ୍ଧିଜୀ ଗିରଫ ହେଲେ। ଏହି ସମୟ ମଧ୍ୟରେ ଜୀବିକାର ତାଡନାରେ ସେ ପୁନଶ୍ଚ ଆଇନ ବ୍ୟବସାୟକୁ ଫେରିବାର ଚିନ୍ତା କରୁଥିବା ସମୟର କେନ୍ଦ୍ର ବ୍ୟବସ୍ଥା ସଭାକୁ ଓଡିଶାରୁ ନିର୍ବାଚିତ ହୋଇଥିବା ପ୍ରାର୍ଥୀ ନିମାଇଁ ଚରଣ ମିତ୍ର କୌଣସି କାରଣରୁ ଇସ୍ତଫା ଦେଇଥିଲେ ଏବଂ ଏହି ଶୂନ୍ୟସ୍ଥାନ ପାଇଁ ବିଶ୍ୱନାଥ ପ୍ରତିଦ୍ୱନ୍ଦ୍ୱିତା କରି ନିର୍ବାଚିତ ହୋଇଥିଲେ ବିଶ୍ୱନାଥ ମିଶ୍ର ଓଡିଆ ଡିଭିଜନ୍‌ର ମୁସଲମାନ-ଇତର ନିର୍ବାଚନ ମଣ୍ଡଳୀରୁ ସଭ୍ୟରୂପେ ଶପଥ ଗ୍ରହଣ କରିଥିଲେ। ପ୍ରବେଶର ଅଳ୍ପଦିନ ପରେ ଭାରତୀୟ ଅର୍ଥବିଲ୍ ବା ବଜେଟ୍ ଉପରେ ତାଙ୍କର ଭାଷଣର ପାଳି ପଡିଥିଲା। ସେହି ଭାଷଣରେ ତାଙ୍କର ଆଘାତର ମୂଳବସ୍ତୁ ଥିଲା ଭାରତର ଅର୍ଥମନ୍ତ୍ରୀଙ୍କର ଲୁଣ ଟିକସର ଦୁଇଗୁଣ ବୃଦ୍ଧି। ଅର୍ଥମନ୍ତ୍ରୀଙ୍କ ବଜେଟ୍ ଭାଷଣକୁ ସମାଲୋଚନା କରି ଦରିଦ୍ର ଭାରତୀୟର ପ୍ରମୁଖ ଖାଦ୍ୟ ଲୁଣର ଦରବୃଦ୍ଧି ଯେ ତା'ର ସ୍ୱାସ୍ଥ୍ୟ ଓ ପରମାୟୁ ଉପରେ ପ୍ରଭାବ ପକାଇବ ଏହା ଦର୍ଶାଇଥିଲେ। ତା' ଛଡା କେବଳ ଯେ ମଣିଷ ଲୁଣ ଖାଏ, ତା ନୁହେଁ, ମାଛକୁ ଶୁଖୁଆ କରିବାରେ, ଜୀବଜନ୍ତୁଙ୍କ ଖାଦ୍ୟରେ ମଧ୍ୟ ଯଥେଷ୍ଟ ଲୁଣ ଖର୍ଚ୍ଚ ହୁଏ । ଏଣୁ ଗରିବର ଅତ୍ୟାବଶ୍ୟକ ଖାଦ୍ୟ ଉପରେ ଟିକସ ବୃଦ୍ଧି ନକରି ଜାତୀୟ ଆୟ ବୃଦ୍ଧି ଓ ସରକାରୀ ଖର୍ଚ୍ଚକାଟ ଦ୍ୱାରା ନିଅଣ୍ଟ ଭରଣା ପାଇଁ ଅନୁରୋଧ କରିବା ସହ ଲୁଣ ଟିକସ ବୃଦ୍ଧି ବିରୁଦ୍ଧରେ ହୋଇଥିବା ସଂଶୋଧନଟିକୁ ସମର୍ଥନ କରିଥିଲେ। ଖାଦାନଶ୍ରମିକମାନଙ୍କ ପାଇଁ ମାନବବାଦୀ ଆଭିମୁଖ୍ୟ ସମ୍ବଳିତ ଯୁକ୍ତି ଯଦିଓ କାଟ୍ ଖାଇଥିଲା ତଥାପି ତାଙ୍କର ଚେତନାର ଫଳଶ୍ରୁତି ଆଜିର ପରିବର୍ଦ୍ଧିତ ଶ୍ରମ ଆଇନ ଅଟେ।

ବ୍ୟବସ୍ଥାପକ ସଭାର ବଜେଟରେ ବଡଲାଟ୍ ଓ ତାଙ୍କର ଦରବାର ଓ ପରିବାର ପରିଜନଙ୍କର ଗସ୍ତ ଖର୍ଚ୍ଚକୁ କମାଇବା ପାଇଁ ଯୁକ୍ତି ଉପସ୍ଥାପନ କରିଥିଲେ। ମହାମାନ୍ୟଙ୍କର ଏହି ଗସ୍ତ ଫଳରେ କି ଉଦ୍ଦେଶ୍ୟ ସାଧିତ ହେଉଛି ? ସେସମୟରେ ଏହା ଏକ ଅସୀମ ସାହସିକତାର ପ୍ରଶ୍ନ ଥିଲା। ବ୍ୟବସ୍ଥାପକ ସଭାରେ କାର୍ଯ୍ୟକାଳ ଶେଷ ପରେ ପାଟନାଠାରେ ଓକିଲାତି କରିବାକୁ ଚିନ୍ତା କରିଥିଲେ।

ପୁନଶ୍ଚ ନୀଳକଣ୍ଠ ଦାସଙ୍କ ଇସ୍ତଫା ହେତୁ ସେହି ସ୍ଥାନକୁ ନିର୍ବାଚିତ ହୋଇଥିଲେ। ଏହି ସମୟରେ ଲବଣ ସତ୍ୟାଗ୍ରହ, ସତ୍ୟାଗ୍ରହୀମାନଙ୍କୁ ଦମନମୂଳକ ପଦକ୍ଷେପ ଆଦି ବହୁ ଗୁରୁତ୍ୱପୂର୍ଣ୍ଣ ଘଟଣା ଭାରତ ଇତିହାସରେ ସଂଗଠିତ ହୋଇ ଚାଲିଥାଏ । ସେହି ସମୟରେ ବ୍ରିଟିଶ ସାମ୍ରାଜ୍ୟବାଦୀ ସରକାରର ଦମନ, ଟିକସ ବ୍ୟବସ୍ଥା, ସୈନ୍ୟବାହିନୀର ଅତିରିକ୍ତ ଖର୍ଚ୍ଚ, ସତ୍ୟାଗ୍ରହୀଙ୍କ ଉପରେ ଜୁଲୁମ, ବେଙ୍ଗଲ୍ ନାଗପୁର ରେଳବାଇରେ ଓଡିଆମାନଙ୍କର ସ୍ୱାର୍ଥ, ଓଡିଶା ସହିତ ତା'ର ବିଚ୍ଛିନ୍ନାଞ୍ଚଳଗୁଡିକର ଏକତ୍ରିକରଣ ଉପରେ ବାରମ୍ବାର ପ୍ରଶ୍ନ ଉପସ୍ଥାପନ କରୁଥିବାରୁ ସେ ବନ୍ଧୁ ମହଲରେ ମିଷ୍ଟର୍ ଓଡିଶା ଭାବେ ପରିଚିତ ହୋଇଥିଲେ।

ଅନ୍ୟ ପକ୍ଷରେ ସାଇମନ୍ କମିସନ୍‌କୁ ଭାରତ ତଥା ଓଡିଶାର ବୁଦ୍ଧିଜୀବୀ ଓ କଂଗ୍ରେସ ନେତାମାନେ ଅସହଯୋଗ କରିଥିଲେ ମଧ୍ୟ ବିଶ୍ୱନାଥ ମିଶ୍ର, ବ୍ରଜସୁନ୍ଦର ଦାସ ପ୍ରଭୃତି ପାଟନାଠାରେ ତାଙ୍କ ନିକଟରେ ସ୍ୱତନ୍ତ୍ର ଓଡିଶା ପ୍ରଦେଶ ଗଠନର ଦୃଢ ଦାବି ଉପସ୍ଥାପନ କରିଥିଲେ। ଯାହାଫଳରେ ସାଇମନ୍ କମିଶନ ମେଜର ଅଟ୍‌ଲୀଙ୍କ ଅଧ୍ୟକ୍ଷତାରେ ଏକ ସବ୍‌କମିଟି ଗଠନ କରିଥିଲେ। ତାଙ୍କ ସହ ଓଡିଆମାନଙ୍କ ପ୍ରତିନିଧି ଭାବରେ ବିକ୍ରମ ଦେବ ବର୍ମା ବିଶାଖାପାଟଣାଠାରେ ଏକ ବଳିଷ୍ଠ ସ୍ମାରକପତ୍ର ପ୍ରଦାନ କରିଥିଲେ। ଓଡୋନେଲ କମିସନ୍ ସୀମା ନିର୍ଦ୍ଧାରଣ ପାଇଁ କାର୍ଯ୍ୟ କରିବା ସମୟରେ ପ୍ରତ୍ୟକ୍ଷ ସହଯୋଗ ମଧ୍ୟ କରିଥିଲେ। ପ୍ରକୃତରେ କଲିକତାରେ ବିଶ୍ୱନାଥଙ୍କ ଅବସ୍ଥାନ ନିଜଠାରୁ ଉତ୍କଳ ସମ୍ମିଳନୀର ପ୍ରତ୍ୟେକ ଅଧିବେଶନରେ କେବଳ ଦେଶ ମିଶ୍ରଣର ଆନୁଷଙ୍ଗିକ ସମସ୍ୟା ନୁହେଁ, ଶିକ୍ଷା ଓ ତାଲିମ ବ୍ୟବସ୍ଥା ବିଷୟରେ ବିଭିନ୍ନ ପ୍ରସ୍ତାବ ଗୃହୀତ ହେବାରେ ଲାଗିଲା। କୋର୍ଟ କଚେରୀରେ ଓଡିଆ ଭାଷା, କଟକରେ ଇଂଜିନିୟରିଂ ସ୍କୁଲ ପ୍ରତିଷ୍ଠା ଇତ୍ୟାଦି ଡିସେମ୍ବର ଉତ୍କଳ ସମ୍ମିଳନୀର ପୁରୀ

ଅଧିବେଶନରେ ଗୃହୀତ ହୋଇଥିଲା । ଏହାର ସଭାପତି ଥିଲେ ଉତ୍କଳଗୌରବ ମଧୁସୂଦନ ଦାସ । ଏହି ସମସ୍ତ ଶିକ୍ଷାଗତ ଓ ତାଲିମଗତ ପ୍ରସ୍ତାବ ଓ କୋର୍ଟ କଚେରୀରେ ଓଡିଆ ଭାଷାର ପ୍ରଚଳନର ପ୍ରସ୍ତାବର ପ୍ରଧାନ ପ୍ରବକ୍ତା ଥିଲେ କଲିକତାରେ ଉତ୍କଳ ସମିତିର ସଭାପତିଭାବେ ବାରିଷ୍ଟର ବିଶ୍ୱନାଥ ମିଶ୍ର । ଏଠାରେ ଉଲ୍ଲେଖଯୋଗ୍ୟ ଯେ ଏହି ମଣ୍ଡପରେ ସେ ସତ୍ୟବାଦୀ ବନବିଦ୍ୟାଳୟକୁ ପାଞ୍ଚଶତ ଟଙ୍କା ଦାନ ଦେବା ସହ ତିନି ହଜାର ଟଙ୍କା ଦାନ ସଂଗ୍ରହ ସହ ୧୪୦୦ ଟଙ୍କା ଅର୍ଥ ସାହାଯ୍ୟର ପ୍ରତିଶ୍ରୁତି ମଧ୍ୟ ମିଳିପାରିଥିଲା । କଲିକତା ଘରେ ତାଙ୍କଦ୍ୱାରା ଆହୂତ ଛାତ୍ରସଭାର ପ୍ରସ୍ତାବ ଅନୁସାରେ ପ୍ରାକୃତିକ ଓଡିଶାର ଦୁଇଶତ ଛାତ୍ରଙ୍କର ଏକ ସଭା ପୁରୀଠାରେ ସମ୍ମିଳନୀ ମଣ୍ଡପରେ ବସିଥିଲା । ଓଡିଶାର ଛାତ୍ର ଜାଗରଣର ଏହା ହିଁ ପ୍ରଥମ ସଂଗଠିତ ସୂଚନା ଥିଲା । ପ୍ରତ୍ୟକ୍ଷ ଭାବରେ ନ ହେଲେ ମଧ୍ୟ ପରୋକ୍ଷ ଭାବରେ ଉତ୍କଳ ସମ୍ମିଳନୀ ମଣ୍ଡପର ସାହିତ୍ୟାନୁରାଗ ଓ ଶିକ୍ଷାବ୍ରତୀତା ଓ ସେଥିପାଇଁ ଦାନର ଅୟମାରମ୍ଭ ଓଡିଶାରେ ଏକ ନୂତନ ଯୁଗର ସୂତ୍ରପାତ କରିଥଲା । ଏହାଫଳରେ ସତ୍ୟବାଦୀ ବନବିଦ୍ୟାଳୟକୁ ଓଡିଶାର କୋଣ ଅନୁକୋଣରୁ ଦାନର ଧାରାସ୍ରୋତ ଛୁଟିଥିଲା । ମୋଟ୍ ଉପରେ ଉତ୍କଳ ସମ୍ମିଳନୀର ପ୍ରତିଷ୍ଠା ଓ ତା'ର ପୁଣ୍ୟ ପ୍ରଭାବରେ ଓ ସତ୍ୟବାଦୀ ବନବିଦ୍ୟାଳୟର ସୌରଭରେ ସେତେବେଳେ ଓଡିଶାରେ ଏକ ସାଂସ୍କୃତିକ ନବଜାଗରଣର ଜୁଆର ଛୁଟିଥିଲା । ଗୋଟିଏ ଆଦର୍ଶ ଅନ୍ୟକୁ ପ୍ରଭାବିତ କରିବାର ବହୁ ପ୍ରଭାବ ହେତୁ ଏକ ଗୁଣାତ୍ମକ ପରିବର୍ତ୍ତନ ସୃଷ୍ଟି ହେଲା । ଏହି ପରିବର୍ତ୍ତନର ମହାସ୍ରୋତରେ ବିଶ୍ୱନାଥ ମିଶ୍ରଙ୍କର ଗୁରୁତ୍ୱପୂର୍ଣ୍ଣ ଭୂମିକା ଥିଲା, ଏକଥା ନିଃସନ୍ଦେହ ।

୧୯୧୭ ଇଦ୍‌ଗା ପଡିଆ କଟକଠାରେ ବିଶ୍ୱନାଥ ମିଶ୍ରଙ୍କର ଯୋଗଦାନ ବିଶେଷ ଗୁରୁତ୍ୱପୂର୍ଣ୍ଣ ଥିଲା । ସେପର୍ଯ୍ୟନ୍ତ ଓଡିଶାର ସଭା ସମିତିମାନଙ୍କରେ ମହିଳାମାନଙ୍କର ଦେଖଣାହାରୀ ଭାବେ ଯୋଗଦାନ ଏକପ୍ରକାର ଅଭାବନୀୟ ବିଷୟ ଥିଲା । ଅଥଚ ଏହି ଦିନରେ ଏହି ସମ୍ମିଳନୀ ମଣ୍ଡପରେ ସ୍ୱୀୟ ସହଧର୍ମିଣୀଙ୍କ ସହ ବିଶ୍ୱନାଥ ମିଶ୍ର ଉପବେଶନ କରିଥିଲେ । ସେସମୟରେ ତାହା ଥିଲା ଏକ କ୍ଷୁଦ୍ର ସାମାଜିକ ଓ ମୌଳିକ ବିପ୍ଳବ ।

୧୯୩୩ ମସିହା ସେପ୍ଟେମ୍ବର ୧୯ ତାରିଖରେ ସିମ୍‌ଲାଠାରେ ତାଙ୍କର ମୃତ୍ୟୁ ହୋଇଥିଲା । ଏହି ଯୋଗଜନ୍ମା ବ୍ୟକ୍ତି ଓଡିଶାକୁ ଭାରତବର୍ଷରେ ପରିଚିତ କରାଇବା ସହ ଓଡିଆ ଅସ୍ମିତାର ଯେଉଁ ପ୍ରଗାଢ ପରିଚୟ ଦେଇଥିଲେ, ତାହା ସର୍ବଦା ସମ୍ମାନନୀୟ ।

ସହକାରୀ ଶିକ୍ଷୟିତ୍ରୀ
ସରକାରୀ ବାଳିକା ଉଚ୍ଚ ବିଦ୍ୟାଳୟ, ଜଟଣୀ



# ଦର୍ଶନୀୟ ତୀର୍ଥସ୍ଥାନ ମୀନାଝୋଲା

**ଦେବପ୍ରସାଦ ମିଶ୍ର**

ପ୍ରକୃତିର ନୈସର୍ଗିକ ସୌନ୍ଦର୍ଯ୍ୟ ଓ ଆହ୍ଲାଦକାରିଣୀ ଶକ୍ତିର ପରିକାଷ୍ଠା ଯେପରି ଦର୍ଶକ ମାନସରେ ଅଭୂତପୂର୍ବ ପ୍ରଭାବ ବିସ୍ତାର କରେ, ଆମର ଆଧ୍ୟାତ୍ମିକ ପୀଠସମୂହର ଅଲୌକିକ ଆକର୍ଷଣ ମଧ୍ୟ ସେହିପରି ଭକ୍ତ ହୃଦୟରେ ଅଖଣ୍ଡ ବିଭୁପ୍ରୀତି ଯେ ସଞ୍ଚାର କରିବାରେ ସମର୍ଥ, ଏହା ସର୍ବବାଦିସମ୍ମତ । ତେବେ ପ୍ରକୃତି ଓ ପବିତ୍ରତାର ମିଳନ ଶିବ ଓ ସୁନ୍ଦରର ସଂଯୋଗ, ବିଳାସ ଓ ବିଭୁପ୍ରୀତିର ସଂଶ୍ଲେଷ ତଥା ନୈସର୍ଗିକ ବିଭବ ଓ ଆଧ୍ୟାତ୍ମିକ ସମ୍ପଦର ସମାହାର କ୍ୱଚିତ୍ ପରିଦୃଷ୍ଟ ହୁଏ । ଏହି ଦୃଷ୍ଟିରୁ ମୀନାଝୋଲାର ପ୍ରାଧାନ୍ୟ ଅଦ୍ୱିତୀୟ । ଏହା ଏକ ପକ୍ଷରେ ଅସାଧାରଣ ପ୍ରାକୃତିକ ଶୋଭାସମ୍ଭାରର ଅକ୍ଷୟ ଭଣ୍ଡାର, ଅନ୍ୟ ପକ୍ଷରେ ଅସାମାନ୍ୟ ଆଧ୍ୟାତ୍ମିକ ଉତ୍କର୍ଷସମନ୍ୱିତ ଏକ ପୁଣ୍ୟପୀଠ । ପୁରୀର ଶ୍ରୀଲୋକନାଥ, କଟକର ଅମରେଶ୍ୱର ଓ ଧବଳେଶ୍ୱର, ଭୁବନେଶ୍ୱରର ଶ୍ରୀ ଲିଙ୍ଗରାଜ, ଶରଣକୂଳର ଲଡୁବାବା, ବାଲେଶ୍ୱର ଅନ୍ତର୍ଗତ ଲଙ୍ଗଳେଶ୍ୱର, କେନ୍ଦୁଝରର ସିଦ୍ଧେଶ୍ୱର, ଢେଙ୍କାନାଳର କପିଳାସ, ଆଠଗଡର ସର୍ପେଶ୍ୱର, ଗଞ୍ଜାମର ମହେନ୍ଦ୍ରଗିରି, ଜୟପୁର ନିକଟବର୍ତ୍ତୀ ଗୁପ୍ତେଶ୍ୱର ପ୍ରଭୃତି ଶୈବପୀଠଗୁଡିକର ମହାଶିବରାତ୍ରି ଉତ୍ସବ ଯେପରି ଓଡିଶା ବିଖ୍ୟାତ ସେହିପରି କୋରାପୁଟ ଜିଲ୍ଲା ଗୁଣପୁର ଅଞ୍ଚଳ ଅନ୍ତର୍ଗତ ମୀନାଝୋଲାର ଶିବରାତ୍ରି ଯାତ୍ରା ଆଖପାଖ ଅଞ୍ଚଳର ଅଧିବାସୀମାନଙ୍କ ପାଇଁ ବିଶେଷ ପ୍ରସିଦ୍ଧ । ତେବେ ଏହା ଅଦ୍ୟାବଧି ଓଡିଶାବାସୀଙ୍କର ପୂର୍ଣ୍ଣ ଦୃଷ୍ଟି ଆକର୍ଷଣ କରିପାରି ନାହିଁ ବୋଲି କୁହାଯାଇପାରେ ।

ଉଭୟ ପାର୍ଶ୍ୱରେ ସମୁଚ୍ଚ ପର୍ବତମାଳା ଓ ଘଞ୍ଚ ଅରଣ୍ୟ ପରିବେଷ୍ଟିତ ପୁଣ୍ୟତୋୟା ବଂଶଧାରା ତଟିନୀର କଳନାଦିନୀ ସ୍ରୋତ ମଧ୍ୟରେ ଏକ ମନୋରମ ପ୍ରସ୍ତର ଶ୍ରେଣୀର ନାମ ମୀନାଝୋଲା । ଗୁଡାରିର ଉତ୍ତର ଦିଗରେ ସଡକ ପଥରେ



ପ୍ରାୟ ୩୨ କି.ମି. ( ଚଲା ପଥରେ ପ୍ରାୟ ୧୫ କି.ମି. ) ଏବଂ ଚନ୍ଦ୍ରପୁରର ଦକ୍ଷିଣକୁ ସଡକ ପଥରେ ପ୍ରାୟ ୧୬ କି.ମି. ଦୂରରେ ଏହା ଅବସ୍ଥିତ । ଏହି ସ୍ଥାନର ପ୍ରାୟ ୫ କି.ମି. ଆୟତନରେ କୌଣସି ଜନବସତି ନାହିଁ କିମ୍ବା ଅତୀତରେ କେବେ ଏଠାରେ ଜନବସତି ଗଢି ଉଠିଥିବା କଥା କୌଣସି ସରକାରୀ ଅଭିଲେଖରୁ ଜଣାଯାଏ ନାହିଁ । ଏହି ସ୍ଥାନର ନିକଟବର୍ତ୍ତୀ ଉଲ୍ଲେଖଯୋଗ୍ୟ ଗ୍ରାମ ହେଉଛି ବେଲାମଗୁଡା । ଏହା ହନୁମନ୍ତପୁର ଗ୍ରାମପଞ୍ଚାୟତ ଅନ୍ତର୍ଗତ ଏକ କ୍ଷୁଦ୍ର ପଲ୍ଲୀ ଏବଂ ଏଠାରେ ଗୋଟିଏ ପ୍ରାଥମିକ ବିଦ୍ୟାଳୟ ଓ ରାଜସ୍ୱ ବିଭାଗର

ଏକ ଛୋଟ ଡାକବଙ୍ଗଳା ଅବସ୍ଥିତ । ବେଲାମଗୁଡାଠାରୁ ମୀନାଝୋଲାର ଦୂରତା ଚଲା ରାସ୍ତାରେ ପ୍ରାୟ ୫ କି.ମି. ଏବଂ ସଡକ ପଥରେ ୮ କି.ମି ମାତ୍ର । ମୀନାଝୋଲାଠାରୁ ପ୍ରାୟ ୧୦ କି.ମି. ଉତ୍ତରକୁ ହନୁମନ୍ତପୁର । ସେଠାକୁ ଆହୁରି ପ୍ରାୟ ୩୦ କି.ମି. ଦୂରରୁ କଳାହାଣ୍ଡି ଜିଲ୍ଲାର ବାଂଶବଣରୁ ଗୋଟିଏ କ୍ଷୁଦ୍ର ଝରଣା ପ୍ରବାହିତ ହୋଇ ଆସିଛି । ହନୁମନ୍ତପୁରଠାରେ ତାହା ହନୁମନ୍ତପୁର ନାଳ ନାମରେ ପରିଚିତ । ମୀନାଝୋଲାର ପ୍ରାୟ ଅଧ କିଲୋମିଟର ଉପରକୁ ଅଳ୍ପ ବ୍ୟବଧାନରେ ଏହି ହନୁମନ୍ତପୁର ନାଳ ସହିତ କଳାହାଣ୍ଡିର ପାର୍ବତ୍ୟ ଅଞ୍ଚଳ ଓ ଫୁଲବାଣୀ ଜିଲ୍ଲାର କଳିଙ୍ଗାଘାଟୀରୁ ପ୍ରବାହିତ ହୋଇ ଆସିଥିବା ଅନ୍ୟ ଦୁଇଟି କ୍ଷୁଦ୍ର ନଦୀ ଚାଉଳଧୁଆ ଓ ଫଳଫଳିଆର ସଙ୍ଗମ ଘଟିଛି । ଏହି ତିନୋଟି କ୍ଷୁଦ୍ର ସ୍ରୋତର ସମ୍ମିଶ୍ରଣରେ ବଂଶଧାରାର ଉତ୍ପତ୍ତି । ତ୍ରିଧାରା ସମ୍ମିଶ୍ରିତ ପୂର୍ଣ୍ଣାଙ୍ଗିନୀ ବଂଶଧାରା ଏଠାରୁ କ୍ଷିପ୍ର ଗତିରେ ପ୍ରାୟ ଅଧ କିଲୋମିଟର ପ୍ରବାହିତ ହୋଇ ଆସିବା ପରେ ଏହି ମୀନାଝୋଲାଠାରେ ସମୂଚ୍ଚ କୃତ୍ରିମ ପ୍ରାଚୀର ତୁଲ୍ୟ ଦଣ୍ଡାୟମାନ ପ୍ରାକୃତିକ ପ୍ରସ୍ତରଶ୍ରେଣୀର ପ୍ରତିବନ୍ଧ ଫଳରେ ଏକ ରମଣୀୟ ଜଳପ୍ରପାତ ସୃଷ୍ଟି କରିଛି ଏବଂ ଏହିଠାରୁ ତୀକ୍ଷ୍ଣ ଭାବରେ ପ୍ରାୟ ପଚାଶ ଫୁଟ ନିମ୍ନଗାମୀ ହୋଇ ବୋହିଯାଇଛି ସ୍ୱଭାବସୁଲଭ କଳସଙ୍ଗୀତର ତାଳେ ତାଳେ ସୁଦୃଶ୍ୟ ପାର୍ବତ୍ୟ ଉପତ୍ୟକାକୁ ମୁଖରିତ କରି । ମୀନାଝୋଲାର ପ୍ରାଚୀର ତୁଲ୍ୟ ପ୍ରସ୍ତର ଶ୍ରେଣୀ ବଂଶଧାରାର ଖର ପ୍ରବାହକୁ ପ୍ରତିହତ କରି ଯେଉଁଠି ଗୋଟିଏ ମନୋରମ ଜଳପ୍ରପାତ ସୃଷ୍ଟି କରିଛି, ସେଠାରେ ସେହି ପ୍ରସ୍ତର ପ୍ରାଚୀରର ଉହାଡରେ ହିଁ ସ୍ତ୍ରୀ-ଜନନେନ୍ଦ୍ରିୟ ଆକୃତ ବିଶିଷ୍ଟ ଏକ କ୍ଷୁଦ୍ର ପ୍ରସ୍ତରଗହ୍ୱର ଭିତରେ ଶିବଲିଙ୍ଗର ଆବିର୍ଭାବ ଘଟିଛି । ଏହି ଗହ୍ୱରଟିର ଆକୃତି ଗୋଲାକାର, ବକ୍ରାକାର ବା ବର୍ଗାକାର ନୁହେଁ ଏହା ବର୍ତ୍ତୁଳ ଭାବରେ ତ୍ରିକୋଣାକାର । ଏହାର ଲମ୍ବା ପ୍ରାୟ ଅଢେଇ ଫୁଟ, ଚଉଡା ଦେଢ ଫୁଟ ଏବଂ ଗଭୀରତା ପ୍ରାୟ ତିନି ଫୁଟ । ପୁଣି ଏହାର ମଧ୍ୟଭାଗରେ ସମାନ୍ତରାଳ ଭାବରେ ସମ ଆୟତନ ବିଶିଷ୍ଟ ଦୁଇଟି ପତଳା ପ୍ରସ୍ତର ଫଳକ ବିଦ୍ୟମାନ । ପ୍ରତ୍ୟେକ ଫଳକର ଉଚ୍ଚତା ପ୍ରାୟ ଦୁଇ ଫୁଟ, ଚଉଡା ପ୍ରାୟ ଏକ ଫୁଟ, ମୋଟା ପ୍ରାୟ ତିନି ଇଞ୍ଚ ଏବଂ ଅନ୍ତର୍ବର୍ତ୍ତୀ ବ୍ୟବଧାନ ପ୍ରାୟ ଦଶ ଇଞ୍ଚ । ଏହି ଦୁଇ ଫଳକର ମଧ୍ୟଭାଗରେ ତଳୁ ଗୋଟିଏ କ୍ଷୁଦ୍ରାକାର ଶିବଲିଙ୍ଗର ଉତ୍ପତ୍ତି ଘଟିଛି । ସ୍ଥୂଳତଃ ପ୍ରକାଶ କଲେ ଏହି ଗହ୍ୱରଟି ସ୍ତ୍ରୀ-ଜନନେନ୍ଦ୍ରିୟର ଶରୀରତତ୍ତ୍ୱିକ ଗଠନ ବିନ୍ୟାସର ଏକ ନିଚ୍ଛକ ପ୍ରସ୍ତର ପ୍ରତିକୃତି । ଏହା ଦେବୀଶକ୍ତିର ପ୍ରତୀକରୂପେ ପରିଗୃହୀତ ହୋଇଛି । ଏହା ମଧ୍ୟରେ ପୁଣି ଶିବଲିଙ୍ଗର ଆବିର୍ଭାବ ଘଟିଥିବାରୁ ଏଠାରେ ଶିବ ଓ ଶକ୍ତିଙ୍କର ଅପୂର୍ବ ସମନ୍ୱୟ ସମାହିତ ହୋଇଛି ଏବଂ ସ୍ତ୍ରୀ-ଶକ୍ତି ଓ ପୁରୁଷ ଶକ୍ତିର ସଂଯୋଗରେ ସୃଷ୍ଟି ସଞ୍ଚାରର ଆଦର୍ଶ ପ୍ରଖ୍ୟାପନ କରୁଛି । ଏହା ଭୌଗଳିକ ପ୍ରକ୍ରିୟା ବା ଆଧିଦୈବିକ ପ୍ରସାଦ, ଯେକୌଣସି କାରଣରୁ ସମ୍ଭବ ହେଉ ନା କାହିଁକି, ଏଥିରେ ଆଧ୍ୟାତ୍ମିକ ସୃଷ୍ଟିତତ୍ତ୍ୱର ଯେଉଁ ବିଶ୍ଳେଷଣ ତାହା ଅନନ୍ୟ ସାଧାରଣ ଏବଂ ଅନ୍ୟତ୍ର ବିରଳ ବୋଲି କୁହାଯାଇପାରେ । ମୀନାଝୋଲାର ଏହି ଉତ୍କର୍ଷ ଶହ ଶହ ବର୍ଷଧରି ଭକ୍ତ ସମାଜକୁ ଆକୃଷ୍ଟ କରି ଆସିଛି ଏବଂ ପ୍ରତି ବର୍ଷ ଶିବରାତ୍ରି ଉପଲକ୍ଷେ ଏଠାରେ ଭକ୍ତଜନଙ୍କର ସମାଗମ ଅବ୍ୟାହତ ରହିଛି । ଅନେକଙ୍କ ମନରେ ଏହି ଧାରଣା ଦୃଢୀଭୂତ ହୋଇଛି ଯେ ଶିବରାତ୍ରିର ପ୍ରତ୍ୟୁଷରୁ ଏହି ଜଳପ୍ରପାତରେ ସ୍ନାନ କରି ପ୍ରସ୍ତରଗହ୍ୱର ଭିତରେ ଫୁଟି ଉଠିଥିବା ଶିବଙ୍କର ଦର୍ଶନ ଓ ଆରାଧନା କଲେ ଅଶେଷ ଅପୂର୍ଣ୍ଣ ମନୋବାଞ୍ଛା ପୂରଣ ହୁଏ ଏବଂ ବିଶେଷତଃ ବନ୍ଧ୍ୟା ନାରୀମାନଙ୍କର ଗର୍ଭସଞ୍ଚାର ହୁଏ । ଯେଉଁ ବନ୍ଧ୍ୟା ନାରୀଗଣ ପୁତ୍ରବତୀ ହେବାର ବାସନା ନେଇ ଏଠାକୁ ଆସିଥାଆନ୍ତି ସେମାନେ ଏଠାରେ ତାଙ୍କର ଅନାଗତ ସନ୍ତାନସନ୍ତତିଙ୍କର କେଶମୁଣ୍ଡନ କରିବା ଲାଗି କାମନା ପୋଷଣ କରିଯାଆନ୍ତି ଏବଂ ଅପତ୍ୟ ଲାଭ କଲାପରେ ସେଥିପାଇଁ ପୁଣିଥରେ ସେଠାକୁ ଆସିଥାଆନ୍ତି । ଏଥିପାଇଁ ଏଠାରେ ଶିବରାତ୍ରି ଦିନ ବହୁସଂଖ୍ୟକ ଶିଶୁଙ୍କର କେଶ ମୁଣ୍ଡନ ଦୃଶ୍ୟ ଦେଖିବାକୁ ମିଳେ । ବାଂଶବଣରୁ ଝରି ଆସିଥିବା କ୍ଷୁଦ୍ର ନିର୍ଝର ଅନ୍ୟ ଦୁଇଟି ଜଳସ୍ରୋତ ସହିତ ମିଶି ବଂଶଧାରା ନାମ ଗ୍ରହଣ କରିଥିଲେ ସୁଦ୍ଧା ମୀନାଝୋଲା ମହାଦେବଙ୍କର ଦର୍ଶନାଭିଳାଷୀ ଅଧିକାଂଶ ଭକ୍ତଙ୍କର ବଂଶବୃଦ୍ଧିଜନିତ ମନୋବାଞ୍ଛା ଫଳବତୀ ହେଉଥିବା ଯୋଗୁଁ ବଂଶଧାରା ନାମର ସାର୍ଥକତା ବିଶେଷଭାବେ ପ୍ରତିପାଦିତ ହୁଏ । ପୁରୀର ଚନ୍ଦ୍ରଭାଗା ଉପକୂଳରେ ସେଠାକୁ ସଡକ ସଂଯୋଗ ହେବା ପୂର୍ବରୁ ମାଘ ଶୁକ୍ଳ ସପ୍ତମୀର ପୂର୍ବରାତ୍ରିରେ ଯେଭଳି ପଦଚାରୀ ତୀର୍ଥଯାତ୍ରୀଙ୍କର ସମାଗମ ଘଟୁଥିଲା, ସେହିଭଳି ଏଠାରେ ମଧ୍ୟ ଶିବରାତ୍ରିର

ପୂର୍ବ ରାତ୍ରିରେ ଗୁଡାରି ଓ ଚନ୍ଦ୍ରପୁରଠାରୁ ଶଗଡ, ସାଇକେଲ ଓ ପଦଯାତ୍ରା କରି ଆସିଥିବା ଶହ ଶହ ଯାତ୍ରୀଙ୍କର ଭିଡ ଜମେ । ଏହି ଜନବସତିବିହୀନ ଘଞ୍ଚ ଅରଣ୍ୟ ପରିବେଷ୍ଟିତ ପାର୍ବତ୍ୟ ଉପତ୍ୟକା ଅନ୍ତର୍ବର୍ତ୍ତୀ ବଂଶଧାରାର ସୈକତୋପକୂଳ ଓ ମୀନାଝୋଲାର ପ୍ରସ୍ତର ଶଯ୍ୟା ଉପରେ ପର୍ଣ୍ଣକୁଟୀରମାନ ନିର୍ମାଣ କରି ସେମାନେ ଗୋଷ୍ଠୀବଦ୍ଧ ହୋଇ ରାତ୍ରି ଯାପନ କରିଥାଆନ୍ତି । ମୀନାଝୋଲାର ଏହି ଜଳପ୍ରପାତ ନିକଟରେ ପ୍ରଚୁର ମାଛ ମିଳେ ଏବଂ ଶିବରାତ୍ରି ଉପବାସ ପାଳନ କରୁଥିବା ଅଧିକାଂଶ ଆଗନ୍ତୁକ ପୂର୍ବଦିନ ରାତ୍ରିରେ ଏଠାରେ ମତ୍ସ୍ୟାହାର କରନ୍ତି । ଏଠାକାର ଏହି ମତ୍ସ୍ୟସେବନ ବି ଊଣା ଅଧିକେ ଏକ ସାମାଜିକ ପ୍ରଥାରେ ପରିଣତ ହୋଇଯାଇଛି । ବୋଧହୁଏ ଆମିଷସେବୀ ଦେବୀ ଓ ନିରାମିଷାଶୀ ମହାଦେବ ଉଭୟଙ୍କୁ ଯଥୋଚିତ ଭକ୍ତି ପ୍ରଦର୍ଶନର ନିଦର୍ଶନ ସ୍ୱରୂପ ଏହି ପ୍ରଥାର ପ୍ରଚଳନ ଅଛି । ସ୍ଥାନୀୟ ଜଳପ୍ରପାତ ନିକଟରେ ବହୁ ସଂଖ୍ୟକ ମାଛ ଝୋଲା ମାରୁଥିବା ଯୋଗୁଁ ହିଁ ବୋଧହୁଏ ଏହି ସ୍ଥାନଟିର ନାମ ମୀନାଝୋଲା ରଖାଯାଇଛି ।

ଏଠାକାର ମହାଶିବରାତ୍ରି ଯାତ୍ରାର ପରମ୍ପରା ଅନୁଧ୍ୟାନ କଲେ ଜଣାଯାଏ ଯେ, ଏହା ପୂର୍ବେ ଜୟପୁର ମହାରାଜାଙ୍କ କର୍ତ୍ତୃତ୍ୱରେ ସମାହିତ ହେଉଥିଲା ଏବଂ ସେତେବେଳେ ଶିବରାତ୍ରିର କିଛିଦିନ ପୂର୍ବରୁ ମୀନାଝୋଲା ନିକଟବର୍ତ୍ତୀ ତୀକ୍ଷ୍ଣ ଗଡାଣିଆ ପାହାଡ ଓ ଶିବଲିଙ୍ଗ ବିରାଜମାନ କରିଥିବା ଗହ୍ୱର ସମୀପସ୍ଥ ପ୍ରସ୍ତରଶ୍ରେଣୀ ନିକଟରେ ଯାତ୍ରୀମାନଙ୍କର ଯାତାୟାତ ସୁବିଧା ନିମନ୍ତେ ଅସ୍ଥାୟୀ ସିଡି ସବୁ ନିର୍ମାଣ କରାଯାଉଥିଲା । ସେତେବେଳେ ଭକ୍ତଗଣ ଦେବତାଙ୍କ ଉଦ୍ଦେଶ୍ୟରେ ଅର୍ପଣ କରୁଥିବା ନଡିଆ, କଦଳୀ, ମିଠେଇ ପ୍ରଭୃତି ଭୋଗ ଏବଂ ମାନସିକ କରିଥିବା ଲୋକେ ଏଠାରେ ଆଣି ଛାଡି ଦେଉଥିବା ଗାଈ, ଗୋରୁ , ଛେଳି, ଘୁଷୁରି, ପାରା, ଶୁଆ, ସାରୀ ପ୍ରଭୃତି ପଶୁପକ୍ଷୀଙ୍କ ସମେତ ପ୍ରାପ୍ୟ ଦକ୍ଷିଣା ରାଜକୋଷକୁ ଯାଉଥିଲା । ଏହି ସମୟରେ ଯାତ୍ରାସ୍ଥଳରେ ସମବେତ ଏହି ଅଞ୍ଚଳର ଅଧିବାସୀଙ୍କଠାରୁ ରାଜସ୍ୱ ବାବଦ ଦେୟ ରାଜକର୍ମଚାରୀମାନେ ଏକକାଳୀନ ସୁବିଧାରେ ଆଦାୟ କରି ନେଉଥିଲେ ।

ରାଜତାନ୍ତ୍ରିକ ଶାସନର ଅବସାନ ପରେ ମଧ୍ୟ ଏହି ପରମ୍ପରା ଊଣା ଅଧିକେ ରହିଥିଲା । ସଂପ୍ରତି ସରକାରଙ୍କର ଦେବୋତ୍ତର ପରିଚାଳନା ସଂସ୍ଥା ପକ୍ଷରୁ ରାଜସ୍ୱ ବିଭାଗୀୟ ଅଞ୍ଚଳ ଅଧିକାରୀଙ୍କର ତତ୍ତ୍ୱାବଧାନରେ ଏହି ଉତ୍ସବ ସମାହିତ ହେଉଛି । ତେବେ ବଣମଲ୍ଲୀ ବଣ ଭିତରେ ଫୁଟି ମଉଳି ଗଲା ପରି ଏହି ସ୍ଥାନଟିର ପ୍ରାକୃତିକ ବିଭବ ଓ ଆଧ୍ୟାତ୍ମିକ ସୌରଭ ଏ ପର୍ଯ୍ୟନ୍ତ ସଭ୍ୟ ଜଗତର ଯଥୋପଯୁକ୍ତ ଦୃଷ୍ଟି ଆକର୍ଷଣ କରିପାରି ନଥିବା ଅତ୍ୟନ୍ତ ପରିତାପର ବିଷୟ । ଏହାର ଅତୁଳନୀୟ ଶୋକପାସୋରା ଅପୂର୍ବ ଶୋଭାସମ୍ଭାରକୁ ଉପଭୋଗ କରିବା ପାଇଁ ଅଦ୍ୟାବଧି ଏଠାରେ ବିଦଗ୍ଧ ଦର୍ଶକମଣ୍ଡଳୀର ଅଭାବ ପରିଲକ୍ଷିତ ହୁଏ । ଏହାର ପ୍ରଧାନ କାରଣ ହେଉଛି ଏଠାକୁ ଯାତାୟାତର ସୁବିଧା ନାହିଁ । ଏହି ସ୍ଥାନଟି ଗୁଡାରି ଓ ଚନ୍ଦ୍ରପୁର ଉଭୟ ଦିଗରୁ ଅନୁନ୍ନତ ସଡକଦ୍ୱାରା ସଂଯୋଜିତ ହୋଇଥିଲେ ସୁଦ୍ଧା ଏପର୍ଯ୍ୟନ୍ତ ଏଠାକୁ କ୍ଷିପ୍ରଗାମୀ କୌଣସି ଯାନବାହନ ଯୋଗେ ଯୋଗାଯୋଗ ବ୍ୟବସ୍ଥା ସମ୍ଭବ ହୋଇପାରି ନାହିଁ । ବିଭିନ୍ନ ଅଭାବ ଅସୁବିଧା ପାଇଁ ମୀନାଝୋଲାର ଦର୍ଶକ ସଂଖ୍ୟା ଆଜି ସୀମିତ ହୋଇ ରହିଯାଇଛି ଆଞ୍ଚଳିକ ପରିସୀମାର ଆୟତନ ଭିତରେ । ସୁତରାଂ ଏହି ସ୍ଥାନକୁ ସଂଯୋଗ କରୁଥିବା ସଡକ ପଥର ଉନ୍ନତି ସାଧନପୂର୍ବକ ଏଠାକୁ ଯାନବାହନ ଗମନାଗମନର ସୁବ୍ୟବସ୍ଥା କରାଗଲେ ଏବଂ ଆରୋହଣ ଅବରୋହଣ କରିବାକୁ ପଡୁଥିବା ସୁତୀକ୍ଷ୍ଣ ଢିପ ଖାଲ ସ୍ଥାନଗୁଡିକୁ କ୍ରମାବନତ କରାଇ ଯାତ୍ରୀମାନଙ୍କର ଗନ୍ତବ୍ୟ ପଥକୁ ଅଧିକ ସୁଗମ କରାଯାଇପାରିଲେ ଓଡିଶାର ଏକ ଅଦ୍ୱିତୀୟ ଦର୍ଶନୀୟ ତୀର୍ଥସ୍ଥାନ ରୂପେ ଯେ ମୀନାଝୋଲାର ମହତ୍ତ୍ୱ ରାଜ୍ୟସାରା ପ୍ରକଟିତ ହୁଅନ୍ତା, ଏଥିରେ ସନ୍ଦେହର ଅବକାଶ ନାହିଁ ।

ବରିଷ୍ଠ ସାମ୍ବାଦିକ
ସାମ୍ବାଦିକ କଲୋନୀ, ତୁଳସୀପୁର, କଟକ–୮

# ତାମ୍ରଲିପ୍ତ - ଶ୍ରୀଚୈତନ୍ୟ ଦେବ

**ଜାନକୀ ବଲ୍ଲଭ ପଟ୍ଟନାୟକ**

ଶାସ୍ତ୍ରରେ ଅଛି, ଶ୍ରୀ କପିଳେନ୍ଦ୍ର ଦେବ ଓ ତାଙ୍କ କୁମାର ବୀରହମ୍ମୀରଙ୍କ ସମୟରେ ଓଡିଶାର ଦକ୍ଷିଣ ସୀମା କାବେରୀ ନଦୀ ପର୍ଯ୍ୟନ୍ତ ବିସ୍ତାରିତ ହୋଇଥିଲା । ଗଙ୍ଗାଠାରୁ ଗୋଦାବରୀ ଯାଏଁ ଦିନେ ଯେଉଁ ଉତ୍କଳ ବିସ୍ତୃତ ଥିଲା, ତା'ର ବର୍ତ୍ତମାନ ପରିସର କଥା ଚିନ୍ତା କଲେ ମନରେ ବିଷାଦ ଆସେ । ଏପରିକି ପ୍ରେମାବତାରୀ ଶ୍ରୀଚୈତନ୍ୟ ଦେବ ଓଡିଶା ଆସିଲାବେଳକୁ ଶ୍ରୀ ଗୋପୀନାଥ ପଟ୍ଟନାୟକ ମେଦିନୀପୁର ଅଞ୍ଚଳ ଓ ତାଙ୍କ ଭାଇ ରାୟ ରାମାନନ୍ଦ ପଟ୍ଟନାୟକ ଗୋଦାବରୀ ଅଞ୍ଚଳର ଶାସକ ଭାବେ ଗଜପତି ପ୍ରତାପରୁଦ୍ର ଦେବଙ୍କ ଦ୍ୱାରା ନିଯୁକ୍ତ ଥିଲେ । ସବୁଥିରେ ଉତ୍କୃଷ୍ଟ ଥିବାରୁ ଏହାର ନାମ ଉତ୍କଳ । ଉତ୍କଳ, କଳିଙ୍ଗ, ଉଡ୍ର ଗୋଟିଏ ଦେଶର ଭିନ୍ନ ଭିନ୍ନ ଅଞ୍ଚଳ ଏବଂ ଭାଷା ପ୍ରାୟତଃ ଏକ ଥିଲା । କଳିଙ୍ଗ ସୈନ୍ୟମାନେ ମହାଭାରତ ଯୁଦ୍ଧରେ ଭାଗ ନେଇଥିଲେ । ଏଣୁ କଳିଙ୍ଗା ସାହସିକାଃ ବୋଲି ଲେଖାଯାଇଛି । ଦେବ ଦେବ ଶ୍ରୀକୃଷ୍ଣ ଜଗନ୍ନାଥ ହିଁ ଏ ଦେଶର ଆରାଧ୍ୟଦେବ, ସ୍ୱୟଂ ମହାଲକ୍ଷ୍ମୀ ଯାହାଙ୍କର ଶକ୍ତି । ଏଣୁ ଏ ଦେଶରେ ଅଭାବ କିଛି ନଥିଲା । ଲକ୍ଷ୍ମୀ ବରଦାୟକ ଥିଲେ, ଧନଧାନ୍ୟରେ ଭରା ଥିଲା ଉତ୍କଳ । ଏ ଦେଶର ଲୋକମାନେ (ସାଧବପୁଅ) ଦୁସ୍ତର ସମୁଦ୍ର ଲଙ୍ଘନ କରି ନୌକାରେ ଦେଶ ବିଦେଶକୁ ଯାଇ ବାଣିଜ୍ୟେ ବସତି ଲକ୍ଷ୍ମୀ ବାକ୍ୟକୁ ସାର୍ଥକ କରିଥିଲେ । କେବଳ ମାତ୍ର



ବାଣିଜ୍ୟ ନୁହେଁ ଉତ୍କଳୀୟ ଶ୍ରୀଜଗନ୍ନାଥ ସଂସ୍କୃତିକୁ ମଧ୍ୟ ସେହି ସେହି ଦେଶରେ ପ୍ରଚାର ପ୍ରସାର କରିଥିଲେ । ନଦୀ ଓ ସାତସମୁଦ୍ର ପାର ହୋଇ ସେମାନେ ବ୍ରହ୍ମ ଦେଶ, ସିଂହଳ, ବାଲି, ସୁମାତ୍ରା, ଜାଭା, ବୋର୍ଣ୍ଣିଓ, ଶ୍ୟାମଦେଶ (ଥାଇଲାଣ୍ଡ), ଚଂପା (ଭିଏତ୍‌ନାମ) ଗ୍ରୀସ୍, ରୋମ୍, ମିଶର, ପାରସ୍ୟାଦି ଦେଶରେ ବାଣିଜ୍ୟ କରି ଉତ୍କଳକୁ ଧନଧାନ୍ୟାଦିରେ ପୂର୍ଣ୍ଣକରି ବିକାଶ ଓ ସମୃଦ୍ଧିର ସହାୟକ ହୋଇଥିଲେ । କାର୍ତ୍ତିକ ପୂର୍ଣ୍ଣିମାରେ ଡଙ୍ଗା ଭସାଣ, ବୋଇତ ବନ୍ଦାଣ ଆଦି ତା'ର ସାକ୍ଷ୍ୟ ବହନ କରେ । କଟକରେ ବାଲିଯାତ୍ରା କିନ୍ତୁ ଅଲଗା । ସାଧବ ପୁଅମାନେ ବାଲି, ଜାଭା, ସୁମାତ୍ରାଦି ଦ୍ୱୀପରେ ବାଣିଜ୍ୟ କରିଥିଲେ, ତେବେ କେବଳ ବାଲିଦ୍ୱୀପ ନାମରେ ବାଲିଯାତ୍ରା ନାମ କାହିଁକି ଦିଆଗଲା, ଜାଭା ଯାତ୍ରା, ସୁମାତ୍ରା ଯାତ୍ରା ନାମ କାହିଁକି ହେଲାନି ? କଟକରୁ ଶ୍ରୀଚୈତନ୍ୟ କାର୍ତ୍ତିକ ପୂର୍ଣ୍ଣମୀ ଦିନ ଉତ୍କଳ ଛାଡି ବୃନ୍ଦାବନ ଯାଇଥିଲେ । ତାଙ୍କ ବିରହ ସ୍ମୃତି ଉଦ୍ଦେଶ୍ୟରେ ଅନୁଷ୍ଠିତ ବାଲିଯାତ୍ରା ଏବଂ ଏଥିରେ ୭୨ ଦଳ ସଂକୀର୍ତ୍ତନ ଗୋଷ୍ଠୀ ସଂକୀର୍ତ୍ତନ କରିଥିଲେ । ଏବେ ମଧ୍ୟ ସଂକୀର୍ତ୍ତନ ହେଉଛି ଏବଂ କଟକରେ ଏବେ ମଧ୍ୟ ୭୨ ଭାଗ (ଦିଗ) କୀର୍ତ୍ତନ ମଣ୍ଡଳୀ ଅଛନ୍ତି । କଟକର ବହୁସ୍ଥାନ ଓ ବିଶେଷ କରି ଗୌରଗଡା ଘାଟ ଶ୍ରୀଚୈତନ୍ୟ ଦେବଙ୍କ ସ୍ମୃତି ଉଜ୍ଜୀବିତ କରେ । ଗୌରଗଡା ଘାଟରେ ଶ୍ରୀଚୈତନ୍ୟ ପାଦପଦ୍ମ

ଏବଂ ମହମଦିଆ ବଜାର ଶ୍ରୀଚୈତନ୍ୟ ମଠରେ ପଞ୍ଚତତ୍ତ୍ୱାତ୍ମକ ଗୌରହରି ବିଗ୍ରହ ଅଛନ୍ତି । ଶ୍ରୀଚୈତନ୍ୟ ଭୁବନେଶ୍ୱରରୁ କଟକ ଆସିବାବେଳେ କାଠଯୋଡି ପାର ହୋଇ ନୌକାରୁ ଅବତରଣ କରିଥିବାରୁ ସେ ଘାଟର ନାମ ଚୈତନ୍ୟଘାଟ । କଟକରେ କଟକେଶ୍ୱର ମହାଦେବ ଅଛନ୍ତି । ମହମଦିଆ ବଜାର ଚୈତନ୍ୟ ମଠରୁ ଶ୍ରୀଚୈତନ୍ୟଙ୍କୁ ଅଭ୍ୟର୍ଥନା ଦେବା ପାଇଁ ସଂକୀର୍ତ୍ତନ ଦଳ ସେହିଦିନଠୁ ଏବେ ମଧ୍ୟ ପ୍ରତିବର୍ଷ ଚୈତନ୍ୟଘାଟକୁ ଯାଉଛନ୍ତି ।

ଗଜପତି ପ୍ରତାପରୁଦ୍ର ଶ୍ରୀଗୌର ବିରହରେ କହିଥିଲେ ଯେ ଏହି ଗୌରଗଡା ଭୂମିରେ ଏକ ସ୍ତମ୍ଭ ନିର୍ମାଣ କର, ମୁଁ ପ୍ରତ୍ୟହ ସେଇଠି ସ୍ନାନ କରିବି ଏବଂ ସେଇଠାରେ ହିଁ ମରିବି । ଶ୍ରୀଚୈତନ୍ୟ ଦେବ ମହାନଦୀ ପାର ହୋଇ ବୃନ୍ଦାବନ ଯିବା ପାଇଁ ଦିବ୍ୟନୌକା ନିର୍ମିତ ହୋଇଥିଲା । ଶ୍ରୀଚୈତନ୍ୟ ଚରିତାମୃତରେ ରାଜା ପ୍ରତାପରୁଦ୍ରଦେବଙ୍କ ବାକ୍ୟ ଏହିପରି ଉଲ୍ଲେଖ ହୋଇଛି ।

ଏକ ନବ୍ୟନୌକା ଆଣି ରଖ ନଦୀତୀରେ
ସେଠି ସ୍ନାନକରି ପ୍ରଭୁ ଯିବେ ନଦୀ ପାରେ ॥
ସେଠି ସ୍ତମ୍ଭ ରୋପଣ କର ମହାତୀର୍ଥ କରି
ନିତ୍ୟସ୍ନାନ କରିବି ସେଠି, ସେଠି ଯେହ୍ନେ ମରି ॥

ଯାହା ହେଉ ସେତେବେଳର ଓଡିଆ ସାଧବ ପୁଅମାନେ ଯେ ନୌକା ଯୋଗେ ସମୁଦ୍ର ପାର ହୋଇ ଦେଶ ବିଦେଶରେ ନୌବାଣିଜ୍ୟ କରି ଓଡିଶାକୁ ସମୃଦ୍ଧ କରିଥିଲେ ଏଥିରେ ଦ୍ୱିମତ ନାହିଁ । ରାମାୟଣ, ମହାଭାରତ ଓ ଅନ୍ୟ କେତେକ ପୁରାଣରେ ନୌବାଣିଜ୍ୟର ବର୍ଣ୍ଣନା ମଧ୍ୟ ମିଳେ । ଏହି ଗ୍ରନ୍ଥମାନଙ୍କରେ କଳିଙ୍ଗ, ଉଡ୍ର, କୋଶଳ, କଙ୍ଗୋଦ ରାଜ୍ୟର ମଧ୍ୟ ନାମୋଲ୍ଲେଖ ଅଛି । ପୂର୍ବେ ଓଡିଶା ଥିଲା ସ୍ୱୟଂ ସଂପୂର୍ଣ୍ଣ ଅର୍ଥାତ୍ ଲୋକମାନଙ୍କ ଅବସ୍ଥା ଥିଲା ସ୍ୱଚ୍ଛଳ । ଅନ୍ୟାନ୍ୟ ଅନେକ ବସ୍ତୁ ସାଙ୍ଗରେ ନେଇ ସେମାନେ ବିଦେଶକୁ ଯାଇ ସେଠିକାର ବିଭିନ୍ନ ସାମଗ୍ରୀ ମଧ୍ୟ ଆମ ଦେଶକୁ ଆଣୁଥିଲେ । ବ୍ୟବସାୟ ମଧ୍ୟରେ ଅନେକ ଦ୍ରବ୍ୟ ଥିଲେ ମଧ୍ୟ ଲୁଣ, ପଥର ଶିଳ୍ପ ଓ ବସ୍ତ୍ର ଶିଳ୍ପ ଥିଲା ମୁଖ୍ୟ । ଏବେ ମଧ୍ୟ ସେହି ସେହି ଦେଶରେ ଉତ୍କଳୀୟ ଆଚାର ବ୍ୟବହାର ତଥା ଶ୍ରୀଜଗନ୍ନାଥ ସଂସ୍କୃତିର ନିଦର୍ଶନ ମିଳେ । ଖ୍ରୀଷ୍ଟଜନ୍ମର ୧୦୦୦ ବର୍ଷ ପୂର୍ବରୁ ଆମ ଲୋକମାନେ ସମୁଦ୍ର ପଥରେ ନୌବାଣିଜ୍ୟ ନିମନ୍ତେ ଯାତ୍ରା କରୁଥିବା କଥା ଇତିହାସ ସମର୍ଥିତ । ଏହି ଜଳଯାତ୍ରା ସାଧାରଣତଃ ବନ୍ଦରମାନଙ୍କରୁ ହେଉଥିଲା ଏବଂ ପ୍ରାଚୀନ ଉତ୍କଳରେ ବହୁ ବନ୍ଦର ଥିଲା । ସେଗୁଡିକ ହେଲା- ତାମ୍ରଲିପ୍ତ, ନାଗାପଟ୍ଟନମ୍, ପାଲୁର, କୋଣାର୍କ, ଦନ୍ତପୁର, ପିଥୁଣ୍ଡା, ନୁର୍ବିନ, ଗମ୍ଭୀରା, କଳିଙ୍ଗ ପଟନମ୍, କୁଞ୍ଜ ଇତ୍ୟାଦି ପାଲୁର କଳିଙ୍ଗର ଏକ ଶ୍ରେଷ୍ଠ ଏବଂ ଚେଳିତାଲୋ ଏକ ଅନ୍ତର୍ଜାତୀୟ ବନ୍ଦରଭାବେ ପ୍ରସିଦ୍ଧି ଲାଭ କରିଥିଲା । ସେ କାଳର ଓଡିଆ ବହୁ କଷ୍ଟ ସ୍ୱୀକାର ପୂର୍ବକ ସମୁଦ୍ରରେ ନୌଯାତ୍ରା କରି ଏ ଦେଶକୁ ସମୃଦ୍ଧ କରିଥିଲା ।

ଓଡିଶାର ନୌବାଣିଜ୍ୟ ସ୍ଥଳୀ (ବନ୍ଦର)ଗୁଡିକ ମଧ୍ୟରେ ତାମ୍ରଲିପ୍ତ ଥିଲା ଏକ ପ୍ରଧାନ ବନ୍ଦର । ତାମ୍ରଲିପ୍ତ ବର୍ତ୍ତମାନ ପଶ୍ଚିମବଂଗ ଅନ୍ତର୍ଭୁକ୍ତ ଓ ତା'ର ନୂତନ ନାମ ହେଲା ତମଲୁକ୍ । ଏହି ତାମ୍ରଲିପ୍ତ(ତମଲୁକ୍) ବିଷୟରେ ଏଠାରେ କିଛି ଉଲ୍ଲେଖ କରିବାର ପ୍ରୟାସ କରିଛି । କୌଟିଲ୍ୟଙ୍କ ଅର୍ଥଶାସ୍ତ୍ରରେ ତାମ୍ରଲିପ୍ତ ବନ୍ଦର ନାମ ଉଲ୍ଲେଖ ଅଛି । ମେଘାସ୍ଥିନିସ୍‌ଙ୍କ ବିବରଣୀରେ କଳିଙ୍ଗର ଉପକୂଳ ୭୦୦ କିଲୋମିଟର ଗୋଦାବରୀ ପର୍ଯ୍ୟନ୍ତ ବିସ୍ତୃତ ଥିବା ଏବଂ ଓଡିଶାର ତାମ୍ରଲିପ୍ତ ଏକ ଶ୍ରେଷ୍ଠ ବନ୍ଦର ଭାବେ ପ୍ରସିଦ୍ଧି ଲାଭ କରିଥିବା କଥା ଲେଖାଅଛି, ଚୀନ୍ ପରିବ୍ରାଜକ ଆଇସିଙ୍ଗଙ୍କ ବିବରଣୀରେ ସେ ତାମ୍ରଲିପ୍ତ ଆସିଥିବା କଥା ଉଲ୍ଲେଖ କରିଛନ୍ତି । ଅନ୍ୟତମ ଚୀନ୍ ପରିବ୍ରାଜକ ଫାହିଆନ୍ ଭାରତ ଭ୍ରମଣରେ ଆସି ତାମ୍ରଲିପ୍ତ ବନ୍ଦରରେ ପହଞ୍ଚି ପୁନଃ ସେଠାରୁ ସିଂହଳ ଯାଇ, ସେଠାରୁ ନିଜ ଦେଶକୁ ପ୍ରତ୍ୟାବର୍ତ୍ତନ କରିଥିଲେ । ଓଡିଶାର ପ୍ରାଚୀନ ନୌବାଣିଜ୍ୟ ବିଷୟରେ ସିଂହଳ ଦେଶର ପୁସ୍ତକ ବାଳହସା, ଜୈନଗ୍ରନ୍ଥ ଉତ୍ତରାଧ୍ୟାୟନ, ଆର୍ଯ୍ୟମଞ୍ଜୁଶ୍ରୀ, କାଳିଦାସଙ୍କ ରଘୁବଂଶ, ଜୈନଜ୍ଞାତଧର୍ମ ପୁସ୍ତକ, ଦାଠାବଂଶ (ବୌଦ୍ଧଗ୍ରନ୍ଥ), ଶାରଳା ମହାଭାରତ, ପାରସ୍ୟ ପୁସ୍ତକ ଦୁହିଲ-ଉଲ-ଆଲାମ ଆଦି ବିଭିନ୍ନ ଇତିହାସ ଓ ଅନେକ ଶିଳାଲିପିରୁ ପ୍ରମାଣ ମିଳେ ।

ପ୍ରାଚୀନ ଓଡିଶାର ଏହି ପ୍ରମୁଖ ନୌବାଣିଜ୍ୟସ୍ଥଳୀ ତାମ୍ରଲିପ୍ତ (ବନ୍ଦର) ଦେଇ ଖ୍ରୀଷ୍ଟପୂର୍ବ ୮ମ ଶତାବ୍ଦୀରେ ଜୈନତୀର୍ଥଙ୍କର ପାର୍ଶ୍ୱନାଥ ବାଲେଶ୍ୱର ଆସିଥିଲେ ଏବଂ ବୁଦ୍ଧଦେବଙ୍କ ଶିଷ୍ୟ କଳିଙ୍ଗ ବଣିକ ତପୁସ ଓ ଭଲ୍ଲିକ ଏ ସ୍ଥାନ

ଦେଇ ରାଜଗଡ ଯିବା ତଥା ଅଶୋକଙ୍କ କନ୍ୟା ଓ ପୁତ୍ର କଳିଙ୍ଗର କେତେକ ଲୋକଙ୍କ ସହ ଏଠାରୁ ସିଂହଳ ଯାଇଥିଲେ । କଳିଯୁଗର ଯୁଗାବତାରୀ, ପ୍ରେମ ପୁରୁଷୋତ୍ତମ ଶ୍ରୀଗୌରହରି ସନ୍ନ୍ୟାସ ନେଇ ୧୫୧୦ ଖ୍ରୀ.ରେ ନୀଳାଚଳ (ପୁରୀ) ଆସିବା ବେଳେ ଏଠାରେ ମଧୁସୂଦନଙ୍କୁ ଦର୍ଶନ କରିଥିବା କଥା ମୁରାରୀ ଗୁପ୍ତଙ୍କ କଡଚା ଓ ଜୟାନଂଦ ତଥା ଲୋଚନ ଦାସଙ୍କ ଚୈତନ୍ୟ ମଙ୍ଗଳରୁ ଜଣାପଡେ । ଶ୍ରୀଚୈତନ୍ୟ ଦେବ ସନ୍ନ୍ୟାସ ଗ୍ରହଣ କରି ଉତ୍କଳାଗମନର ଏକମାତ୍ର ଲକ୍ଷ୍ୟଥିଲା ଶ୍ରୀଜଗନ୍ନାଥ ଦର୍ଶନ । ତାମ୍ରଲିପ୍ତରେ ଶ୍ରୀଚୈତନ୍ୟ ଦେବ ପ୍ରଥମେ ଭିକ୍ଷା କରିଥିଲେ । ସେଠାରେ ଶ୍ରୀ ଗୌର ପାର୍ଷଦ ବାସୁଦେବ ଘୋଷଙ୍କ ସ୍ଥାପିତ ଶ୍ରୀଗୌରାଙ୍ଗ, ଶ୍ରୀକୃଷ୍ଣ ଓ ଶ୍ରୀଜଗନ୍ନାଥ ବିଗ୍ରହ ଏବେ ମଧ୍ୟ ପୂଜା ପାଉଛନ୍ତି । ସ୍ଥାନଟି ଅତ୍ୟନ୍ତ ମନୋରମ । ପୁଣି ଯୁଧିଷ୍ଠିରଙ୍କ ଯଜ୍ଞ ଅଶ୍ୱକୁ ତାମ୍ରଲିପ୍ତ ରାଜା ତାମ୍ରଧ୍ୱଜ ବାନ୍ଧିରଖି ଥିବାରୁ ଶ୍ରୀକୃଷ୍ଣ ଓ ଅର୍ଜୁନ ସେଠାକୁ ଯାଇଥିଲେ । ସେହି ସ୍ମୃତି ଅନୁସାରେ ସେଠାରେ ଜିଷ୍ଣୁ (ଅର୍ଜୁନ), ହରି (କୃଷ୍ଣ)ଙ୍କ ପ୍ରାଚୀନ ବିଗ୍ରହ ଓ ମନ୍ଦିର ଅଛି, ଯାହା ଏବେ ଗୀତା ମନ୍ଦିର ନାମରେ ପରିଚିତ । ମଧୁସୂଦନ ମନ୍ଦିର କହିଲେ ଏବେ ଲୋକମାନେ ବୁଝୁନାହାନ୍ତି । ତମଲୁକ୍ (ତାମ୍ରଲିପ୍ତ)ର ଗୌର–କୃଷ୍ଣ–ଜଗନ୍ନାଥ ମନ୍ଦିର ଶ୍ରୀଚୈତନ୍ୟ ଭକ୍ତମାନଙ୍କର ଏକ ମହାତୀର୍ଥ ।

ଓଡିଶାର ନୌବାଣିଜ୍ୟ ବିଷୟ ସ୍ଥାପତ୍ୟରେ ଥିବା ବୋଇତ ଚିତ୍ରାଦିରୁ ମଧ୍ୟ ସିଦ୍ଧ ହୁଏ । ପୁରୀ ଶ୍ରୀମନ୍ଦିର ଭୋଗମଣ୍ଡପ କାନ୍ଥ, ଶ୍ରୀଲିଙ୍ଗରାଜ ମନ୍ଦିର ଗାତ୍ର, କୋଣାର୍କର ଜଗମୋହନରେ ଓ ଖାରବେଳଙ୍କ ହାତୀଗୁମ୍ଫାରେ ବୋଇତର ଚିତ୍ର ଅଙ୍କିତ ହୋଇଛି । ମାଣିକପାଟଣା (ଚିଲିକା ନିକଟ)ରୁ ଭୂଖନନ ବେଳେ ଚୀନ୍ ଦେଶର ଚିନା ମାଟିର ପାତ୍ର, ଚୀନ୍ ଓ ସିଂହଳର ମୁଦ୍ରା, ଥାଇଲ୍ୟାଣ୍ଡ ଓ ଇଣ୍ଡୋନେସିଆ ମାଟିର ଓ ଆରବ ଦେଶର ବିଭିନ୍ନ ଜିନିଷ ମିଳିଥିବାରୁ ସେହି ସେହି ଦେଶରୁ କଳିଙ୍ଗର ସାଧବ ପୁଅମାନେ ଆମ ଜିନିଷ ସେମାନଙ୍କୁ ଦେଇ ସେମାନଙ୍କ ଜିନିଷ ଆମ ଦେଶକୁ ଆଣିବାର ଜଣାପଡେ । କୁହାଯାଏ, ସିଂହଳରେ ପୂଜିତ ତାରାମୂର୍ତ୍ତିକୁ କେହି ବଣିକ ସେଠାରୁ ଆଣି କାକଟପୁରରେ ରଖିଲେ, ଏବେ ସେ ମଙ୍ଗଳା ଭାବେ ପୂଜା ପାଉଛନ୍ତି ।

ଓଡିଶାର ନୌବାଣିଜ୍ୟ ଇତିହାସ ଯୁଗର ଏକ ଗୌରବମୟ ଘଟଣା । ଓଡିଆମାନେ କେବଳ ବାଣିଜ୍ୟ ପାଇଁ ଯାଉ ନଥିଲେ, ଆମ ସଂସ୍କୃତି ସେଠି ପ୍ରଚାର କରି ସେଠାରେ ମଧ୍ୟ ଅନେକ ବସବାସ କରିଥିଲେ । ଏବେ ମଧ୍ୟ ସେହି ଦେଶରେ ଆମ ଭାଷା, ଧର୍ମ, ପୂଜାବିଧି, ସଭ୍ୟତା, ସଂସ୍କୃତି ଭଣା ଅଧିକେ ଦେଖାଯାଏ । ଆମ ଓଡିଆମାନେ ହିଁ ବ୍ରହ୍ମ ଦେଶକୁ ସୁବର୍ଣ୍ଣ ଭୂମି, ଜାଭାକୁ ସୁବର୍ଣ୍ଣ ଦ୍ୱୀପ, ଥାଇଲ୍ୟାଣ୍ଡକୁ ଶ୍ୟାମଦେଶ, ତାମ୍ର ପର୍ଣ୍ଣୀକୁ ସିଂହଳ ଓ ଲାଓସକୁ ଲବଦ୍ୱୀପ ନାମରେ ନାମିତ କରିଥିବା ଜଣାପଡେ । ମହାବଂଶ ବୌଦ୍ଧ ଗ୍ରନ୍ଥରେ ଅଛି, ସିଂହଳକୁ କଳିଙ୍ଗର ରାଜକୁମାର ଯାଇ ରାଜବଂଶ ସ୍ଥାପନ ପୂର୍ବକ ଧର୍ମ ଓ ସଭ୍ୟତା ମଧ୍ୟ ସ୍ଥାପନ କରିଥିଲେ । କଳିଙ୍ଗର ସିଂହ ବଂଶଧର ସିଂହଳର ପ୍ରଥମ ଭାରତୀୟ ବାସିନ୍ଦା । କଳିଙ୍ଗ ଯୁବକମାନେ ନୌଯାତ୍ରା ସମ୍ବନ୍ଧୀୟ ଶିକ୍ଷା ଗ୍ରହଣ କରିଥିବାର ସିଂହଳ ଗ୍ରନ୍ଥରେ ଉଲ୍ଲେଖ ଅଛି । ଏହି ନୌବାଣିଜ୍ୟ ଯୋଗୁଁ ପ୍ରାଚୀନ କାଳରେ ଖ୍ରୀଷ୍ଟଜନ୍ମର ସହାସ୍ରାଧିକ ବର୍ଷ ପୂର୍ବରୁ ଓଡିଶା ଗୋପଲକ୍ଷ୍ମୀରେ ପୂର୍ଣ୍ଣ ଥିଲା ଏହାର ପ୍ରତିଟି ଗ୍ରାମରେ ସବୁ ଆବଶ୍ୟକୀୟ ଜିନିଷ ମିଳୁଥିଲା । ଉତ୍କଳୀୟ ନୌବାଣିଜ୍ୟର ପ୍ରଭାବ ଏବେ ମଧ୍ୟ ଇଣ୍ଡୋନେସିଆ ଆଦି ଦେଶରେ ପରିଲକ୍ଷିତ ହୋଇଥାଏ । ଓଡିଶାର ଗାଁ, ସହର, ନଦୀ, ପର୍ବତାଦିର ନାମ ବହନ କରୁଥିବା ଗ୍ରାମ ଓ ସହର ମଧ୍ୟ ସେଠାରେ ଅଛି । ଓଡିଶା ପରି ସେଠାରେ ଓଡିଆ ଖାଦ୍ୟ ମଣ୍ଡା, ଏଣ୍ଡୁରୀ ପିଠା, ସଜନା ଛୁଇଁ ଓ ଶାଗ, ବେଲ, ତୁଳସୀ, ବରଗଛ ଆଦିକୁ ଏବଂ ଗୁରୁବାର ଦିନ ଲକ୍ଷ୍ମୀପୂଜା ଏବଂ ରାମଲୀଳା ପ୍ରଭାବ ହିନ୍ଦୁ ଓ ମୁସଲମାନଙ୍କ ମଧ୍ୟରେ ଦେଖାଯାଏ ।

ବୁଢୀବଗିଚା, ଖୋର୍ଦ୍ଧା
ପିନ୍– ୭୫୨୦୫୫



# ବାଗ୍‌ଦେବୀ ସରସ୍ୱତୀ

**ଡକ୍ଟର ଶ୍ରୀହରି ପଣ୍ଡା**

ସରସ୍ୱତୀ ବାକ୍ୟ ବା ଶବ୍ଦର ଅଧିଷ୍ଠାତ୍ରୀ ବାଗ୍‌ଦେବୀ ରୂପେ ପ୍ରସିଦ୍ଧା । ବର୍ତ୍ତମାନ ସମୟରେ ସରସ୍ୱତୀଙ୍କ ପୁରାଣ ବର୍ଣ୍ଣିତ ରୂପମାନ ବିଲୁପ୍ତ ହୋଇଯାଇ କେବଳ ବିଦ୍ୟାଦାତ୍ରୀ ରୂପେ ପ୍ରତିଷ୍ଠିତା । ଋକ୍‌ବେଦରେ ସରସ୍ୱତୀଙ୍କ ସହ ଇଡ଼ା ଓ ଭାରତୀଙ୍କର ନାମ ନେଇଥିବା ଦେଖାଯାଏ । ବେଦର ଭାଷ୍ୟାକାରଗଣ ଦେବୀତ୍ରୟୀଙ୍କୁ ଅଗ୍ନି ବା ଆଦିତ୍ୟ ରୂପରେ ଗ୍ରହଣ କରିଛନ୍ତି । ଋକ୍ ଭାଷ୍ୟରେ ତିନି ଦେବୀଙ୍କୁ ସୂର୍ଯ୍ୟ, ଅଗ୍ନି ଓ ବିଦ୍ୟୁତ-ଅଗ୍ନିର ତିନୋଟି ରୂପ ବୋଲି ବ୍ୟାଖ୍ୟା କରିଛନ୍ତି । ମାତ୍ର ଅଥର୍ବ ବେଦରେ ଏହି ତିନି ଜଣଙ୍କୁ ତିନି ସରସ୍ୱତୀ ବୋଲି କୁହାଯାଇଛି । ଯଜ୍ଞାଗ୍ନି ରୂପା ସରସ୍ୱତୀ ଯେପରି ଅଭିନ୍ନା, ସେହିପରି ସୂର୍ଯ୍ୟାଗ୍ନିର ଅଭିନ୍ନା ହେତୁ ଏମାନେ ସୂର୍ଯ୍ୟଙ୍କର ମଧ୍ୟ ତେଜ ବା ଜ୍ୟୋତି । ସେଇଥିପାଇଁ ଏମାନେ ସୂର୍ଯ୍ୟରୂପା ଇନ୍ଦ୍ରଙ୍କର ପତ୍ନୀ । ପୁରାଣମାନଙ୍କରେ ସରସ୍ୱତୀ ବ୍ରହ୍ମା ବା ସୂର୍ଯ୍ୟ-ବିଷ୍ଣୁଙ୍କର ପତ୍ନୀରେ ପରିଣତ ହୋଇଛନ୍ତି । ଇଡ଼ାଙ୍କଠାରୁ ପୁରାଣରେ ଲକ୍ଷ୍ମୀ, ଭାରତୀଙ୍କଠାରୁ ଅମ୍ବିକା ଏବଂ ସରସ୍ୱତୀଙ୍କଠାରୁ ଆମମାନଙ୍କର ପୂଜନୀୟା ସରସ୍ୱତୀଙ୍କର ଆବିର୍ଭାବ ଘଟିଛି ବୋଲି ଯୋଗେଶ ଚନ୍ଦ୍ର ରାୟ ଉଲ୍ଲେଖ କରିଛନ୍ତି । ପୁରାଣରେ ସରସ୍ୱତୀ ହେଉଛନ୍ତି ଭାରତୀ ଓ ଏଇ ଯୁଗରେ ସରସ୍ୱତୀଙ୍କୁ ମଧ୍ୟ ଭାରତୀ ବୋଲି କୁହାଯାଉଛି । ଏଇ ଦେବୀତ୍ରୟଙ୍କୁ ତ୍ରିସ୍ଥାନସ୍ଥିତ ବାକ୍ ରୂପରେ ବ୍ୟାଖ୍ୟା କରାଯାଇଛି । ତିନି ପ୍ରକାରେ ତିନୋଟି ନାମରେ ସେ କଥିତ ହୁଅନ୍ତି ଏବଂ ତିନି ପ୍ରକାର ଜ୍ୟୋତିରେ ସେ ଅବସ୍ଥାନ କରନ୍ତି । ସେଇ ତ୍ରିବିଧା ବାକ୍ ଦ୍ୟୁଲୋକରେ, ଆକାଶରେ ବା ଅନ୍ତରୀକ୍ଷରେ ଏବଂ ପୃଥିବୀରେ ପୃଥକ ଭାବରେ ଓ ସମଗ୍ର ଭାବରେ ଅଗ୍ନି ରୂପରେ ପୂଜିତ ହୁଅନ୍ତି । ଅଗ୍ନି, ଇନ୍ଦ୍ର ଓ ସୂର୍ଯ୍ୟଙ୍କ ଉଦ୍ଦେଶ୍ୟରେ ପ୍ରଜ୍ୱଳିତ ଅଗ୍ନିର ଶବ୍ଦ ବା ଯଜ୍ଞାଗ୍ନିରେ ହବନ ଦାନର ମନ୍ତ୍ର ହିସାବରେ ଇଡ଼ା, ଭାରତୀ ଓ ସରସ୍ୱତୀ ହେଉଛନ୍ତି ବାକ୍‌ରୂପା । ଏହି ତିନି ଦେବତା ସାଯୁଜ୍ୟ ଓ ସାଧର୍ମ୍ୟ ବଶତଃ ତିନି ସରସ୍ୱତୀ-ପରବର୍ତ୍ତୀ କାଳରେ ଏକ ବାଗଧିଷ୍ଠାତ୍ରୀ ସରସ୍ୱତୀରେ ପରିଣତ ହୋଇଛନ୍ତି । ପଣ୍ଡିତ ଅମୂଲ୍ୟ ଚରଣ ଲେଖିଛନ୍ତି, ଇଡ଼ା, ଭାରତୀ ଓ ସରସ୍ୱତୀ କ୍ରମଶଃ ଅଭିନ୍ନ ହୋଇ ପଡ଼ିଛନ୍ତି । କ୍ରମେ ଦେବୀ ସରସ୍ୱତୀଙ୍କଠାରେ ସକଳଗୁଣ ଆରୋପିତ ହୋଇଛି ଏବଂ ଦେବୀ ସରସ୍ୱତୀ ହୋଇଛନ୍ତି ପ୍ରଧାନ ।



ସରସ୍ୱତୀଙ୍କର ପ୍ରାଧାନ୍ୟ ବୈଦିକ ଯୁଗରୁ ରହିଆସିଛି । ସରସ୍ୱତୀଙ୍କର ଭିନ୍ନ ଏକ ରୂପ ହେଉଛି ସରସ୍ୱତୀ ନଦୀ । ବୈଦିକୋତ୍ତର ଯୁଗରେ ଭାରତବର୍ଷର ପବିତ୍ରତା ଓ ମାହାତ୍ମ୍ୟ ଦୃଷ୍ଟିରୁ ଗଙ୍ଗା ନଦୀର ସ୍ଥାନ ଯେପରି ବୈଦିକ ଯୁଗର ସରସ୍ୱତୀ ନଦୀର ସ୍ଥାନ ସେହିପରି ଥିଲା । ବୈଦିକଋଷି କବିମାନଙ୍କର

ଜୀବନ ଥିଲା ସରସ୍ୱତୀ ନଦୀ । ଋଷିକବିଙ୍କ ଦୃଷ୍ଟିରେ ସରସ୍ୱତୀ ନଦୀ ଶ୍ରେଷ୍ଠା,ଦେବୀଶ୍ରେଷ୍ଠା ଓ ଜନନୀ ଶ୍ରେଷ୍ଠା- 'ଅମ୍ବିତମେ ନଦୀତମେ ଦେବୀତମେ ସରସ୍ୱତୀ' । ସାୟନାଚାର୍ଯ୍ୟ ସରସ୍ୱତୀଙ୍କୁ ନଦୀ ଓ ବିଦ୍ୟାଧିଷ୍ଠାତ୍ରୀ ଉଭୟ ରୂପରେ ବ୍ୟାଖ୍ୟା କରିଛନ୍ତି । ସରସ୍ୱତୀ ଶବ୍ଦର ବ୍ୟୁତ୍ପତ୍ତି ପ୍ରଦର୍ଶନ କରି କୁହାଯାଇଛି, ସତ୍ତ୍ୱେରସ୍ପନ ସରଃ । ଗଦ୍ୟପଦ୍ୟାଦି ରୂପେଣ ପ୍ରସରଣ ମସ୍ୟାସ୍ତୀତି ଅର୍ଥାତ ଗଦ୍ୟପଦ୍ୟାଦି ରୂପରେ ଏଇ ବାକ୍‌ଦେବୀ ଗତିମଦ୍ୟ । ସୁତରାଂ ସରସ୍ୱତୀ କହିଲେ ଉଭୟ ନଦୀ ଓ ଦେବତା ଭାବରେ ବୁଝାଯାଏ । ସରସ୍ୱତୀ ଦୁଇ ପ୍ରକାର ମୂର୍ତ୍ତିମତୀ, ଦେବତା ଓ ନଦୀ । ନଦୀ ଯେପରି ପ୍ରସାର ମାଳିନୀ ଏବଂ ଉତ୍ସଠାରୁ ସମୁଦ୍ର ପର୍ଯ୍ୟନ୍ତ ତା'ର ଗତି, ବିଦ୍ୟାଧିଷ୍ଠାତ୍ରୀ ବାକ୍‌ଦେବୀ ମଧ୍ୟ ସେହିପରି ଗତିଶୀଳା । ଗଦ୍ୟପଦ୍ୟମୟୀ ଦେବୀଙ୍କର ସୀମାରେ ମନୁଷ୍ୟ କେବଳ ତାଙ୍କର କୃପା ବଳରେ ପହଞ୍ଚି ପାରେ । ସମସ୍ତ ଯଜ୍ଞର ସଫଳକାରିଣୀ ହେଉଛନ୍ତି ସରସ୍ୱତୀ । ବିଶାଳ ଜ୍ଞାନ ସମୁଦ୍ର ଦେବୀଙ୍କର କୃପାରୁ ସୃଷ୍ଟି ହୋଇଛି । ନଦୀପରି ଶତସହସ୍ର ଧାରାରେ ପ୍ରବାହିତା ସରସ୍ୱତୀ ଭାଷାର ଶତସହସ୍ର ଧାରାର ଏଇ ପୃଥିବୀରେ ରୂପାୟିତା । ଋଗ୍‌ବେଦ ଯୁଗରେ ମୂର୍ତ୍ତି ପୂଜାର ପ୍ରଚଳନ ନଥିବାରୁ ସରସ୍ୱତୀଙ୍କୁ ଜ୍ୟୋତିରୂପା ଓ ନଦୀରୂପା ଭାବରେ ଥିଲେ । କାଳକ୍ରମେ ଏହି ଦୁଇ ସରସ୍ୱତୀ ଏକାକାର ହୋଇ ବାଗ୍‌ଦେବୀ ବା ବିଦ୍ୟାଦେବୀ ରୂପରେ ରୂପାନ୍ତରିତ ହୋଇଛନ୍ତି । ସରସ୍ୱତୀ ନଦୀ କୂଳରେ ଏକଦା ବୈଦିକ ଋଷିମାନଙ୍କର ଯଜ୍ଞାଗ୍ନି ପ୍ରଜ୍ୱଳିତ ହୋଇ ନିର୍ଗତ ହୋଇଥିଲା ସାମମନ୍ତ୍ର । ସୁତରାଂ ସରସ୍ୱତୀ ହୋଇଥିଲେ ଜ୍ଞାନ ବା ବିଦ୍ୟାର ଅଧିଷ୍ଠାତ୍ରୀ ଦେବୀ । ସରସ୍ୱତୀ ନଦୀ ତୀରରେ ପ୍ରଜ୍ୱଳିତ ଯଜ୍ଞାଗ୍ନିର ହବିଃ ପ୍ରଦାନ କାଳରେ ବୈଦିକ ମନ୍ତ୍ର ଉଚ୍ଚାରିତ ହୋଇଥିବାରୁ ସରସ୍ୱତୀ ହେଲେ ବିଦ୍ୟାରୂପା ବା ବାକ୍‌ରୂପା-ଜ୍ଞାନର ଉଦ୍ଦୀପନକାରିଣୀ ।

ପୁରାଣ ଯୁଗରେ ମାର୍କଣ୍ଡ ପୁରାଣ ଅନୁସାରେ ସୃଷ୍ଟି ବୃଦ୍ଧି ନିମନ୍ତେ ଦକ୍ଷ ପ୍ରଜାପତି ଆନନ୍ଦ ମନରେ ଚିତ୍ତକୁ ଶୁଦ୍ଧ କରି ଧ୍ୟାନରେ ବସିବାରୁ ତାଙ୍କ ଦକ୍ଷିଣ ନାସିକା ଦ୍ୱାରରେ ପବନ ଯିବାରୁ ଗୋଟିଏ ସୁନ୍ଦର କନ୍ୟା ଜାତ ହୋଇ ଦକ୍ଷଙ୍କ ଆଗରେ ଛିଡ଼ା ହେଲା । ଶୁକ୍ଳବସ୍ତ୍ର ପରିହିତା ସେହି ପଦ୍ମିନୀ ଅଂଶରେ ଜନ୍ମ ଦକ୍ଷକନ୍ୟା ରୂପଗୁଣରେ ଅତୁଳନୀୟା ଥିବାରୁ ଦକ୍ଷ ତା'ର ନାମ ଦେଲେ ସରସ୍ୱତୀ । ବାମନ ପୁରାଣରେ ପରମ ପୁଣ୍ୟମୟୀ ନଦୀ ଓ ଦେବୀ ଭାବରେ ଦର୍ଶାଯାଇଛି । ଧର୍ମ, ଅର୍ଥ, କାମ ଓ ମୋକ୍ଷ ସବୁ ଦେବୀଙ୍କ ଦେହରେ ପୂରି ରହିଛି ଏବଂ ଓଁକାରର ତିନିମାତ୍ରା, ତିନି ବେଦ ଦେବୀଙ୍କ ଶରୀରରେ ପୂରି ରହିଥିବା ସହ ବିଷ୍ଣୁଙ୍କର ଜିହ୍ୱା ବୋଲି ସରସ୍ୱତୀଙ୍କୁ କୁହାଯାଇଛି । ନଦୀର ମାହାତ୍ମ୍ୟ ଦର୍ଶାଇବାକୁ ଯାଇ ସରସ୍ୱତୀ ନଦୀରେ ପବନ ହ୍ରଦ ନିକଟରେ ପୁତ୍ର ଶୋକରେ ବ୍ୟଥିତ ବାୟୁଙ୍କୁ ଦେବତାମାନେ ସ୍ତବ କରି ପ୍ରସନ୍ନ କରିଥିବା କଥା ଉଲ୍ଲେଖ ଅଛି । ତା'ଛଡ଼ା ସରସ୍ୱତୀ ନଦୀରେ ଥିବା ଶାଳିହୋତ୍ର ତୀର୍ଥ, ଶ୍ରୀକୁଞ୍ଜ ତୀର୍ଥ, ବେଦମତୀ, ବ୍ରହ୍ମସ୍ଥାନ, ସୋମତୀର୍ଥ ଏବଂ ସପ୍ତ ସାରସ୍ୱତ ନାମକ ତୀର୍ଥମାନଙ୍କରେ ସ୍ନାନର ଫଳ ବର୍ଣ୍ଣିତ ହୋଇଛି । ଶ୍ରୀମଦ୍ ଭାଗବତ ମହାପୁରାଣମ୍‌ରେ ବାକ୍ ବ୍ରହ୍ମାଙ୍କ କନ୍ୟା ଥିଲେ ଏବଂ ନାରୀମାନଙ୍କ ମଧ୍ୟରେ କୀର୍ତ୍ତି, ଶ୍ରୀ, ବାକ୍, ସ୍ମୃତି, ମେଧା, ଧୃତି ଓ କ୍ଷମା ଆଦି ଗୁଣଗୁଡ଼ିକ ଭଗବାନଙ୍କର ବିଭୂତି ବୋଲି ବର୍ଣ୍ଣିତ ହେବା ସହ ବଳରାମ ପ୍ରଭାସ କ୍ଷେତ୍ରରେ ସ୍ନାନ କରି ସରସ୍ୱତୀ ନଦୀ କୂଳେ ଚାଲୁଚାଲୁ ବାଟରେ ପୃଥୂଦକ, ବିନ୍ଦୁସର, ତ୍ରିତକୂପ, ସୁଦର୍ଶନ ତୀର୍ଥ, ବିଶାଳତୀର୍ଥ, ବ୍ରହ୍ମତୀର୍ଥ, ଚକ୍ରତୀର୍ଥ ଓ ପୂର୍ବବାହିନୀ ସରସ୍ୱତୀ ଆଦି ତୀର୍ଥ ଦର୍ଶନ କରିଥିଲେ ବୋଲି ବର୍ଣ୍ଣିତ ହୋଇଛି।

ଦେବୀ ସରସ୍ୱତୀଙ୍କର ବାହନ ହେଉଛି ହଂସ । ବସନ୍ତ ପଞ୍ଚମୀ ଦିନ ଶ୍ରୀମନ୍ଦିରରେ କାକରା ପିଠା ଭୋଗ ହୁଏ । ସେହିଦିନ ସରସ୍ୱତୀଙ୍କ ମନ୍ଦିରରେ ବାଇଶି ଗୋଟି ନଡ଼ିଆ ଭଙ୍ଗାଯାଏ ଏବଂ ପାଞ୍ଜି ପୂଜା ହୋଇଥାଏ । ବାକ୍‌ଦେବୀ ସରସ୍ୱତୀ ଆଜି ମଧ୍ୟ ଆମର ଆରାଧ୍ୟା ଓ ବନ୍ଦନୀୟା ।

ଗୌଡ଼ଗାଁ
କପ୍ତିପଦା, ମୟୂରଭଞ୍ଜ



# ଯାଜପୁରର ଐତିହ୍ୟ ଶ୍ରୀଶ୍ରୀ ଦଧିବାମନ ପୀଠ

କିରଣବାଳା ଦାଶ

ଯାଜପୁରର ଅଧିଷ୍ଠାତ୍ରୀ ଦେବୀ ହେଉଛନ୍ତି ବିରଜା ଦେବୀ । ତାଙ୍କର ମହିମା ଅଲୌକିକ ଅଟେ । ବିରଜାକ୍ଷେତ୍ରଠାରୁ ପ୍ରାୟ ୧୫ କିଲୋମିଟର ଗଲେ ପଡ଼େ ଶ୍ରୀଶ୍ରୀ ଦଧିବାମନ କ୍ଷେତ୍ର, ଯାହା ଶ୍ରୀଶ୍ରୀ ଦଧିବାମନ କ୍ଷେତ୍ର ନାମରେ ନାମିତ ଅଟେ । ମହାପ୍ରଭୁଙ୍କ ଚକଡ଼ାକୁ ଲାଗି ପ୍ରଭୁ ଶ୍ରୀ ଶ୍ରୀ ବାବା ମୁକ୍ତେଶ୍ୱର ମହାଦେବ ଓ ମା' ପଞ୍ଚଘଣ୍ଟଙ୍କର ମନ୍ଦିର ଅବସ୍ଥିତ ।

ମହାପ୍ରଭୁ ଶ୍ରୀଶ୍ରୀ ଦଧିବାମନ ଚନ୍ଦ୍ର ଏ ଅଂଚଳର ଇଷ୍ଟଦେବ ଅଟନ୍ତି । ଅନେକ ତାଙ୍କୁ ବୁଢ଼ା ଠାକୁର ବୋଲି କହନ୍ତି । କିମ୍ବଦନ୍ତୀ ପୋଥି ସବୁ ନଷ୍ଟ ହୋଇଯିବା ପରେ, ପୁରୁଖା ଲୋକମାନଙ୍କର ଡାଇରି, ସେମାନେ ତାଙ୍କ ଜେଜେ ବାପାଙ୍କଠାରୁ ଶୁଣିଥିବା ଲୀଳା ଓ କଥାମାନଙ୍କୁ ଭିତ୍ତି କରି ଯେତିକି ଅନୁମାନ କରାଯାଏ, ମନ୍ଦିରଟି ବ୍ରିଟିଶ ଶାସନର ବହୁ ପୂର୍ବରୁ ତିଆରି ହୋଇଅଛି । ତା' ପୂର୍ବରୁ ମହାପ୍ରଭୁ ମାଟି ଘର ଚଉପାଢ଼ି ଘରେ ପୂଜା ପାଉଥିଲେ । ଏକ ଅଲୌକିକ ଭାବେ ବିରି ଅଖା ଭିତରୁ ପରିପ୍ରକାଶିତ ହୋଇଥିଲେ ସେ । ଏହା ମଧ୍ୟ ଆଶ୍ଚର୍ଯ୍ୟକର ଘଟଣା ଅଟେ, ଯାହା ସାଧାରଣତଃ ଅବିଶ୍ୱସନୀୟ ବୋଲି ଯେ କେହି କହିବ । କିନ୍ତୁ ଭଗବତ ଦର୍ଶନକୁ ଆଗରେ ରଖି ବିଚାର କଲେ ଦେଖାଯିବ ଯେ, ଆମ ଭାରତ ଭୂଖଣ୍ଡରେ ଦେବାଦେବୀମାନେ ଲୀଳା ରଚନା ପାଇଁ ଅନେକ କିଛି ଅଲୌକିକତାରେ ପରିପ୍ରକାଶିତ ହୋଇଥିବାର ପ୍ରମାଣ ମିଳେ । ଧାନର ଅଭାବୀ ଦୂର କରିବା ପାଇଁ ଜମିଦାର ଲୋକ ପଠାଇ, ବିରି ବଦଳରେ ଧାନ ଆଣି ଲୋକମାନଙ୍କୁ ଦେଉଥିଲେ । ସେଦିନ ଅଦଳ ବଦଳ ଭିତରେ ଗୋଟିଏ ବିରି ବସ୍ତା ବଦଳ ନହେବାରୁ ଫେରିଆସିଥିଲା । ଖୋଲାଯିବାରୁ ସେହିଥିରୁ ହିଁ ମହାପ୍ରଭୁଙ୍କ ଆବିର୍ଭାବ ହୋଇଥିଲା । ସେବା ପାଇଁ ମଧ୍ୟ ବ୍ରାହ୍ମଣ ପହଞ୍ଚି ଗଲେ ଜଣେ ବ୍ରହ୍ମଚାରୀ ଯୁବକ । ନାମ ତାଙ୍କର ଜୀବନ ଦାସ ଗୋସ୍ୱାମୀ । ଗ୍ରାମବାସୀଙ୍କ ଅନୁରୋଧକ୍ରମେ ସେ ପୂଜାଭାର ଗ୍ରହଣ କରି ମହାପ୍ରଭୁଙ୍କୁ ଚିକଣାସ୍ଥିତ ମାଟି ଘର ଚଉପାଢ଼ି ଘରେ ସ୍ଥାପନା କରି ପୂଜା ନୈବେଦ୍ୟର ବ୍ୟବସ୍ଥା କରିଥିଲେ । ମହାପ୍ରଭୁଙ୍କ ଆବିର୍ଭାବ ପୂର୍ବରୁ ଜଣେ ବୈଷ୍ଣବ ସଂପ୍ରଦାୟର ବାବାଜୀଙ୍କର ସେ ଗ୍ରାମକୁ ଆଗମନ ହୋଇଥିଲା । ତାଙ୍କରି ଦ୍ୱାରା ଆବିର୍ଭୂତ ମହାପ୍ରଭୁଙ୍କର ଯଜ୍ଞାନୁଷ୍ଠାନ ନୀତି ନିୟମ ଓ ବିଧି ବିଧାନ ପୂର୍ବକ ସମାପନ କରାଯାଇ ତାଙ୍କୁ ଚତୁର୍ଦ୍ଧାମୂରତି ସମାହିତ ଏକ ବିଗ୍ରହ ଦଧିବାମନ ରୂପୀ ଅବତାର ବୋଲି ଋକ୍ ବେଦର ବର୍ଣ୍ଣନାତ୍ମକ ପଦ ଶୁଣାଇଥିଲେ ବାବାଜୀ ମହାରାଜ । ଏହି ରୂପରେ କଳି ଯୁଗରେ ଶ୍ରୀକୃଷ୍ଣ ଭଗବାନ ପୂଜା ପାଇବେ । ସେହିଦିନଠାରୁ ମହାପ୍ରଭୁ ଶ୍ରୀଶ୍ରୀ ଦଧିବାମନ ଜୀଉ ନାମରେ ସେ ଖ୍ୟାତ ଅଟନ୍ତି । କିଛି ଦିନ ପରେ ପଥୁରିଆମାନେ ନୀଳଗିରି ପାହାଡ଼ରୁ ଶୀଳ, ପେସା, ପଥର ଜିନିଷର ବେପାର ନିମନ୍ତେ ୨ଟି ଶଗଡ଼ ବୋଝେଇ କରି ନେଇ ପହଞ୍ଚିଥିଲେ । ପଥର କିଣାବିକା ମଧ୍ୟରେ ସେଥିରୁ ଆବିର୍ଭୂତ ହୋଇଥିଲେ ନୀଳ ମାଧବ ବିଗ୍ରହ ଓ ମା' ବୃନ୍ଦାବତୀ । ଯେହେତୁ ଏହି ଗ୍ରାମରେ ସେମାନେ ପଥର ମଧ୍ୟରୁ ଆବିର୍ଭୂତ, ପଥୁରିଆମାନେ ମନା କରିବା ସତ୍ତ୍ୱେ ଗ୍ରାମର ଯୁବକମାନେ ଜୋର୍ କରି ନୀଳ ମାଧବ ଓ ମା' ବୃନ୍ଦାବତୀଙ୍କୁ ତାଙ୍କଠାରୁ ନେଇ ମହାପ୍ରଭୁଙ୍କ ନିକଟରେ ପ୍ରତିଷ୍ଠା କରିଥିଲେ । ମାଳଦାର ଜମିଦାର ମହାପ୍ରଭୁଙ୍କ ସେବା ପୂଜା ନିମନ୍ତେ ୧୫୦ ଏକର ଜମି ଦାନ ସୂତ୍ରରେ ଦେଇଥିଲେ, ଯାହାର ୧୯୨୮ ମସିହାର ପଟା ଦେଖିଲେ ୫୨ ଏକରର ପ୍ରମାଣ

ଅଦ୍ୟାବଧି ମିଳି ପାରୁଛି। ମନ୍ଦିର ଗଢ଼ା ହେବ କେମିତି ଏ ଚିନ୍ତା ସମସ୍ତଙ୍କୁ ଘାରିଲା।

ସ୍ୱାଧୀନତା ସଂଗ୍ରାମୀ (ମହାପ୍ରଭୁଙ୍କର ସେବାୟତ) ଵ ବୈଦ୍ୟନାଥ ଦାଶଙ୍କ ଲିଖିତ ଡାଇରି ଓ କଥିତ କାହାଣୀର ବର୍ଣ୍ଣନା ଅନୁଯାୟୀ ମନ୍ଦିରଟି ସେହି ସମୟରେ ତୋଳା ହୋଇଥିଲା, ଯେଉଁ ସମୟରେ ରାଜା ଯଯାତି କେଶରୀ ଯାଜପୁର ନଗର ତିଆରି କରି ବିଭିନ୍ନ ଦେବାଦେବୀଙ୍କୁ ପ୍ରତିଷ୍ଠା କରିଥିଲେ ଦେଉଳମାନ ତୋଳାଇ। ଜମିଦାର ଓ ଗ୍ରାମବାସୀଙ୍କର ଅନୁରୋଧକୁ ବିଚାରକୁ ନେଇ ଏହି ମନ୍ଦିର ଗଢ଼ାଯିବାର ସମସ୍ତ ଖର୍ଚ୍ଚ ସେ ବହନ କରିଥିଲେ। ମନ୍ଦିର ତୋଳା ହେବାଠାରୁ ବିଗ୍ରହମାନଙ୍କର ମନ୍ଦିରରେ ପ୍ରତିଷ୍ଠା ହେବା ପର୍ଯ୍ୟନ୍ତ ପୁନଃରାୟ ସେହି ବାବାଜୀ ମହାରାଜଙ୍କର ଏହି ଗ୍ରାମକୁ ପ୍ରତ୍ୟାବର୍ତ୍ତନ ହୋଇଥିଲା। ମନ୍ଦିରଟି ଚିକଣାରେ ନହୋଇ ବ୍ରାହ୍ମଣୀ ଗାଁରେ କରାଯାଇଥିଲା। ସେଥିପାଇଁ ଗ୍ରାମର କିଛି ବଦାନ୍ୟ ବ୍ୟକ୍ତି ଭୂମି ଦାନ କରିଥିଲେ।

ମହାପ୍ରଭୁଙ୍କ ପାର୍ଶ୍ୱ ଦେବାଦେବୀ ଭାବେ ପୂଜା ପାଉଛନ୍ତି ହନୁମାନ, ଶ୍ରୀ ଗଣେଶ, ବରାହ ଜୀଉ ଏବଂ ବେଢ଼ାର ଏକ ପାର୍ଶ୍ୱରେ ମା' ଲକ୍ଷ୍ମୀ ମଧ୍ୟ ବିରାଜମାନ। ଅପରପାର୍ଶ୍ୱରେ ନବଗ୍ରହ ଦଶଅବତାର ବିଗ୍ରହ, ମନ୍ଦିର ଅଗ୍ନିକୋଣରେ ପୂଜା ପାଉଛନ୍ତି ମା' ବୃନ୍ଦାବତୀ। ସେବା ନିମନ୍ତେ ଚୟନ ହେଲେ ମାଳି, କୁମ୍ଭାର, ନାପିତ, ମକଦ୍ଦମୀ ଇତ୍ୟାଦି। ସମସ୍ତେ ପାଉଣା ଆକାରରେ ଜମି ନେଲେ। ମହାପ୍ରଭୁଙ୍କର ପୂଜାନୀତି ନିୟମ ଅନୁଯାୟୀ ପାଳନ କରାଯାଏ। ସାୟଂ କାଳରେ ପହଡ଼ ଖୋଲି ଅବକାଶ, ମଇଲମ, ଆରତୀ, ବାଲ୍ୟ ଭୋଗ (ଛେନା, ସକରା, ବସାଦହି, ନଡ଼ିଆ, ବିଭିନ୍ନ ପ୍ରକାର ଫଳମୂଳ, ଖଇ ଉଖୁଡ଼ା, ଲଡୁ) ଇତ୍ୟାଦି। ମଧ୍ୟାହ୍ନରେ ଅନ୍ନ, ଡ଼ାଲି, ଡ଼ାଲମା, ଖେଚୁଡ଼ି, ଶାଗ, ଖଟା, ଖିରୀ। ଏସବୁର ପ୍ରସ୍ତୁତ ପାଇଁ ମହାପ୍ରଭୁଙ୍କର ରୋଷ ଘର ଓ ସ୍ୱତନ୍ତ୍ର କୂପର ବ୍ୟବସ୍ଥା କରାଯାଇଛି। ନିଜେ ସେବାୟତମାନେ ଅନ୍ନଭୋଗ ପ୍ରସ୍ତୁତ କରିଥାଆନ୍ତି। ସଂଧ୍ୟାରେ ଆରତୀ, ସମୂହ ପ୍ରାର୍ଥନା, ଭାଗବତ ପାଠ, ଶେଷରେ ସଂକୀର୍ତ୍ତନ ପରେ ସେଠାରେ ପ୍ରସାଦ ସେବନ କରିଥାଆନ୍ତି। ସଂଧ୍ୟା ଧୂପରେ ମହାପ୍ରଭୁଙ୍କୁ ନୈବେଦ୍ୟ ଦିଆଯାଏ- ପୁରୀ, ଡ଼ାଲମା, ପଞ୍ଚାମୃତ, ଖିରୀ, ଖେଚୁଡ଼ି, ଚୁଡ଼ା, ଉଖୁଡ଼ା, ଲଡୁ ଇତ୍ୟାଦି। ରାତ୍ର ୯ ଘଟିକାରେ ମହାପ୍ରଭୁଙ୍କର ପହୁଡ଼ ସେବା ସାରି ମନ୍ଦିର ବନ୍ଦ କରାଯାଏ।

ସେସମୟରେ ମକଦ୍ଦମୀଙ୍କ ଘରୁ ପର୍ବପର୍ବାଣିରେ ସମସ୍ତ ଖର୍ଚ୍ଚ ମକଦ୍ଦମୀ ସେବକଙ୍କ ଦ୍ୱାରା ହେଉଥିଲା। ସ୍ନାନ ପୂର୍ଣ୍ଣିମା, ଗହ୍ମା ପୂର୍ଣ୍ଣିମା, ଜନ୍ମାଷ୍ଟମୀ, ରାଧାଷ୍ଟମୀ, ଭାଗବତ ଜନ୍ମ, ପୌଷ ପୂର୍ଣ୍ଣିମା ଇତ୍ୟାଦିରେ ବ୍ରାହ୍ମଣମାନଙ୍କୁ ଭୋଜନ ବସ୍ତ୍ର ଦେବା। ଏସବୁ କାଳକ୍ରମେ ଅଦ୍ୟାବଧି ବନ୍ଦ ହୋଇଗଲାଣି। କେବଳ ଦୋଳ ପୂର୍ଣ୍ଣିମାରେ ମହାପ୍ରଭୁଙ୍କର ଚଳନ୍ତି ପ୍ରତିମା ରାଧାକୃଷ୍ଣ ନିମନ୍ତ୍ରିତ ହୋଇଥାଆନ୍ତି। ପ୍ରଥମେ ତାଙ୍କର ଆଦ୍ୟ ବିଜେସ୍ଥଳୀ ଆଗଡ଼ାସିଂ ଡିଅରେ ଚିକଣା ଗ୍ରାମକୁ ଯାଇ ଭୋଗ, ନୈବେଦ୍ୟ ଲାଗି ହୋଇଥାଆନ୍ତି। ତା'ପରେ ସମସ୍ତ ମକଦ୍ଦମୀ ପରିବାର, ଗ୍ରାମବାସୀମାନଙ୍କର ନିମନ୍ତ୍ରଣ ରକ୍ଷା କରି ସେମାନଙ୍କ ଦାଣ୍ଡରେ ପୂଜା ନୈବେଦ୍ୟ ଗ୍ରହଣ କରନ୍ତି।

ସମୟଚକ୍ରର ଅପରାନ୍ତେ, ଯେତେବେଳେ ଜୀବନ ଦାଶ ଗୋସ୍ୱାମୀଙ୍କର ବଂଶଧର ପଞ୍ଚମ ପୁରୁଷରେ ଅବତୀର୍ଣ୍ଣ ହେଲେ, ସେତେବେଳକୁ ସେବାୟତ ପରିବାରରେ ଗୋଟିଏ ପ୍ରଥା ପ୍ରଚଳନ ହୋଇଥିଲା। ସେବାୟତ ପରିବାରର ମୁଖ୍ୟ ଅଧିକାରୀ ପଦ ଗ୍ରହଣ। ତାଙ୍କର ପ୍ରଥା ଅନୁସାରେ ମହାପ୍ରଭୁଙ୍କର ସମସ୍ତ କାର୍ଯ୍ୟନୀତି ପ୍ରସ୍ତୁତ କରାଯିବ। ଅଧିକାରୀଙ୍କର ସ୍ୱର୍ଗବାସ ପରେ ତାଙ୍କର ଜ୍ୟେଷ୍ଠ ପୁତ୍ରଙ୍କୁ ଏ ଦାୟିତ୍ୱ ସଂପନ୍ନ କରିବାର ଅଧିକାର ଦିଆଯିବ। ବାବାଜୀ ବୈଷ୍ଣବ, ସନ୍ନ୍ୟାସୀ ଆଦିଙ୍କୁ ନିମନ୍ତ୍ରଣ କରି ତାଙ୍କ ସାମ୍ନାରେ ସମସ୍ତ ଗ୍ରାମବାସୀଙ୍କ ଉପସ୍ଥିତିରେ ତାହାଙ୍କୁ ଅଧିକାରୀ ପଦରେ ଅଭିଷିକ୍ତ କରାଯାଇଥାଏ। ଏହି ପ୍ରଥାକୁ ନିୟମାନୁଯାୟୀ ସମସ୍ତେ ମାନିବା ପାଇଁ ବାଧ୍ୟ ଅଟନ୍ତି। ତେଣୁ ମହାପ୍ରଭୁଙ୍କର ସେବା ପୂଜାରେ କୌଣସି ବାଧା ଉପୁଜେ ନାହିଁ।

ଦିନକର ଘଟଣା, ଯାହା ପୁରୁଷ ପୁରୁଷ ଧରି ସ୍ମରଣୀୟ ହୋଇ ରହିଯାଇଛି। ମହାପ୍ରଭୁ ଭକ୍ତମାନଙ୍କ ପାଇଁ କେତେ ଦୟାଳୁ। ଅଧିକାରୀ ଧାନ ବିଲ ବଛା ପାଇଁ ମୂଲିଆ ଖୋଜି ଦୌଡ଼ି ଦୌଡ଼ି ମୂଲିଆ ନପାଇ ଶେଷରେ ଦେଉଳ ପିଣ୍ଡାରେ ନିରାଶ ହୋଇ ଶୋଇଯାଇ ଚିନ୍ତା କରିଥିଲେ। ଯଦି ଏଥର ଧାନ ବିଲ ବଛା ହୋଇ ନପାରେ, ବିହୁଡ଼ା ନହୁଏ ତେବେ ଘାସ

ଧାନକୁ ମାଡ଼ିଦେବ। ଏ ବର୍ଷ ଧାନ ହେବ ନାହିଁ। ମୋ ଠାକୁରେ କ'ଣ ଖାଇବେ। ଏ ଅଂଚଳରେ ସବୁଦିନେ ତ ଧାନ ମହଙ୍ଗା। ମୁଁ କ'ଣ କରିବି ? ମୋ ଦୁଃଖ ତୁମକୁ ଲାଗିଲା ପ୍ରଭୁ। ଅଧିକାରୀଙ୍କୁ ସେ ଦେଉଳ ପିଣ୍ଡାରେ ନିଦ ଲାଗିଗଲା। ସେ ଖୁବ୍ ଗଭୀର ନିଦ୍ରାରେ ଶୋଇଗଲେ। ପାହାନ୍ତି ପ୍ରହର ସୁଲୁସୁଲିଆ ପବନରେ ନିଦଟା ଚାଉଁକିନା ଭାଙ୍ଗିଗଲା। ସେ ଉଠି ପଡ଼ି ଶୀଘ୍ର ଶୀଘ୍ର ପାଦ ବଢ଼ାଇ ଚାଲିଲେ ନଈଆଡ଼େ। ନିଜର ନିତ୍ୟକର୍ମ ସମାପନ କରି ବିଲ ଆଡ଼କୁ ମୁହାଁଇଲେ। କାଳେ ମୂଲିଆ ମିଳିଯିବେ। କିଆରି ମୁଣ୍ଡରେ ପହଞ୍ଚି ଦେଖିଲେ ଧାନ କିଆରିଟି ବଛା ହୋଇଛି। ସେ ଖୁସି ମନରେ ଆଗକୁ ଚାଲିଲେ। ଭୁଲିଗଲେ ସବୁ କିଛି। ଯାହା ହେଉ ମୂଲିଆମାନେ ମୋ କଥା ରଖି ବୋଧହୁଏ ବିଲ ବାଛିବାକୁ ଆସିଥିଲେ। କିଆରୀ ପରେ କିଆରୀ ଦେଖୁଥାଆନ୍ତି ସେ। ଯେତେବେଳେ ଶେଷ କିଆରୀ ମୁଣ୍ଡରେ ପହଞ୍ଚିଲେ, ସେତେବେଳେ ସେ ଖୁସିରେ ଯେଉଁ ଅବଚେତନ ଅବସ୍ଥାରେ ଥିଲେ, ହଠାତ୍ ଚମକି ଉଠି ଛିଡ଼ା ହୋଇ ଭାବିଲେ। ସୂର୍ଯ୍ୟ ମୁଣ୍ଡ ଉପରେ ହେଲେଣି ମୁଁ ବିଲ ଦେଖୁଛି, ଠାକୁରଙ୍କ ପହଡ଼ ଖୋଲା ହୋଇନାହିଁ। ସେଇଠୁ ଫେରିଲେ ସେ। ମନରେ ଗୋଟିଏ ପ୍ରଶ୍ନ । ଖଣ୍ଡେ ନୁହେଁକି ଦୁଇ ଖଣ୍ଡ ନୁହେଁ, ଦଶମାଣ ଜମି ବାଛିଲା କିଏ ? ସେ ତରବରରେ ନଈରୁ ଗାଧୋଇ ପଡ଼ି ଯାଇ ଦେଉଳ ଦ୍ୱାର ଖୋଲିଲେ। ଦେଖିଲେ ଦେଉଳ ଭିତର ପଙ୍କରେ ଲଟପଟ। ଠାଏ ଠାଏ ଘାସ ପଡ଼ିଛି। ମହାପ୍ରଭୁଙ୍କର ପହୁଡ଼ ଆବରଣ ତଳେ ଲୋଟୁଛି। ସିଂହାସନ କାଦୁଅରେ ଲଟପଟ। ମହାପ୍ରଭୁଙ୍କ ପିନ୍ଧା ଲୁଗା, ଉତ୍ତରୀୟ, ଏମିତିକି ହାତ, ମୁହଁରେ କାଦୁଅ ଛିଟା ଘାସ ମଧ୍ୟ ଲାଗିଛି। ଆଉ ଧୈର୍ଯ୍ୟ ଧରି ପାରିନଥିଲେ ଅଧିକାରୀ ଗୋସେଇଁ। ଧାଇଁ ଯାଇ କୁଣ୍ଢାଇ ପକାଇ ଭୋ ଭୋ କାନ୍ଦି ଉଠିଥିଲେ ସେ। କହିଥିଲେ, ହେ ଦରିଦ୍ରର ବନ୍ଧୁ କାଳିଆ ସାଆନ୍ତେ, ଏ ଅକିଞ୍ଚନର ଦୁଃଖ ସହି ନପାରି ଶେଷରେ ତୁମେ ମୋ ପାଇଁ ଏତେ କଷ୍ଟ କଲ ପ୍ରଭୁ। ଯେଉଁ କଳା ବଦନରେ ସର୍ବଦା ହସ ଲାଖି ରହିଥିଲା, ତାହା ଶୁଖି କଳାକାଠ ପଡ଼ିଗଲାଣି। ଏହିପରି କହି ପ୍ରଭୁଙ୍କୁ କୁଣ୍ଢାଇ ସେ ନିଜ ଗାମୁଛାରେ ମହାପ୍ରଭୁଙ୍କର ମୁଖ ମଣ୍ଡଳକୁ ପୋଛି ଦେଉଥିଲେ। ନିଜ କୋଳରେ ବସାଇ କେତେ କ'ଣ କହି ଚାଲିଥିଲେ ସେ ଭାବ ଗଦ୍‌ଗଦ୍ କଣ୍ଠରେ। ଏହା ଥିଲା ଭକ୍ତ ଆଉ ଭଗବାନଙ୍କ ମଧ୍ୟରେ ଏକାଗ୍ରତାର ଭକ୍ତିଭାବନାର ମୁହୂର୍ତ୍ତ।

ଆଜିର ସମୟରେ ମହାପ୍ରଭୁଙ୍କର ସେହି ଲୀଳାକୁ କେହି ମନରୁ ପାଶୋରି ନାହାନ୍ତି। ସମସ୍ତେ କହନ୍ତି ପ୍ରଭୁ ଆମ୍ଭର ଡ଼ାକୁଆ ଠାକୁର। ଦୁଃଖ ନିବାରଣ ନିମନ୍ତେ ସେ ସ୍ୱୟଂ ଆବିର୍ଭୂତ। ତାହା ମଧ୍ୟ ସତ୍ୟ। ଅନେକ ଏ କଥାକୁ ଉପଲବ୍ଧି ମଧ୍ୟ କରିଛନ୍ତି। ସ୍ନାନ ପୂର୍ଣ୍ଣିମାରେ ମହାପ୍ରଭୁଙ୍କର ସ୍ନାନଯାତ୍ରା ଉତ୍ସବକୁ ଆଡ଼ମ୍ବର ସହକାରେ ପାଳନ କରାଯାଇଥାଏ। ପ୍ରଭୁ ଦଧିବାମନ ଚନ୍ଦ୍ର ଏବଂ ନୀଳ ମାଧବ ପହଣ୍ଡିରେ ବିଜେ ହୁଅନ୍ତି ସ୍ନାନବେଦୀକୁ । ସେଠାରେ ପଞ୍ଚତୀର୍ଥ ଜଳ, କଞ୍ଚା କ୍ଷୀର, ଘିଅ ମହୁ ମିଶ୍ରିତ ଜଳରେ ସ୍ନାନକର୍ମ ଶେଷ ପରେ ତାଙ୍କୁ ରାଜରାଜେଶ୍ୱର ବେଶରେ ସଜ୍ଜିତ କରାଯାଏ। ପହଣ୍ଡି ସମୟରେ ବିଧି ମୁତାବକ ଛେରାପାଣି ପକାଇବା ସେବା ଓ ପହଁରା ଦେବା ସେବା, ମକଦ୍ଦମୀ ପରିବାର ଦ୍ୱାରା କରାଯାଇଥାଏ। ସେହି ଦିନଟିରେ ବିଶ୍ୱାସ ରହିଛି ଯେ, ଯେତେବେଳେ ଛେରାପହଁରା ଚାଲିଥିବ, ମହାପ୍ରଭୁ ଝୁଲି ଝୁଲି ପହଣ୍ଡିରେ ସ୍ନାନବେଦୀକୁ ବିଜେ ହେଉଥିବେ, ସେହି ସମୟରେ ଯଦି ଭକ୍ତଟିଏ କାଷ୍ଠା ଉପବାସ ବ୍ରତ ରଖି ଗରୁଡ଼ସ୍ତମ୍ଭ ପଛରେ ଛିଡ଼ା ହୋଇ ତା'ର ଦୁଃଖକୁ ମହାପ୍ରଭୁଙ୍କ ନିକଟରେ ସମର୍ପଣ କରିଦେବ, ତେବେ ସେ ଇଚ୍ଛା ତା'ର ନିଶ୍ଚିତ ପୂରଣ ହୋଇଯିବ। ସେଦିନଟି ମହାପ୍ରଭୁଙ୍କର ସ୍ନାନ ପାଦୁକା ପାଇ ସଂଧ୍ୟାରେ ଯେଉଁ ଅନ୍ନ ବ୍ୟଞ୍ଜନ ନୀତି ପ୍ରସ୍ତୁତ ହୁଏ, ସେଥିରୁ କଣିକାଏ ସେବନ କରି ସେ ନିଜର ବ୍ରତ ସମାପନ କରିବ। ଠାକୁରେ ତାକୁ ନିଶ୍ଚୟ ସୁଫଳ ଦେବେ।

ଏବେ ପ୍ରଭୁଙ୍କର ସମସ୍ତ ପର୍ବପର୍ବାଣି ଓ ପ୍ରତ୍ୟେକ ଦିନ ପୂଜା ବିଧିକୁ ସେବାୟତମାନେ ବାଣ୍ଟି ନେଇ ନିଜର ପାଳି ଅନୁସାରେ ସମାପନ କରୁଛନ୍ତି। ୨୦୧୫ ମସିହାରେ ଶ୍ରୀଶ୍ରୀ ଦଧିବାମନ ଜୀଉଙ୍କର ନବକଳେବର ସମାପନ କରାଯାଇଅଛି। ଅଲାରପୁର ଓ ଗୋପାଳପୁରରୁ ଦାରୁ ଆଣି ଦୁଇ ବିଗ୍ରହଙ୍କର ନୂତନ ବିଗ୍ରହ ଗଢ଼ାହୋଇ ବିଧି ମୁତାବକ ନବକଳେବର କାର୍ଯ୍ୟ ସମାପନ କରାଯାଇଅଛି। ଯଜ୍ଞାନୁଷ୍ଠାନରେ କର୍ତ୍ତାକର୍ତ୍ତ୍ରୀ ଭାବେ ସେବା ଦେଇଥିଲେ ସେବାୟତ ଭାଗିରଥୀ ଦାଶ ଏବଂ ତାଙ୍କ ପତ୍ନୀ ସଂଜୁଲତା ଦାଶ। ବ୍ରହ୍ମ ପରିବର୍ତ୍ତନ ଓ

ପାତାଳି ସେବା କାର୍ଯ୍ୟ ତୁଲାଇଥିଲେ ସ୍ୱାଧୀନତା ସଂଗ୍ରାମୀ ସ୍ୱର୍ଗତଃ ଭୀମଚରଣ ଦାଶଙ୍କର ସୁପୁତ୍ର ଶ୍ରୀମାନ ଶିବବ୍ରତ ଦାଶ । ଏହି ମହୋତ୍ସବରେ ବିଂଝାରପୁର, ଯାଜପୁରର ସମସ୍ତ ଭକ୍ତବୃନ୍ଦ ଯୋଗ ଦେଇ ଉତ୍ସବଟିକୁ ଖୁବ୍ ଆଡ଼ମ୍ବର ସହକାରେ ପାଳନ କରିଥିଲେ ।

ଏବେ ମନ୍ଦିର ମରାମତି, ସିଂହଦ୍ୱାର, ବଡ଼ଦାଣ୍ଡ ପ୍ରଭୃତି ତିଆରି କରି ମନ୍ଦିରର ଶୋଭାକୁ ତ୍ୱରାନ୍ୱିତ କରାଯାଉଅଛି । ଜ୍ୟେଷ୍ଠ ମାସରେ ସ୍ନାନଯାତ୍ରା, ତା'ପରେ ଅଣସର ବେଦୀକୁ ମହାପ୍ରଭୁଙ୍କର ଗମନ, ସେଠାରେ ଏକ ପକ୍ଷ ଧରି ମହାପ୍ରଭୁଙ୍କର ଅନବସର ନୀତି, ପୁଣି ନେତ୍ରୋତ୍ସବରେ ନବଯୌବନ ଦର୍ଶନ, ଆଷାଢ଼ ଶୁକ୍ଳ ଦ୍ୱିତୀୟା ତିଥିରେ ମହାପ୍ରଭୁଙ୍କର ଚଳନ୍ତି ବିଗ୍ରହ ଚତୁର୍ଦ୍ଧାମୂରତିଙ୍କ ରଥଯାତ୍ରା ସମାପନ ହୋଇଥାଏ । ନବଦିନ ଧରି ନବରାତ୍ର ମହୋତ୍ସବ ପରେ ଚଳନ୍ତି ପ୍ରତିମା ବାହୁଡ଼ାରେ ବାହୁଡ଼ି ଯାଆନ୍ତି ତାଙ୍କ ମନ୍ଦିରକୁ ।

ଗହ୍ମା ପୂର୍ଣ୍ଣିମାରେ ମହାପ୍ରଭୁଙ୍କର ଚଳନ୍ତି ପ୍ରତିମା ରାଧାକୃଷ୍ଣ ଯୁଗଳ ମୂର୍ତ୍ତି ଝୁଲଣରେ ବସି ଝୁଲଣ ଯାତ୍ରା କରନ୍ତି । କାର୍ତ୍ତିକ ମାସରେ ରାସ ପୂର୍ଣ୍ଣିମା ୭ ଦିନ ଧରି ଭାଗବତ ପାଠ, ସଂକୀର୍ତ୍ତନ, ସାଧୁସନ୍ଥଙ୍କର ସତ୍‌ସଙ୍ଗର ପ୍ରବଚନ, ସୁନାମଧନ୍ୟ ଗାୟକଙ୍କ ଦ୍ୱାରା ଭଜନ ସମାରୋହର ଆୟୋଜନ ସାଙ୍ଗକୁ କିଶୋର କିଶୋରୀଙ୍କୁ ନେଇ ଶିକ୍ଷଣୀୟ ପ୍ରାୟୋଜିତ କାର୍ଯ୍ୟକ୍ରମମାନ ଅନୁଷ୍ଠିତ ହୋଇଥାଏ । ପୂର୍ଣ୍ଣମୀ ଆଗଦିନ ଏକ ବିଶେଷ ମହତ୍ୱପୂର୍ଣ୍ଣ କାର୍ଯ୍ୟକ୍ରମ, ଯାହା ସଂପୂର୍ଣ୍ଣ ରାଧାକୃଷ୍ଣଙ୍କର ଭାବ ରସରେ ଭରା ନାମ ଡାକ ଉତ୍ସବ ସନ୍ଥ ବିଷ୍ଣୁ ଦାସ ବାବା (ଶଙ୍ଖପାରୀ)ଙ୍କ ଦ୍ୱାରା ଅନୁଷ୍ଠିତ ହୋଇଥାଏ । ସେ ଦିନ ପରସ୍ପରର ରାଗ ଅଭିମାନ ଓ ଶତ୍ରୁତାକୁ ଭୁଲି ସମସ୍ତେ କୃଷ୍ଣ ପ୍ରେମରେ ମଜ୍ଜିଯାଇ ଷୋହଳ କୁଞ୍ଜରେ ଭକ୍ତିଭାବର ସହିତ ବସି ନାମଡାକକୁ ଆଗକୁ ଆଗକୁ ବଢ଼ାଇ ଚାଲନ୍ତି । ରାତ୍ର ୩ଟାରେ ନାମ ଡ଼ାକ ଉତ୍ସବର ଉଦ୍‌ଯାପନ କରାଯାଏ । ସମସ୍ତେ ଗାଧୋଇ, ନଦୀରେ ଡଙ୍ଗା ଭସାଇ ତା' ପରେ ପୀଠରେ ଉପସ୍ଥିତ ହୁଅନ୍ତି ମହାପ୍ରଭୁଙ୍କର ପୂର୍ଣ୍ଣାହୂତି ଦର୍ଶନ ନିମନ୍ତେ । ପ୍ରାତଃରେ ସମସ୍ତ ଶ୍ରଦ୍ଧାଳୁଙ୍କ ପାଇଁ ବଡ଼ ଭୋଗ ନୀତିର ବ୍ୟବସ୍ଥା ହୋଇଥାଏ । ପୌଷ ମାସରେ ଏକ ବିଶେଷ ଯଜ୍ଞର ଆୟୋଜନ କରାଯାଇଥାଏ । ଯଜ୍ଞଟି ପୌଷ ପୂର୍ଣ୍ଣିମାରେ ଉଦ୍‌ଯାପନ କରାଯାଇଥାଏ । ଦୋଳ ପୂର୍ଣ୍ଣିମାରେ ଦୋଳ ଉତ୍ସବ ନିମନ୍ତେ ବାବା ମୁକ୍ତେଶ୍ୱରଙ୍କ ପ୍ରାଙ୍ଗଣରେ ମେଳଣ ଯାତ୍ରା ଅନୁଷ୍ଠିତ ହୁଏ । ରାଧାକୃଷ୍ଣଙ୍କ ଚଳନ୍ତି ବିଗ୍ରହ ମକଦ୍ଦମୀଙ୍କ ଦାଣ୍ଡରେ ଭୋଗଖାଇ ଶେଷରେ ଚାଚିରୀ ହୋଇ ଦେଉଳକୁ ବିଜେ କରନ୍ତି ।

ଶ୍ରୀଶ୍ରୀ ଦଧିବାମନ କ୍ଷେତ୍ର
ବ୍ରାହ୍ମଣୀ ଗାଁ ଠାକୁରବାଡ଼ି
ଭାୟା - ଅରେଇ, ଜିଲ୍ଲା - ଯାଜପୁର



# ଲୋକଦେବୀ ବୀରଖମ୍ବ

ଡକ୍ଟର ପ୍ରମୋଦିନୀ ହୋତା

ଆଦିବାସୀ ସଂସ୍କୃତି ଏକ ବହୁବର୍ଣ୍ଣା ବିସ୍ତୃତ କାନ୍‌ଭାସ । ଯାହାକୁ ଅନୁଧ୍ୟାନ କଲେ ଜଣାଯାଏ ଯେ ସାମାଜିକ ସମୂହର ଏବଂ ସଂସ୍କୃତି ବିଶିଷ୍ଟତା ସହିତ ସଂପ୍ରଦାୟ, ଗୋଷ୍ଠୀର ସଭ୍ୟତା, ରୀତିନୀତି, କଳା, ଶିଳ୍ପ, ଦନ୍ତକଥା (କିମ୍ବଦନ୍ତୀ), ପରମ୍ପରା, ଅନ୍ଧ ବିଶ୍ୱାସ ଓତପ୍ରୋତ ଭାବେ ଜଡ଼ିତ । କୋରାପୁଟ ଜିଲ୍ଲାର ବୈପାରୀଗୁଡ଼ା ବ୍ଲକର ଅଧିଷ୍ଠାତ୍ରୀ ଦେବୀ ବୀରଖମ୍ବ ଲୋକଦେବୀ ଭାବେ ପ୍ରସିଦ୍ଧ ଏବଂ କୋରାପୁଟ ଜିଲ୍ଲାର ବିଭିନ୍ନ ଗ୍ରାମଗୁଡ଼ିକରେ ଲୋକଦେବୀ ଭାବେ ପୂଜା ପାଉଛନ୍ତି । ଏଥିରେ ଯେଉଁ ମୂଳ ଚେତନା ଅଛି, ତାହା ଏକ ଧାର୍ମିକ ବିଶ୍ୱାସ, ଯାହା ଅନୁସାରେ ଜଡ଼ ଓ ଭୌତିକ ପଦାର୍ଥ ମଧ୍ୟରେ ଅଲୌକିକ ଶକ୍ତିର ପ୍ରତିଷ୍ଠା ଅଥବା ଜୀବ ଆତ୍ମାରେ ବାସ କରିବା, ଯେତେବେଳେ ଏହି ଜଡ଼ ଏବଂ ଭୌତିକ ପଦାର୍ଥଗୁଡ଼ିକୁ ଏହି ଭାବନା ରଖି ପୂଜା କରାଯାଏ ସେମାନଙ୍କୁ ଦେବ ଦେବୀର ଆଖ୍ୟା ଦିଆଯାଏ । ଲୋକଦେବୀ ହେଉଛନ୍ତି ଲୋକ ପ୍ରକୀର୍ତ୍ତିତା, ମହାଶକ୍ତି ସମ୍ପନ୍ନା । ବିପଦରେ ସାହା ହେବା ପ୍ରତ୍ୟକ୍ଷ ଦେବୀ ଏବଂ ଏହି ଦେବୀଙ୍କ ମନ୍ଦିରକୁ ଅତି ପବିତ୍ର ମନେ କରାଯାଏ । ଆଦିବାସୀ ସଂସ୍କୃତି ଆତ୍ମବତ୍, ସର୍ବ ଭୂତେଷୁ ଓ ବସୁଧୈବ କୁଟୁମ୍ବକମ୍ ନୀତି ଉପରେ ପର୍ଯ୍ୟବସିତ । ଆଦିବାସୀମାନଙ୍କର ବିଶ୍ୱାସ ରୋଗ, ଶୋକ, ବିପଦ, ଆପଦର ସବୁ ସମୟରେ ବୀରଖମ୍ବ ସହାୟ ହୋଇଥାନ୍ତି । ସୁଖ ସମ୍ପଦ, ଶିଶୁର ଜନ୍ମ, ନାମକରଣ, ବିବାହ, ମୃତ୍ୟୁ ଆଦିର ପରବର୍ତ୍ତୀ ସମୟରେ ଲୋକଦେବୀଙ୍କର ବିଶେଷ ଭୂମିକା ରହିଛି ବୋଲି କହିଥାନ୍ତି ।

ବୈପାରୀଗୁଡ଼ାରେ ଆଦିବାସୀ ସଂପ୍ରଦାୟର ଭୂମିଆ, ଗାଦବା, ଭତରା, ପରଜା ବାସ କରିଥାନ୍ତି । ଏମାନଙ୍କର ଲୋକଦେବୀ ବୀରଖମ୍ବ ଅଟନ୍ତି । ମାଲକାନଗିରିରୁ ଚନ୍ଦାହାଣ୍ଡି ପର୍ଯ୍ୟନ୍ତ ସୁଂକିଠାରୁ କୋଟପାଡ଼ ପର୍ଯ୍ୟନ୍ତ ସବୁଠାରେ ଏହି ଲୋକଦେବୀଙ୍କର ପ୍ରାର୍ଥନା ରହିଛି । ବୀରଖମ୍ବ ଯେ କେବଳ କୋରାପୁଟ ଜିଲ୍ଲାର କେତେକ ଅଞ୍ଚଳରେ ପ୍ରତିଷ୍ଠିତ ଦେବୀ ନୁହଁନ୍ତି । ଛତିଶଗଡ଼, ଆନ୍ଧ୍ରପ୍ରଦେଶରେ ମଧ୍ୟ ଏହି ଦେବୀଙ୍କୁ ପୂଜାର୍ଚ୍ଚନା କରାଯାଏ । ବୈପାରୀଗୁଡ଼ାରେ ଦୁଇଟି ପାହାଡ଼ ରହିଛି । ସେହି ପାହାଡ଼ ମଧ୍ୟରୁ ଗୋଟିଏ ପାହାଡ଼ ବୀରଖମ୍ବଙ୍କ ବାସସ୍ଥଳୀ । ଏହି ପାହାଡ଼ରେ ଶାଳ, ପିଆଶାଳ, ଅସନ, କେନ୍ଦୁ, ଅଁଳା ଭଳି ଗଛ ରହିଛି । ପାହାଡ଼ ତଳି ଅଂଚଳରେ ଶିଆଳୀ ଲତାର କୁଞ୍ଜତଳେ ବୀରଖମ୍ବ ପୂଜା ପାଇଥାନ୍ତି । ଛତିଶଗଡ଼ ଏବଂ ଆନ୍ଧ୍ରପ୍ରଦେଶର ଶହ ଶହ ଭକ୍ତ ଆସି ମନସ୍କାମନା ପୂର୍ଣ୍ଣ ପାଇଁ ମା'ଙ୍କ ନିକଟରେ ଶରଣ ପଶିଥାନ୍ତି । ମା'ତାଙ୍କ ପ୍ରାର୍ଥନା ଶୁଣିଥାନ୍ତି ବୋଲି ଲୋକମାନେ ବିଶ୍ୱାସ କରିଥାନ୍ତି । ବୀରଖମ୍ବ ପ୍ରତ୍ୟକ୍ଷ ଦେବୀ ଅଟନ୍ତି । ଲୋକଶ୍ରୁତି ରହିଛି, ବୀରଖମ୍ବ ପୂର୍ବରୁ ମ୍ୟାନାମ୍ କୋଣ୍ଡାରୁ ଆସି ପାହାଡ଼ ଉପରେ ପୂଜା ପାଉଥିଲେ । ପ୍ରଥମେ ବୀରଖମ୍ବଙ୍କ ଉପସ୍ଥିତି ବିଷୟରେ କେହି ଜାଣିନଥିଲେ । ସେତେବେଳେ ଜୟପୁରରେ ସୂର୍ଯ୍ୟବଂଶ ରାଜାମାନେ ଶାସନ କରୁଥିଲେ । ଗାଁର ପିଲାମାନେ ପ୍ରତିଦିନ ଭଳି ଗୋରୁ ପଲ ନେଇ ପାହାଡ଼କୁ ଲାଗି ରହିଥିବା ଜଙ୍ଗଲକୁ ଗାଈ ଚରାଇବାକୁ ଗଲେ । ଗୋରୁ ଗାଈ ଜଙ୍ଗଲରେ ଚରୁଥିଲେ । ଜଗୁଆଳୀ ପିଲାମାନେ ଖୁସିରେ ଜଙ୍ଗଲରେ ଖେଳିଲେ । ସେଦିନର ଆଦିବାସୀ ପିଲାଙ୍କ ଖେଳ ଥିଲା ନିଆରା । ସେମାନଙ୍କ ପୂଜା ଖେଳ ଚାଲିଥାଏ । ପୂଜା ସମୟରେ ବଳି ଦେବା କଥା ଆଦିବାସୀମାନଙ୍କ ପ୍ରଥା ରହିଛି । ତେଣୁ ସେମାନେ ଖେଳରେ ଦେବତାଙ୍କୁ ପୂଜା କରିବା

ସହିତ ଗୋଟିଏ ପିଲାକୁ ପଶୁରୂପେ ବାଛିଲେ । ତାକୁ ମିଛି ମିଛିକା ଗୋଟିଏ ଘାସକୁ ଖଣ୍ଡା କରି ବଳିଦେବା ଖେଳ ଖେଳିଲେ । ଜଙ୍ଗଲରେ ବଢୁଥିବା ଏକ ପ୍ରକାର ଘାସ ଜାତୀୟ ତୃଣର ପତ୍ରକୁ ଖଣ୍ଡା ବା ଅସ୍ତ୍ର ଭାବରେ ସେହି ଗାଈ ଜଗୁଆଳୀ ପିଲାମାନେ ବ୍ୟବହାର କରିଥିଲେ । ଏହି ଘାସ ଜାତୀୟ ତୃଣର ପତ୍ରିଗୁଡ଼ିକ ଟିକିଏ ଧାରୁଆ ଏବଂ ସାଧାରଣତଃ ଦୁଇଫୁଟରୁ ଅଢ଼େଇ ଫୁଟ ପର୍ଯ୍ୟନ୍ତ ଲମ୍ବ ଥାଏ ଏବଂ ଏହା ଦେଖିବାକୁ ସରୁ । ବଳି ପଶୁ ଅଭିନୟ କରୁଥିବା ବାଳକଟି ଆଣ୍ଠୁମାଡ଼ି ବସିଲା, ଆଉ ଜଣେ ବାଳକ ସେହି ଧାରୁଆ ତୃଣକୁ ହାତରେ ଧରି ତା'ର ବେକର ପଛପଟେ ଛୁଆଁଇ ହାଣିବାକୁ ଅଭିନୟ କଲା । କିନ୍ତୁ ଆଶ୍ଚର୍ଯ୍ୟର କଥା ପଶୁ ଅଭିନୟ କରୁଥିବା ବାଳକର ମୁଣ୍ଡ ଏବଂ ଗଣ୍ଡି ସେହି ଘାସର ଧାରୁଆ ପତ୍ରରେ ଅଲଗା ହୋଇଗଲା । ରକ୍ତର ଧାର ଚାରିଆଡ଼େ ଛୁଟିଲା । ଏଭଳି ଅଭାବନୀୟ ଘଟଣା ଦେଖି ସମସ୍ତ ଗାଈ ଜଗୁଆଳୀ ବାଳକମାନେ ଭୟଭୀତ ଆଉ ହତବାକ୍ ହୋଇଗଲେ । ସେମାନେ ଏତେ ପରିମାଣରେ ଭୟଭୀତ ହେଲେ ଯେ ଡରିଯାଇ ଘରେ ପହଞ୍ଚି କେହିହେଲେ ବାପା, ମା'ଙ୍କୁ ଏହି ବିଷୟରେ ଜଣାଇଲେ ନାହିଁ । ବଳି ପଶୁ ହୋଇଥିବା ବାଳକଟି ଘରକୁ ଫେରି ନଥିବା ଯୋଗୁଁ ତା'ର ବାପାମା' ଗାଁ ଲୋକଙ୍କ ସହିତ ପିଲାକୁ ଖୋଜିବାକୁ ବାହାରିଲେ ଜଙ୍ଗଲ ଭିତରକୁ । ସେମାନେ ଜଙ୍ଗଲ ଭିତରେ ପିଲାଟିର ମୁଣ୍ଡ, ଗଣ୍ଡି ଅଲଗା ହୋଇଥିବା ମୃତ ଦେହକୁ ପାଇଥିଲେ । ଅନ୍ୟ ବାଳକମାନଙ୍କୁ ପଚାରିବା ପରେ ଜଙ୍ଗଲରେ ଯାହା ଘଟିଗଲା ସେମାନେ ସତ କଥାସବୁ କହିଥିଲେ । ଏକଥା ଶୁଣି ଗାଁ ଲୋକମାନେ ଆଶ୍ଚର୍ଯ୍ୟ ହୋଇଗଲେ । ଘାସଟି ଯେତେ ଧାରୁଆ ହୋଇଥିଲେ ମଧ୍ୟ ମଣିଷର ମୁଣ୍ଡ ଓ ଗଣ୍ଡିକୁ ଅଲଗା କରି ହାଣି ହେବ ନାହିଁ । ଗାଁରେ ସଭା ବସିଲା । ସମସ୍ତେ ଏକତ୍ରିତ ହୋଇ ଏହା କୌଣସି ଅଲୌକିକ ଦେବୀଙ୍କ ଦ୍ୱାରା ସମ୍ଭବପର ବୋଲି ଅନୁଭବ କଲେ । ତେଣୁ ସମସ୍ତ ଗାଁ ଲୋକମାନେ ଏକତ୍ରିତ ହୋଇ ଏହି ଅଦୃଶ୍ୟ ଶକ୍ତି ଉଦ୍ଦେଶ୍ୟରେ ପ୍ରାର୍ଥନା କଲେ । ସେଦିନ ରାତିରେ ଗାଁର ମୁଖିଆଙ୍କୁ ଦେବୀ ସ୍ୱପ୍ନାଦେଶ ହେଲେ ଯେ ଦେବୀ ସେହି ପାହାଡ଼ର ଶୀର୍ଷଦେଶରେ ଅବସ୍ଥାନ କରୁଛନ୍ତି । ଆଦେଶ ଦେଲେ ଦେବୀଙ୍କୁ ସସମ୍ମାନରେ ପୂଜାର୍ଚ୍ଚନା କରିବା ପାଇଁ ଏବଂ ଗ୍ରାମବାସୀଙ୍କୁ ଆଶ୍ୱାସନା ଦେଲେ ଯେ ପିଲାଟି ବଞ୍ଚିଯିବ । ଗାଁ ଲୋକମାନେ ଦେଖିଲେ ପିଲାଟିର ମୁଣ୍ଡ ଗଣ୍ଡି ଏକାଠି ଯୋଡ଼ି ହୋଇଗଲା । ପିଲାଟି ଜୀବନ ଫେରିପାଇଲା । ପିଲାକୁ ସାଥିରେ ନେଇ ନିଜ ଗାଁକୁ ଗ୍ରାମବାସୀମାନେ ଖୁସି ମନରେ ଫେରିଲେ । ତା'ପରଦିନ ସମସ୍ତେ ଏକତ୍ରିକ ହୋଇ ଦେବୀଙ୍କ ଆସ୍ଥାନ ଖୋଜି ଖୋଜି ପାହାଡ଼ର ଶୀର୍ଷସ୍ଥାନରେ ଦେବୀ ପୀଠ ଦେଖିଲେ । ସେହି ଦିନଠାରୁ ସେଠାରେ ବୀରଖମ୍ବ ଦେବୀଙ୍କର ପୂଜାର୍ଚ୍ଚନା ଆରମ୍ଭ ହେଲା । ଏହି ଘଟଣାର କିଛିଦିନ ପରେ ପୂଜାରୀ ପୂଜାସାରି ଘରକୁ ଫେରିବା ସମୟରେ ପୂଜାରୀର ମନେ ପଡ଼ିଗଲା ସେ ପୂଜାସ୍ଥଳୀରେ ପୂଜା ଢ଼ାଳ ଛାଡ଼ି ଆସିଛନ୍ତି । ବେରୁ, ପ୍ରାଧାନୀ, ପୂଜାରୀ ଏକତ୍ରିତ ହୋଇ ସେହି ପୂଜାସ୍ଥଳୀକୁ ଗଲେ । ସେଠାରେ ଦେଖିଲେ ଯେ ବୀରଖମ୍ବ ଦେବୀ ପ୍ରତ୍ୟକ୍ଷ ରୂପରେ ଉଭା ହୋଇ ଅର୍ପଣ କରାଯାଇଥିବା ଭୋଗ ଏବଂ ବଳିଭୋଗକୁ ଆନନ୍ଦ ମନରେ ଜଣେ ସୁନ୍ଦରୀ ସ୍ତ୍ରୀ ରୂପେ ଆବିର୍ଭାବ ହୋଇ ଖାଉଛନ୍ତି । ପୂଜାରୀ ଓ ଅନ୍ୟମାନେ ଏହି ଦୃଶ୍ୟ ଦେଖି ଆଶ୍ଚର୍ଯ୍ୟ ହୋଇଗଲେ । ଦେବୀ ବୀରଖମ୍ବ ଖାଇବା ଦୃଶ୍ୟ ଦେଖିଥିବା ଯୋଗୁଁ ପୂଜାରୀ ବିରକ୍ତ ପ୍ରକାଶ କରି ଢ଼ାଳକୁ ହାତରେ ଧରି ଫିଙ୍ଗି ଦେଲେ । ସେତେବେଳେ ଶୂନ୍ୟବାଣୀ ହେଲା, ଯେଉଁଠି ଏହି ଢ଼ାଳ ପଡ଼ିବ ଆଜିଠାରୁ ମୋତେ ସେହି ସ୍ଥାନରେ ପୂଜା କରିବ । ଢ଼ାଳଟି ପାହାଡ଼ ଉପରୁ ଗଡ଼ି ଗଡ଼ି ଆସି ଗୋଟିଏ ଶିଆଳି ଲତାକୁଞ୍ଜରେ ଅଟକିଗଲା । ସେହିଦିନଠାରୁ ଆଜି ଯାଏଁ ଦେବୀ ବୀରଖମ୍ବ ସେହି ଶିଆଳି ଲତାକୁଞ୍ଜରେ ହିଁ ପୂଜା ପାଇ ଆସୁଛନ୍ତି ।

ବର୍ଷକରେ ଥରେ ଦଶହରା ପର୍ବ ଆଶ୍ୱିନ ମାସ ଶୁକ୍ଳ ଅଷ୍ଟମୀ ତିଥିରେ ପାହାଡ଼ ଶିଖରେ ରହିଥିବା ମୂଳପୀଠରେ ପୂଜା କରାଯାଇଥାଏ । ଅନ୍ୟ କିମ୍ବଦନ୍ତୀ ଅନୁସାରେ ଥରେ ବୀରଖମ୍ବ ଦେବୀ ସ୍ୱପ୍ନାଦେଶ ହେଲେ ଯେ ଦୁଇଜଣ ଦେବୀ ବୀରାଳି ଘାଟିରେ ଅଛନ୍ତି । ସେମାନେ ହେଲେ ବୀରଳି ଏବଂ ଡଙ୍ଗର ଦେଇ । ସେମାନଙ୍କୁ ଦଶମନ୍ତପୁରକୁ ଆଣି ପୂଜା କରିବ । ଏକଥା ପାତ୍ରେ ବାରନାୟିକେ (ବାରଖଣ୍ଡର ମୁଖିଆ) ରାଜାଙ୍କୁ କହିଲେ,

ଜୟପୁର ମହାରାଜା ରାମଚନ୍ଦ୍ର ଦେବ ଓ ସମସ୍ତ ପାରିଷଦଙ୍କ ସହିତ ମିଶି ବିରାଳୀ ଘାଟିକୁ ଗଲେ, ମନସ୍କାମନା ପୂର୍ବକ ରାଜା ହାତରେ ଧରି ଚାଉଳକୁ ସେହି ସ୍ଥାନରେ ପକାଇବା ପରେ ପ୍ରଚଣ୍ଡ ଶବ୍ଦ ହେଲା ଏବଂ ସେଠାରେ ବିରାଟକାୟ ସପ୍ତଫେଣୀ ନାଗ ସାପ ବାହାରିଲା । ସ୍ଥାନଟି ଅଗରୁ, ଚନ୍ଦନର ସୁବାସିତ ବାସ୍ନାରେ ମହକିଗଲା । ସେଠାରେ ରାଜା ଦେଖିଲେ ବିରାଟକାୟ ଖଣ୍ଡା ଓ ଦୁଇଟି ଖର୍ପର ରହିଛି । ସେହିଦିନଠାରୁ ସେଠାରେ ପୂଜାର୍ଚ୍ଚନା ହେଲା । ତା'ପରେ ଦେବୀ ଦୁଇଜଣଙ୍କୁ ଦଶମନ୍ତପୁରରେ ଆସ୍ଥାନ ବା ମନ୍ଦିର ନିର୍ମାଣ କରି ପୂଜା କଲେ । ରାଜାଶାସନ ସମୟରେ ଦଶହରା ପୂଜା ଦିନ ଆସ୍ଥାନରେ ହେବା ପରେ ଜୟପୁର ଦଶହରା ପଡ଼ିଆକୁ ବୀରଖମ୍ବ ଦେବୀଙ୍କ ଲାଠି ବୈପାରୀଗୁଡ଼ାରୁ ଯାଉଥିଲା । ପୂଜାରୀ ପାତ୍ର, କୋଡ଼ିଏ ଜଣ ପାଇକ ଦେବୀମାନଙ୍କ ଲାଠି ନେଇ ଚାଲି ଚାଲି ଜୟପୁର ଦଶହରା ଉତ୍ସବରେ ଯୋଗ ଦେବାପାଇଁ ଆସୁଥିଲେ । ସମସ୍ତ ଦେବଦେବୀ ଜୟପୁରରେ ଜୟ ନଗରରେ ପହଞ୍ଚିଲା ପରେ ଜୟପୁରର ରାଜ ପରିବାର ମହୁରୀ, ବାଜା ବାଜଣା, ଛତ୍ର ଚାମର ସହିତ ଆସି ଦେବୀମାନଙ୍କୁ ପୂଜାର୍ଚ୍ଚନା କରୁଥିଲେ । ପୂଜାର୍ଚ୍ଚନା ପରେ ଆଡମ୍ବର ସହକାରେ ଛତ୍ର, ଚାମର, ବାଜାବାଜଣା ପଟୁଆରରେ ପାତ୍ର ପୂଜାରୀ, ପ୍ରଧାନୀ, ପାଇକ, ବାରନାୟିକେ ନିଜ ନିଜ ଦେବୀଙ୍କ ଲାଠି ସହିତ ଦଶହରା ପଡ଼ିଆକୁ ଯାଉଥିଲେ । ରାଜା ସମସ୍ତ ଲାଠିଧାରୀମାନଙ୍କୁ ଶାଢ଼ୀ, ରୂପାଟଙ୍କା ଦେଇ ସମ୍ମାନିତ କରୁଥିଲେ । ଦଶହରା ପଡ଼ିଆ ଯିବା ପୂର୍ବରୁ ପୂଜକ କୋଲାବ ନଦୀରେ ଜଳ ଉତ୍ସର୍ଗ କରି ପୂଜା କରୁଥିଲେ ଏବଂ ମହାରାଜ ବିଦାୟ ସମୟରେ ସାଥିରେ ଦୁଇ ହଣ୍ଡା ଖଜା, ଦୁଇଟି ଗାମୁଛା, ଗୋଟିଏ ଛେଳି ଦେଉଥିଲେ । ଅନ୍ୟ ଗ୍ରାମର ଦେବୀମାନେ ଲାଠି ସହିତ ଖୁସି ମନରେ ବୈପାରିଗୁଡ଼ା ବୀରଖମ୍ବ ଲାଠି ସହିତ ଫେରୁଥିଲେ । ବୀରଖମ୍ବ ଦେବୀ ସ୍ତମ୍ଭାକାର ହୋଇଥିବାରୁ ଏହାକୁ ଅନେକ ଚକ୍ର ସୁଦର୍ଶନ କହିଥାନ୍ତି । ଲୋକଦେବୀ ବୀରଖମ୍ବଙ୍କ ଦଶହରା ପର୍ବ ଅନନ୍ୟ । ଆଦିବାସୀମାନେ ନିଜ ଦୁଃଖ ଯନ୍ତ୍ରଣା ଅଭାବକୁ ବୀରଖମ୍ବଙ୍କ ନିକଟରେ ଗୁହାରୀ କଲେ ସେଥିରୁ ମୁକ୍ତି ମିଳିଥାଏ ଏବଂ ଲୋକଦେବୀ ବୀରଖମ୍ବ ସାହସ ଓ ଆଶ୍ୱାସନା ପ୍ରଦାନ କରି ଲୋକଙ୍କ ମନରେ ବିଶ୍ୱାସ ଜନ୍ମାଇଥାନ୍ତି ବୋଲି ଲୋକଙ୍କର ବିଶ୍ୱାସ ରହିଛି । ଦେବୀଙ୍କର ଅଲୌକିକତା ଓ ମହିମା ନିକଟରେ ଭକ୍ତ ପ୍ରଣିପାତ କରି ଦେବୀଙ୍କୁ ଦର୍ଶନ କରି କୃତାର୍ଥ ହୋଇଥାନ୍ତି । ପ୍ରତ୍ୟକ୍ଷ ଦେବୀ ରୂପେ ବୀରଖମ୍ବ ସର୍ବବିଦିତ ଅଟନ୍ତି ।

ପାଇଲସାହି, ଜୟପୁର, ଜିଲ୍ଲା–କୋରାପୁଟ



# ପ୍ରଦୂଷଣ ମୁକ୍ତି ଜାଗତିକ ଶାନ୍ତି

**କାଞ୍ଚ ନାରାୟଣ ମହାନ୍ତି**

ପରିବେଶ ସୁରକ୍ଷା, ଆଧୁନିକ ବିଶ୍ୱ ପାଇଁ ଚିନ୍ତାର କାରଣ ହୋଇଛି । ପୁରାଣ ବର୍ଣ୍ଣିତ କୌରବ ଓ ସଗର ବଂଶ ପରି ଜନସଂଖ୍ୟା ବୃଦ୍ଧି ଫଳରେ ବାସଗୃହ, ବସ୍ତ୍ର, ଖାଦ୍ୟ ପାଇଁ ବିପୁଳ ପୃଥିବୀ ବକ୍ଷକୁ ବିଦୀର୍ଣ୍ଣ କରାଯାଉଛି ।

ବିଜ୍ଞାନ ବଳରେ ଅବରୁଦ୍ଧ କରାଗଲା ପ୍ରକୃତିର ମୁକ୍ତ ଗତିଧାରାକୁ । ମନୋମୟୀ ଧରିତ୍ରୀ ହେଲା ସନ୍ତୁଳିତା । ରୋଷ କଷାୟିତ ଦୃଷ୍ଟିରେ ପ୍ରକୃତି କଲା ବିକ୍ଷୋଭ । ଜଳ, ବାୟୁ, ଆଲୋକ ଏସବୁ ହେଲେ ବିଷମୟ । ବଞ୍ଚି ରହିବାର ସୁନ୍ଦର ଆବେଷ୍ଟନୀ କ୍ରମେ ଆବିଳତାରେ ଭରିଗଲା । ଅଜ୍ଞତା, ଦାୟିତ୍ୱହୀନତା, କୃତ୍ରିମ ଜୀବନଯାପନର ବିଳାସୀମୋହ, ମଣିଷର ଆରୋଗ୍ୟ ଓ ଆୟୁଷ ହରଣ କରିବାରେ ଲାଗିଲା ।

ପ୍ରଦୂଷଣର କାରଣ ଯଦି ଖୋଜାଯାଏ, ତେବେ ଆମେ ହିଁ ସେହି ଭସ୍ମାସୁର । ତେବେ କେଉଁ ସବୁ କାରଣ ପାଇଁ ଆମେ ପ୍ରଦୂଷଣ ରାକ୍ଷସର ଶିକାର ହେଉଛୁ ?

ପରିବହନଜନିତ, ଦ୍ରୁତ ଶିଳ୍ପାୟନ, ଆଣବିକ ପରୀକ୍ଷଣ, ବାଷ୍ପ ଇନ୍ଧନ, ବୈଜ୍ଞାନିକ ଯନ୍ତ୍ରପାତିର ପ୍ରୟୋଗ, ଜଳଜନିତ ସଂକ୍ରମଣ, ଅରଣ୍ୟ ସଂପଦର ଦ୍ରୁତ କ୍ଷୟକ୍ଷତି ଇତ୍ୟାଦି ହେଉଛି ପ୍ରମୁଖ କାରଣ । ଆଜି ପରିବେଶ ଦୂଷିତ ସମସ୍ୟା କେବଳ ସହରାଞ୍ଚଳ ନୁହେଁ, ମଫସଲ ଅଞ୍ଚଳକୁ ମଧ୍ୟ ପ୍ରଭାବିତ କରିଛି । ପ୍ରକୃତିମାତା ଆମ ପାଇଁ ଭୂଗର୍ଭ, ଭୂପୃଷ୍ଠ, ସାଗର ଏବଂ ଆକାଶରେ ମହାମୂଲ୍ୟ ଦ୍ରବ୍ୟ ସାଇତି ରଖିଥିଲେ, କିନ୍ତୁ ଆମେ କଲେ କଅଣ ? ପରିପାକ ପାଇଁ ଆମ ଜାଳେଣି ଭାବରେ ବ୍ୟବହୃତ କାଠ ମଧ୍ୟ ପରିବେଶକୁ ଉଜାଡ଼ିବାର ଉପାଦାନ ହେଲା । ଜଙ୍ଗଲ ଅବକ୍ଷୟ ହେବା ଫଳରେ ବାୟୁମଣ୍ଡଳରେ ଅମ୍ଳଜାନର ପରିମାଣ ହ୍ରାସ ପାଇଲା ଏବଂ ଅଙ୍ଗାରକାମ୍ଳ ବୃଦ୍ଧି ପାଇଲା, ଯାହା କ୍ରମେ ମାନବ ସମାଜକୁ ରକ୍ଷା ପାଇଁ ଭୟାବହ ହୋଇପଡିଲାଣି । ଶିଳ୍ପାୟନ ବିକାଶ ଦ୍ୱାରା ବିବିଧ ରାସାୟନିକ ବିଷାକ୍ତ ବାଷ୍ପ ବାୟୁମଣ୍ଡଳକୁ ପଚମାନ ନର୍କରେ ପରିଣତ କରିଚାଲିଛି । ଅନେକ ସମୟରେ ଅଣୁଅସ୍ତ୍ର ପରୀକ୍ଷା ଓ ଉତ୍କ୍ଷେପଣ ଫଳରେ ବାୟୁମଣ୍ଡଳରେ ଥିବା ଓଜୋନସ୍ତର ସୂର୍ଯ୍ୟରଶ୍ମିରୁ ଅଲଟ୍ରା ଭାଓଲେଟ୍ ରଶ୍ମିକୁ ବିଶୋଷଣ କରିଥାଏ । ଓଜୋନ୍ ସ୍ତରରେ ବାରମ୍ବାର କ୍ଷତ ସୃଷ୍ଟି ହେଲେ ବାୟୁମଣ୍ଡଳ ଉତ୍ତପ୍ତ ହୁଏ । ସେହି ବାଇଗଣି ରଶ୍ମି ପୃଥିବୀ ପୃଷ୍ଠରେ ପଡ଼ି ଜଳ, ବାୟୁ, ଉଦ୍ଭିଦ, ଜୀବଜଗତକୁ ପ୍ରଭାବିତ କରିଥାଏ । ଦ୍ରୁତ ପରିବହନ ବ୍ୟବସ୍ଥା ଦ୍ୱାରା ଯାନବାହନ ଚଳାଚଳ ଆଶାତୀତ ଭାବେ ବଢ଼ିଚାଲିଛି । କୋଟି କୋଟି ସଂଖ୍ୟକ ଗାଡ଼ିର ଧୂଆଁରେ ବାୟୁମଣ୍ଡଳ ବିଷମୟ ହୋଇ ଉଠୁଛି । କାର୍ବନ ମନୋଗ୍ସାଇଡ୍, କାର୍ବନ ଡାଇଅକ୍ସାଇଡ୍, ଆଲୁମିନିୟମ୍ ଅକ୍ସାଇଡ୍, ନାଇଟ୍ରୋଜେନ୍ ଅକ୍ସାଇଡ୍ ଭଳି ଯୌଗିକ ଉପାଦାନ ଓଜୋନ ସ୍ତରକୁ ଧ୍ୱଂସ କରିବାର ପ୍ରମୁଖ କାରଣ ହୋଇଥାଏ ।

ପରିତାପର ବିଷୟ ଆମ ଭାରତବର୍ଷରେ ସଡ଼କ ଦୁର୍ଘଟଣାରେ ସର୍ବାଧିକ ଲୋକ ମୃତ୍ୟୁବରଣ କରିଥାନ୍ତି । ସେହିଭଳି ବିଶ୍ୱପରିବେଶ ଗବେଷଣା ସଂସ୍ଥା 'ଦି ଲନସେଟ୍ କମିସନ୍ ଅନ୍ ପଲ୍ୟୁସନ୍ ଆଣ୍ଡ ହେଲ୍‌ଥ' ଦ୍ୱାରା ପ୍ରକାଶିତ ରିପୋର୍ଟରୁ ଜଣାଯାଏ ଯେ ସାରା ବିଶ୍ୱରେ ବାୟୁମଣ୍ଡଳର ପରିବେଶଜନିତ ଉତ୍କଟ ପ୍ରଭାବରେ ୯୦ଲକ୍ଷ ଲୋକ ଶ୍ୱାସରୁଦ୍ଧ, ମସ୍ତିଷ୍କ ଚଳନ, ହୃଦ୍‌ଘାତ, ଫୁସ୍‌ଫୁସ୍ କ୍ୟାନ୍‌ସର ପ୍ରଭୃତି ରୋଗରେ

ମୃତ୍ୟୁବରଣ କରିଥାନ୍ତି । ଆମ ଦେଶରେ ସର୍ବାପେକ୍ଷା ମୃତ୍ୟୁ ସଂଖ୍ୟା ୨୫ ଲକ୍ଷ ପଚାଶ ହଜାର । ଭାରତ ପଛକୁ ଚୀନ୍‌ରେ ପରିବେଶ ପ୍ରଦୂଷଣଜନିତ ମୃତ୍ୟୁ ସଂଖ୍ୟା ୧୮ ଲକ୍ଷ ।

ଅଧିକ ଅମଳକ୍ଷମ ଫସଲ ପାଇଁ କୃଷି କ୍ଷେତରେ ରାସାୟନିକ ସହ ଉତ୍କଟ କୀଟନାଶକ ଔଷଧ ପ୍ରୟୋଗ କରିବା ଦ୍ୱାରା ହେକ୍ଟର ହେକ୍ଟର ଚାଷଜମିରେ ଉପକାରୀ ଜୀବ ମରିବା, ଅମଳ ହେଉଥିବା ଶସ୍ୟରେ ନ୍ୟୂନତମ ବିଷାକ୍ତ ପ୍ରତିକ୍ରିୟା ଆମ୍ଭମାନଙ୍କର ସ୍ୱାସ୍ଥ୍ୟ ସମସ୍ୟା ସୃଷ୍ଟି କରିଥାଏ । ଖଣିଜ ତୈଳ ଗ୍ୟାସ ଓ ଅଙ୍ଗାର କୋଇଲା ଜାଳେଣିରୁ ନିର୍ଗତ ଅଙ୍ଗାରକାମ୍ଳ ବାଷ୍ପ ବାୟୁମଣ୍ଡଳରୁ ଅମ୍ଳଜାନକୁ ହ୍ରାସ କରି ଅଙ୍ଗାରକାମ୍ଳ ବୃଦ୍ଧି କରିଥାଏ । ଦୁର୍ଭାଗ୍ୟଜନକ ଘଟଣା ଆମ ରାଜଧାନୀ ଦିଲ୍ଲୀରେ ଧୂଆଁ ଓ ଘନ କୁହୁଡି ହେତୁ ଆକାଶ ଓ ଭୂପୃଷ୍ଠକୁ ଦେଖିଲେ ଜନଜୀବନ ଯେ କେତେ ବିପର୍ଯ୍ୟସ୍ତ ହୋଇପଡ଼ିଛି, ତାହା ଜଣାପଡ଼େ । ରେଳ, ଉଡାଜାହାଜ, ଏପରିକି ରାସ୍ତାରେ ଗାଡ଼ି ଚଳାଚଳ ମଧ୍ୟ ଅସ୍ୱାଭାବିକ ହୋଇପଡୁଛି । ଏହାର କାରଣ ସମ୍ପର୍କରେ ଜଣାଯାଏ ଯେ, ଅତିରିକ୍ତ ଯାନବାହାନରୁ ନିର୍ଗତ ବିଷାକ୍ତ ବାଷ୍ପ, କାରଖାନାର ଧୂଆଁ, ଆତସବାଜିର ବହୁ ପରିମାଣରେ ବ୍ୟବହାର, ପଡ଼ୋଶୀ ରାଜ୍ୟରୁ କୋଇଲା ପ୍ଲାଣ୍ଟର ଧୂଆଁ ଓ ଧୂଳି, ଯାହା ଆମ ରାଜଧାନୀ ଆକାଶକୁ ଦିନ ଦିନ ଧରି ଆଚ୍ଛନ୍ନ କରି ସାଧାରଣ ଜୀବନଯାତ୍ରା ବିପର୍ଯ୍ୟସ୍ତ କରି ରଖୁଛି । ବିଶ୍ୱ ସ୍ୱାସ୍ଥ୍ୟ ସଂସ୍ଥା ଦ୍ୱାରା ଆଧାରିତ ପ୍ରଦୂଷଣ ନିରାକରଣ ନିର୍ଦ୍ଦେଶକୁ କେତେକ କ୍ଷେତ୍ରରେ ସଠିକ ଭାବରେ ପାଳନ କରାଯାଉନାହିଁ । କେବଳ ଦୀପାବଳିରେ ଆମ ରାଜଧାନୀ ଦିଲ୍ଲୀରେ ଏକହଜାର କୋଟି ଟଙ୍କାର ବିସ୍ଫୋରକ ଆତସବାଜି ଜାଳି ପରିବେଶକୁ ଅନେକ ପରିମାଣରେ କ୍ଷତି ପହଞ୍ଚୁଛି । ତେବେ ସାରା ବିଶ୍ୱରେ ସମଗ୍ର ବାୟୁମଣ୍ଡଳରେ କେତେ କ୍ଷତି ଘଟୁ ନ ଥିବ ତାହା ଚିନ୍ତା କରିବା କଥା ।

କେବଳ ଦୀପାବଳି ନୁହେଁ ନୂଆବର୍ଷ, ଖ୍ରୀଷ୍ଟମାସ, ନିର୍ବାଚନୀ ବିଜୟ, ଖେଳରେ ବିଜୟ ଓ ରାବଣପୋଡ଼ିରେ ମଧ୍ୟ ବାଣ ଦ୍ୱାରା ଆମେ ଆମ ପରିବେଶକୁ ପ୍ରଦୂଷିତ କରିଥାଉ । ବାଣ ପ୍ରସ୍ତୁତି ପାଇଁ ଯେଉଁ ହାନିକାରକ ଉପାଦାନମାନ ବ୍ୟବହାର ହୋଇଥାଏ, ସେଗୁଡ଼ିକ ହେଲା, ସଲଫର୍ ପାଉଡ଼ର, ଆମୋନିଆ ନାଇଟ୍ରେଟ୍, କାର୍ବେନ୍ ମନୋଗ୍‌ସାଇଡ଼, ନାଇଟ୍ରୋଜେନ ଅକ୍‌ସାଇଡ଼ ଇତ୍ୟାଦି । ଭାରତବର୍ଷରେ ୯୦ଭାଗ ବାଣ ଓ ଦିଆସିଲି ଦକ୍ଷିଣଭାରତର ପ୍ରସିଦ୍ଧ ସ୍ଥାନ ଶିବକାଶୀରେ ତିଆରି ହୋଇଥାଏ । ଏହି ପୁରାତନ ପ୍ରସିଦ୍ଧ ସହର ତାମିଲନାଡୁର 'ବିରୁଦ୍ଧ ନଗର'ରେ ଅବସ୍ଥିତ । ପ୍ରତିବର୍ଷ ପ୍ରାୟ ପାଞ୍ଚ ହଜାର କୋଟି ଟଙ୍କାର ବାଣ ଏହି ସହରରେ ପ୍ରସ୍ତୁତ ହୋଇ ରାଜ୍ୟ ତଥା ରାଜ୍ୟ ବାହାରକୁ ବିକ୍ରୟ ପାଇଁ ପଠାଯାଇଥାଏ । ଖ୍ରୀଷ୍ଟପୂର୍ବ ୨୦୦ମସିହାରୁ ଚୀନ୍ ଦେଶରେ ପ୍ରଥମ ବାଣ ପ୍ରସ୍ତୁତ ଏବଂ ବ୍ୟବହାର କରିବାର ଘଟଣା ପୃଥିବୀ ଇତିହାସରୁ ଦେଖିବାକୁ ମିଳେ । ଆମ ଭାରତବର୍ଷ ବ୍ୟତୀତ ବାହାର ଦେଶମାନଙ୍କରେ ମଧ୍ୟ ବାଣ ଦ୍ୱାରା ପରିବେଶ ନଷ୍ଟ ହେବା ଦେଖାଯାଏ । ସେସବୁ ଦେଶମାନଙ୍କ ମଧ୍ୟରେ ଆୟର୍ଲ୍ୟାଣ୍ଡର ସ୍ୱାଧୀନତା ଦିବସରେ, ୟୁନାଇଟେଡ଼ କିଙ୍ଗଡ଼ମ୍‌ର ବୋନ୍ ଫାଇନ୍ ନାଇଟ୍, ଫ୍ରାନ୍ସର ବସ୍ଥିଲ ଡ଼େ, ସ୍ୱେନିସ ଫଲସ୍, ଶ୍ରୀଲଙ୍କାର ନୂଆବର୍ଷ ସନ୍ଧ୍ୟା, ଚୀନ୍‌ର ନୂଆବର୍ଷର ସାରା ରାତି, ରଙ୍ଗାରଙ୍ଗ ଉତ୍ସବରେ ଆତସବାଜି ପ୍ରଦର୍ଶନ ହୋଇଥାଏ ।

ପୋଟାସିୟମ କ୍ଲୋରାଇଟ୍ ଏବଂ ସୋଡ଼ିୟମ ନାଇଟ୍ରେଟ୍‌କୁ ଏହାର ବିଷାକ୍ତ ପ୍ରତିକ୍ରିୟା ଲାଗି ନିଷିଦ୍ଧ କରାଯାଇଛି । ସର୍ବୋଚ୍ଚ ନ୍ୟାୟାଳୟ ମଧ୍ୟ ବାଣ ବ୍ୟବହାର ଉପରେ ନିଷେଧାଦେଶ ଜାରି କରିଛନ୍ତି । ଅଠର ବର୍ଷରୁ କମ୍ ବର୍ଷର ପିଲା ବାଣ ଫୁଟାଇବା ଆଇନ୍‌ତଃ ମନା । ସ୍ୱାସ୍ଥ୍ୟ ଦୃଷ୍ଟିରୁ ବାଣରୁ ଶବ୍ଦ ପ୍ରଦୂଷଣ ହେବା ସହ କାଶ, ବ୍ରୋଙ୍କାଇଟିସ, ସ୍ନାୟୁ ରୋଗ, ବୋଧଶକ୍ତି ହ୍ରାସ ଇତ୍ୟାଦି ରୋଗ ହେବା ଆଶଙ୍କା ସୃଷ୍ଟି ହୁଏ । ତେଣୁ ବିଶ୍ୱଜନ ହିତ ପାଇଁ – ଉପରୋକ୍ତ ବିପତ୍ତି ପ୍ରତି ସଚେତନ ହେବା ଜରୁରୀ । ମାରାତ୍ମକ ରୋଗ, ଅଶାନ୍ତି, ଜୀବନହାନୀରୁ ବର୍ତ୍ତିବା ପାଇଁ କେବଳ ଆତ୍ମ ଜ୍ୟୋତି ବିକଶିତ କରନ୍ତୁ ଏବଂ ଏ ସୁନ୍ଦର ବିଶ୍ୱକୁ ଆସନ୍ନ ବିପଦରୁ ରକ୍ଷା କରିବାକୁ ଆଜି ହିଁ ଆଗେଇ ଆସନ୍ତୁ ଓ ଶପଥ ନିଅନ୍ତୁ । ବ୍ୟକ୍ତି ଜାଗିଲେ, ଦେଶ ଜାଗିବ ।

ଆଶ୍ରମ, ଶ୍ରୀବିହାର, କଟକ–୮

# ହିମାଳୟର ହିମଛାୟା ତଳେ ବଦ୍ରିନାଥ

**ବାଳକାନନ୍ଦ ଦାସ**

ମୁନିଋଷିମାନଙ୍କର ତପୋଭୂମି ଭାରତବର୍ଷର ଧର୍ମ ଓ ଦାର୍ଶନିକ ତତ୍ତ୍ୱ ସମୂହ ଉଦ୍ବେଳିତ ତରଙ୍ଗ ସମ ସମଗ୍ର ବିଶ୍ୱକୁ ପ୍ଲାବିତ କରିଛି । ଏହି ସୁଜଳା ସୁଫଳା ସ୍ୱର୍ଣ୍ଣପ୍ରସୂ ଭାରତବର୍ଷର ଧାର୍ମିକ ଚିନ୍ତାଧାରା ବିଶ୍ୱର ପ୍ରାଚୀନ ଧର୍ମ ଧ୍ୱଜାକୁ ଉଡ୍ଡୀୟମାନ କରିଛି । ସତ୍ୟ ସନାତନ ଧର୍ମ ହିଁ ହେଉଛି ହିମାଳୟରୁ କନ୍ୟାକୁମାରୀ ପର୍ଯ୍ୟନ୍ତ ବିସ୍ତୃତ ଭାରତବର୍ଷର ପ୍ରାଣକେନ୍ଦ୍ର ତଥା ମସ୍ତକ ମଣି । ଏହାର ସମସ୍ତ ବାତାବରଣ ଆଧ୍ୟାତ୍ମିକତାରେ ସ୍ପନ୍ଦିତ । ତେଣୁ ଧର୍ମ, ନୀତିଶାସ୍ତ୍ର ତଥା ଧର୍ମୀୟ ପୀଠରେ ପରିପୂର୍ଣ୍ଣ ଆମ ପୁଣ୍ୟଭୂମି ଭାରତମାତାର ମୁକୁଟସମ ଉଭା ହୋଇଥିବା ହିମାଳୟର କୋଳରେ ଅବସ୍ଥିତ ଥିବା ବଦ୍ରିକା ଆଶ୍ରମ ଏକ ପୁରାଣ ପ୍ରସିଦ୍ଧ ଆଶ୍ରମ । ଏହି ଆମ ହିନ୍ଦୁମାନଙ୍କର ଚାରିଧାମ ମଧ୍ୟରୁ ପ୍ରମୁଖ ଧାମ ଅଟେ । ଏହା ଭଗବାନ ବିଷ୍ଣୁଙ୍କର ନିବାସ ସ୍ଥାନ ଏବଂ ହିନ୍ଦୁ ଧର୍ମର ଚାରିଧାମ (ଦ୍ୱାରକା, ବଦ୍ରିନାଥ ଧାମ, ଜଗନ୍ନାଥ ଧାମ ପୁରୀ ଏବଂ ରାମେଶ୍ୱରମ୍) ମଧ୍ୟରୁ ସବୁଠାରୁ ମହତ୍ତ୍ୱପୂର୍ଣ୍ଣ ଅଟେ । ହିନ୍ଦୁ ଧର୍ମର ବୈଷ୍ଣବ ସଂପ୍ରଦାୟମାନଙ୍କର ୧୦୮ ପବିତ୍ର ସ୍ଥାନମାନଙ୍କ ମଧ୍ୟରେ ଅନ୍ୟତମ ।

କିମ୍ବଦନ୍ତୀ ଅନୁଯାୟୀ କଳିଯୁଗର ଆଗମନ ପୂର୍ବରୁ ଭଗବାନ ଶ୍ରୀକୃଷ୍ଣ ତାଙ୍କର ପ୍ରିୟ ଶିଷ୍ୟ ଉଦ୍ଧବଙ୍କୁ ପଠାଇଛନ୍ତି ବଦ୍ରିକାଶ୍ରମକୁ । କାରଣ ଭଗବାନଙ୍କ ସ୍ୱ ଧାମ ପ୍ରତ୍ୟାଗମନ ପରେ ପରେ କେବଳ ତାଙ୍କ ପ୍ରାସାଦ ବ୍ୟତୀତ ସମ୍ପୂର୍ଣ୍ଣ ଦ୍ୱାରକା ନଗରୀ ଜଳମଗ୍ନ ହୋଇଯିବ ଏବଂ ଘୋର କଳିଯୁଗ ପ୍ରବେଶ କରିବ ବୋଲି କଳି ଆଗମନରେ । ଲୋକେ କୌଣସି ନୀତିନିୟମରେ ପରିଚାଳିତ ହେବେ ନାହିଁ । ଧର୍ମକର୍ମ ସବୁ ଲୋପ ପାଇଯିବ ।

ଏଣୁ ହେ ଉଦ୍ଧବ ! ତୁମେ ତୁମର ସମସ୍ତ ଦାରା ପରିବାରକୁ ଛାଡି ବଦ୍ରିକାଶ୍ରମକୁ ଯାଇ ସେଠାରେ ବାସ କରି ମୋ ଭାବରେ ଚିତ୍ତ ଦିଅ । ଫଳରେ ତୁମର ମୁକ୍ତି ଅନିର୍ବାର୍ଯ୍ୟ ବୋଲି ଭଗବାନ ଶ୍ରୀମୁଖରେ ପ୍ରକାଶ କରିଛନ୍ତି ।

ଭଗବାନଙ୍କ ଉକ୍ତି ଏଠାରେ ଭାଗବତରୁ ଉଦ୍ଧାର କରାଯାଇପାରେ, ଯଥା-

'ବଦରି ନାରାୟଣାଶ୍ରମେ କାନନେ ଯାଅ ଯଥାକ୍ରମେ ।
ମୋର ଚରଣ ଜଳେ ଯାଇ ଶୀଘ୍ରେ ପଖାଳ ତୋର ଦେହୀ ।
ଆନନ୍ଦେ ସ୍ନାନ ପାନ କର ସକଳ ପାପର ନିସ୍ତର ।
ତ୍ରିଗୁଣ ତେଜି ଅନ୍ତକାଳେ ପଶିବୁ ମୋ ପାଦ କମଳେ
ଏବେ ତୁ ଶୀଘ୍ର ଚଳ ଏକା ଆଶ୍ରମ ନାମେ ବଦରିକା' ।

ବହୁ ଦିନରୁ ବଦ୍ରିକାଶ୍ରମ ଦର୍ଶନ ପାଇଁ ମୋର ମନ ମଧ୍ୟରେ ଥିବା ଅଭିଳାଷ (ତା ୨୭.୫.୨୦୧୮ ରିଖ) ପବିତ୍ର ପ୍ରଭାତରେ ସଫଳ ହେଲା । ଆଶ୍ରମର ପାବନ ପରିସରରେ ପାଦ ରଖିଲା ପରଠାରୁ ମନ ମଧ୍ୟରେ ଅପରିସୀମ ଆନନ୍ଦ ଲହରୀ ଖେଳିଗଲା । ପୁରାଣ ପ୍ରସିଦ୍ଧ ଏହି ଆଶ୍ରମ କୋଳରେ କିପରି ପାଞ୍ଚଦିନ ବିତିଗଲା, ତାହା ଜଣାପଡିଲା ନାହିଁ । ଆଶ୍ରମର ପାଣି, ପବନ, ଗୋଡି, ମାଟି ସବୁ ହିଁ ପବିତ୍ର । ଅନେକ କିମ୍ବଦନ୍ତୀ ଓ ପୌରାଣିକ କଥାବସ୍ତୁ ଉପରେ ଆଧାରିତ ଏହାର ପରିବେଶ । ଏହାର ସଂଦର୍ଶନରେ ଆପଣାଛାଏଁ ଭଗବାନଙ୍କୁ କୃତଜ୍ଞତା ଜଣାଇବା ପାଇଁ ମୋର ମନ ମଧ୍ୟରେ ଉଦ୍‌ବେଗ ସୃଷ୍ଟି ହେଲା । ତା ୨.୬.୧୮ ରିଖରେ ଏହି ତପୋଭୂମି ଛାଡି ଆସିବାକୁ ହେଲା । ହେଲେ ମନ ମଧ୍ୟରେ ବିଗତ ପାଞ୍ଚଦିନର ଅଭୁଲା ସ୍ମୃତି ସବୁଦିନ ପାଇଁ ଆଙ୍କି ହୋଇଗଲା ।

ଏହି ସ୍ଥାନରେ ପଦାର୍ପଣ ପରେ ପରେ ସର୍ବାଙ୍ଗ ଥରି ଉଠିଲା । ଯାହା ବିଷୟରେ ଶୁଣିଥିଲି ଏବଂ ପଢିଥିଲି ସେଠି ସୌଭାଗ୍ୟବଶତଃ ସ୍ୱଶରୀରରେ ଆଜି ପଦାର୍ପଣ କରିପାରିଲି ।

ଧନ୍ୟ ସେ ସାଧୁ ସନ୍ଥମାନେ, ଧନ୍ୟ ତାଙ୍କର କଠୋର ତପୋସାଧନା ଏବଂ ଧନ୍ୟ ତାଙ୍କର ଈଶ୍ୱର ଭକ୍ତି । କାରଣ ହିମାଳୟର ଏହି ହିମ ପ୍ରବାହରେ ଚଳପ୍ରଚଳ ଯେ କେତେ କଷ୍ଟସାଧ୍ୟ, ତାହା ଆଜି ମୁଁ ବେଶ୍ ଭଲଭାବେ ଅନୁଭବ କରିପାରୁଛି । ଏଠାରେ ଗୋଟିଏ ଦିନ କାଟିବା ମଧ୍ୟ ଆମ ପାଇଁ କଷ୍ଟସାଧ୍ୟ ହୋଇଯାଇଥିଲା, କିନ୍ତୁ ପରବର୍ତ୍ତୀ ମୁହୂର୍ତ୍ତରେ ମନ ଅତ୍ୟନ୍ତ ଆନନ୍ଦିତ ହୋଇଯାଇଥିଲା ବଦ୍ରିକା ପ୍ରଭୁଙ୍କ ଦର୍ଶନରେ । ପ୍ରଭୁ ଅବସ୍ଥାନ କରିଥିବା ସ୍ଥାନଟି ଅତ୍ୟନ୍ତ ମନୋରମ, ଗିରି କନ୍ଦର, ବନ ଉପବନରେ ପରିପୂର୍ଣ୍ଣ ଜାଗାଟି ସେ । ଚାରିକଡ ପାହାଡ ପୂର୍ଣ୍ଣ । ନର ଓ ନାରାୟଣ ପର୍ବତ ଘାଟର ମଧ୍ୟସ୍ଥଳରେ ବିରାଜମାନ ପ୍ରଭୁ 'ବଦ୍ରି ବିଶାଳ' ଭଗବାନ । ଯାହାଙ୍କର ସମ୍ମୁଖରେ ଅଳକାନନ୍ଦା ନଦୀ ପ୍ରବାହିତ ହୋଇଛି ଏବଂ ମନ୍ଦିରର ପଶ୍ଚାତ୍‌ଭାଗରେ ନୀଳକଣ୍ଠ ପର୍ବତ ଅବସ୍ଥିତ । ଏହା କୁହାଯାଏ ଯେ ବଦ୍ରିନାଥ କ୍ଷେତ୍ରରେ ବହରି ଜଙ୍ଗଲ ଅର୍ଥାତ୍ ବରକୋଳି ଗଛର ବଣ ଥିଲା । ତେଣୁ ଏହି କ୍ଷେତ୍ରରେ ଅବସ୍ଥିତ ବିଷ୍ଣୁଙ୍କ ମନ୍ଦିରକୁ ବଦ୍ରିନାଥ ମନ୍ଦିର କୁହାଯାଏ । ବଦ୍ରିନାଥ କ୍ଷେତ୍ର ଭଗବାନ ବିଷ୍ଣୁଙ୍କୁ ସମର୍ପଣ ହୋଇଛି । ଛୋଟିଆ ମନ୍ଦିର ହେଲେ ମଧ୍ୟ ଏହାର ଭକ୍ତିଭରା ପରିବେଶ ଅବର୍ଣ୍ଣନୀୟ । ସେହିଜାଗାରେ ପହଞ୍ଚିବା ପାଇଁ ଲମ୍ବିଥିଲା ଏକ ସର୍ପିଳ ରାସ୍ତା । ସାପ ପରି ଅଙ୍କେଇ ବଙ୍କେଇ ହୋଇ ଲମ୍ବି ଥିଲା ରାସ୍ତାଟି । ଯାତ୍ରା ସମୟରେ ମଝିରେ ମଝିରେ ପଡିଯିବାର ଭୟ ମଧ୍ୟ ମନ ମଧ୍ୟରେ ସୃଷ୍ଟି ହେଉଥାଏ । ପରିଶେଷରେ ପ୍ରଭୁଙ୍କ ନିକଟରେ ଆମେ ପହଁଚିବାରେ ସମର୍ଥ ହୋଇଥିଲୁ ।

ଭଗବାନ ବଦ୍ରିଙ୍କ ବିଶାଳ ମନ୍ଦିର ଉପରେ ସ୍ୱର୍ଣ୍ଣଆବୃତ୍ତ କଳସ ସ୍ଥାପିତ ହୋଇଛି । ଏହାର ଗର୍ଭ ଗୃହରେ ମୁଖ୍ୟମୂର୍ତ୍ତି ବିଦ୍ୟମାନ, ଯାହାକି ୧ ମିଟର ଉଚ୍ଚ କଳାପଥର (ଶାଳଗ୍ରାମ)ର ମୂର୍ତ୍ତି । ମସ୍ତକରେ ହୀରାର ମୁକୁଟ ଓ ପଦ୍ମାସନାବସ୍ଥାରେ ଧ୍ୟାନମଗ୍ନ ରୂପେ ଦୃଶ୍ୟମାନ । ମୁଖ୍ୟମୂର୍ତ୍ତି ବ୍ୟତୀତ ଚାରିପଟେ ଆଉ ୧୫ଟି ମୂର୍ତ୍ତି ପୂଜା ପାଆନ୍ତି, ଯଥା: ନର ନାରାୟଣ, ନୃସିଂହ, ଦେବୀ ଲକ୍ଷ୍ମୀ, ନାରଦ, ଗଣେଷ, କୁବେର ଇତ୍ୟାଦି । ଏହି ମନ୍ଦିର ତିନିଭାଗରେ ବିଭକ୍ତ, ଯଥା: ଗର୍ଭଗୃହ, ଦର୍ଶନ ମଣ୍ଡପ ଓ ସଭାଗୃହ ।

କୁହାଯାଏ, ଭଗବାନ ବିଷ୍ଣୁ ହିମାଳୟର ଏହି ଭୂମି ଉପରେ ବସି ପଶ୍ଚାତ୍ତାପ କରିବା ପାଇଁ କଠୋର ତପୋସାଧନା କରିଥିଲେ । ତାହା ହିଁ ଥିଲା ଏହି ବଦ୍ରିନାଥ ସ୍ଥାନ । ତେଣୁ ମନ୍ଦିରରେ ବିଦ୍ୟମାନ ମୂର୍ତ୍ତିଟି ମଧ୍ୟ ସେହିରୂପେ ପଦ୍ମାସନାବସ୍ଥାରେ ଧ୍ୟାନମଗ୍ନ ରୂପେ ବିରାଜିତ । ଏହା ଆଜି ଧରିତ୍ରୀର ବୈକୁଣ୍ଠ ରୂପେ ଅନୁଭବ୍ୟ । ତେଣୁ ପ୍ରଭୁଙ୍କ ଦର୍ଶନରେ ମୁଁ ଏତେ ବିମୁଗ୍ଧ ଓ ଭାବବିହ୍ୱଳ ହୋଇଗଲି ଯେ ତାହା ବର୍ଣ୍ଣନା କରିପାରୁନାହିଁ । ମୋ ହୃଦୟ କନ୍ଦରରୁ ବୋହି ଆସିଲା ଏ ଭାବ–

ତୁମେ ପ୍ରଭୁ ବଦ୍ରିନାଥ ତୁମେ ଜଗନ୍ନାଥ
ମହିମା ଅପାର ପ୍ରଭୁ ବୈକୁଣ୍ଠ ନାଥ
ହିମାଳୟରେ ରହିଲ ହିମଗିରି ମଧ୍ୟେ
ତପ ସାଧନାରେ ମନ ଅବିରତ ଲାଗେ
ଉଦ୍ଧବ ନାରଦ ରହିଛନ୍ତି ତୁମ ସାଥେ
ତୁମ ନାମ ଗାଉ ଗାଉ ଯାଉ ଏ ଜୀବନ
ଅନାଦି ମଣ୍ଡଳେ ଲୀନ ହେଉ ମୋହ ମନ
ଶ୍ରୀଚରଣ ତଳେ ଲୋଟି ଯାଉ ମୋର ମାଥ ।

ଶ୍ରୀ ବଦ୍ରି ବିଶାଳ ଭଗବାନ କି– ଜୟ ।

ଭଗବାନଙ୍କ ପାଖରେ ନାରଦ ଉଦ୍ଧବ ବିଦ୍ୟମାନ ଅଛନ୍ତି । ଏହା ବ୍ୟତୀତ ଏହି କ୍ଷେତ୍ରର ଏକ ମହାନ ଆଶ୍ଚର୍ଯ୍ୟ ବସ୍ତୁ ହେଉଛି ତପ୍ତକୁଣ୍ଡ ବା ନାରଦ କୁଣ୍ଡ । ମନ୍ଦିର ଦର୍ଶନ କରିବା ପୂର୍ବରୁ ତୀର୍ଥଯାତ୍ରୀ ତପ୍ତକୁଣ୍ଡର ପବିତ୍ର ଜଳରେ ସ୍ନାନ କରିଥାନ୍ତି । ଏହି କୁଣ୍ଡର ଗରମ ଝରଣା ଅଳକାନନ୍ଦା ନଦୀକୂଳ ନିକଟରେ ପ୍ରବାହିତ । ତୀର୍ଥଯାତ୍ରୀମାନେ ଏହାର ତଟପ୍ରଦେଶରେ ପୂର୍ବପୁରୁଷମାନଙ୍କୁ ପିଣ୍ଡଦାନ, ତିଳତର୍ପଣ, ଶ୍ରାଦ୍ଧ ଇତ୍ୟାଦି କରିଥାନ୍ତି । ଗୋଟେ ପଟେ ତପ୍ତକୁଣ୍ଡର ଗରମ ଉତ୍ତପ୍ତ ପାଣି ଓ ଅନ୍ୟ ପଟେ ଅଳକାନନ୍ଦା ନଦୀର ବରଫ ଭଳି ଥଣ୍ଡା ପାଣି ଭଗବାନ ବିଷ୍ଣୁଙ୍କ ଦ୍ୱାରା ସୃଷ୍ଟିର ଏକ ବିଚିତ୍ର ଘଟଣା ।

ଦୁଇ ତିନି କିଲୋମିଟର ଦୂରରେ ପବିତ୍ର ସରସ୍ୱତୀ ନଦୀ ପ୍ରବାହିତ । ଯାହା କୂଳରେ ଅତି ପ୍ରାଚୀନ ଗୁମ୍ଫା ବେଦବ୍ୟାସ

ଗୁମ୍ଫା ଓ ଗଣେଷ ଗୁମ୍ଫା ଅବସ୍ଥିତ । ଏହାର ତଟ ପ୍ରଦେଶରେ ବସି ଦ୍ୱୀପାୟନ ବ୍ୟାସ ମହାଭାରତ, ଭାଗବତ ଓ ବେଦର ରଚନାମାନ କରିଥିଲେ ଓ ଶ୍ରୀ ଗଣେଷ ଭଗବାନ ତାହାକୁ ଏଠାରେ ବସି ଲେଖିଥିଲେ । ଆଉ ଏକ କିମ୍ୱଦନ୍ତୀ ମଧ୍ୟ ଏଠାରେ ଶୁଣିବାକୁ ମିଳେ ଯେ ମହର୍ଷି ବେଦବ୍ୟାସଙ୍କ ମହାଭାରତ କାବ୍ୟ ରଚନା ସମୟରେ ସରସ୍ୱତୀ ନଦୀର ପ୍ରଖର ସ୍ରୋତର ଶବ୍ଦ ତାଙ୍କ ରଚନାରେ ବାଧା ସୃଷ୍ଟି କରୁଥିଲା, ଯଦ୍ୱାରାକି ଋଷି ବେଦବ୍ୟାସ କ୍ରୋଧାନ୍ୱିତ ହୋଇ ସରସ୍ୱତୀ ନଦୀକୁ ଲୀନ ହୋଇଯିବା ପାଇଁ ଅଭିଶାପ ପ୍ରଦାନ କରିଥିଲେ ଏବଂ ଆଜି ମଧ୍ୟ ଯେଉଁ ସରସ୍ୱତୀ ନଦୀ ଦୃଶ୍ୟମାନ ହୁଏ, ତାହା କିଛି ବାଟ ଯାଇ ନିଜର ଅସ୍ତିତ୍ୱ ହରାଇ ଅଳକାନନ୍ଦା ନଦୀ ରୂପେ ପରିଚିତ ହୋଇଛି । ବଦ୍ରିନାଥ କ୍ଷେତ୍ରରେ ଭୀମ ପୋଲର ନିଦର୍ଶନ ମଧ୍ୟ ମିଳେ । କୁହାଯାଏ, ପାଣ୍ଡବମାନଙ୍କ ସହିତ ସ୍ୱର୍ଗାରୋହଣ ସମୟରେ ଏହି ଜାଗାରେ ପ୍ରଖର ଝରଣା ସ୍ରୋତକୁ ଦ୍ରୌପଦୀ ଅତିକ୍ରମ କରିପାରିନଥିଲେ ତେଣୁ ପାଣ୍ଡବମାନଙ୍କ ମଧ୍ୟରୁ ସବୁଠାରୁ ପରାକ୍ରମଶାଳୀ ଭୀମ ଏକ ବିଶାଳକାୟ ପ୍ରସ୍ତର ଆଣି ଝରଣା ଉପରେ ରଖିଦେଇଥିଲେ ଏବଂ ଦ୍ରୌପଦୀ ତାହାକୁ ସହଜରେ ଅତିକ୍ରମ କରିଯାଇଥିଲେ । ତାହା ଆଜି ଭୀମପୋଲ ରୂପେ ଦୃଶ୍ୟମାନ ହୁଏ ।

**ଘଣ୍ଟକର୍ଣ୍ଣ:** କିମ୍ୱଦନ୍ତୀ ଅନୁଯାୟୀ ଘଣ୍ଟକର୍ଣ୍ଣ ନାମକ ଅସୁର ସେଠାରେ ନିବାସ କରୁଥିଲା । ସେ ପରମ ଶୈବଭକ୍ତ ଥିଲା । ପ୍ରତ୍ୟେକ ଦିନ ଦୁଇଟି ମଣିଷକୁ ମାରି ଗୋଟିଏ ଭଗବାନ ଶିବଙ୍କୁ ସମର୍ପଣ କରୁଥିଲା ଓ ଅନ୍ୟଟିକୁ ସେ ନିଜେ ଖାଉଥିଲା । ବିଷ୍ଣୁ ଭଗବାନ ତଥା ନାରାୟଣ, ରାମକୃଷ୍ଣଙ୍କ ପ୍ରତି ତା'ର ବୈର ଭାବ ଥିଲା । ଏକଦା ଭଗବାନ ଶଙ୍କର ତା'ର ଭକ୍ତିରେ ତୃପ୍ତ ହୋଇ ତାକୁ ବର ପ୍ରଦାନ କରିବାକୁ ଇଚ୍ଛା କଲେ । ଫଳସ୍ୱରୂପ ଘଣ୍ଟକର୍ଣ୍ଣ ମୁକ୍ତିଲାଭ ପାଇଁ ଇଚ୍ଛା ପ୍ରକାଶ କଲା । ହେଲେ ମୁକ୍ତି ମୋ ହାତରେ ନାହିଁ ବୋଲି କହି ପ୍ରଭୁ ଶଙ୍କର ଭଗବାନ ଶ୍ରୀକୃଷ୍ଣଙ୍କ ଶରଣ ନେବାକୁ ଆଜ୍ଞା ଦେଲେ ଏବଂ କହିଲେ ସେ ହିଁ ମୁକ୍ତି ପ୍ରଦାନ କରିବେ । କାରଣ ସେହିଁ ମୁକ୍ତିଦାତା । ତତ୍ପରେ ଘଣ୍ଟକର୍ଣ୍ଣ ଦ୍ୱାରକା ଯାତ୍ରା କଲା । ଭଗବାନ ଶ୍ରୀକୃଷ୍ଣଙ୍କ ଦର୍ଶନ ଲାଭ ପରେ ବରପ୍ରାପ୍ତ ହେଲା ଯେ ଭବିଷ୍ୟତରେ ହିମାଳୟ ପର୍ବତର ଏହି ସ୍ଥାନଟି ଏକ ତୀର୍ଥସ୍ଥାନ ରୂପେ ପରିଣତ ହେବ ଓ ଭଗବାନ ନାରାୟଣ ସେଠାରେ ମୁଖ୍ୟ ଦେବତା ଓ ଘଣ୍ଟକର୍ଣ୍ଣ ସେଠାରେ ପାର୍ଶ୍ୱଦେବତା ଭାବେ ପୂଜା ପାଇବେ । ସେଠାରେ ରହିବାକୁ ହେଲେ ଘଣ୍ଟକର୍ଣ୍ଣର ଅନୁମତି ହିଁ ଲୋଡା । ଯେଉଁ ମସ୍ତକଟି ମନ୍ଦିରରେ ଦେଖାଯାଉଛି, ତାହା ହେଉଛି ଘଣ୍ଟକର୍ଣ୍ଣର ମସ୍ତକ ।

ଲୋକ ବିଶ୍ୱାସ ଅନୁସାରେ, ମନ୍ଦିର ସ୍ଥାପନା ବୈଦିକ ଯୁଗର ପୂର୍ବରୁ ହୋଇଛି, କିନ୍ତୁ ପରବର୍ତ୍ତୀ ମୁହୂର୍ତ୍ତରେ ହିନ୍ଦୁମାନଙ୍କର ଆଦରଣୀୟ ଆଦିଗୁରୁ ଶଙ୍କରାଚାର୍ଯ୍ୟଙ୍କ ଦ୍ୱାରା ଅଷ୍ଟମ ଶତାବ୍ଦୀରେ ଏହି ସ୍ଥାନଟି ଏକ ମହତ୍ତ୍ୱପୂର୍ଣ୍ଣ ତୀର୍ଥସ୍ଥାନ ରୂପେ ପୁନଃ ପ୍ରତିଷ୍ଠା କରାଯାଇଥିଲା । ଏହା କୁହାଯାଏ ଯେ ଭଗବାନ ବିଷ୍ଣୁ ଗୁରୁ ଶଙ୍କରାଚାର୍ଯ୍ୟଙ୍କୁ ସ୍ୱପ୍ନାଦେଶ କରିଥିଲେ ତାଙ୍କ ମୂର୍ତ୍ତିକୁ ଅଳକାନନ୍ଦା ନଦୀରୁ ଆଣି ଆଉଥରେ ସ୍ଥାପନା କରିବାକୁ । ଠିକ୍ ତା' ପରଦିନ ଶଙ୍କରାଚାର୍ଯ୍ୟଙ୍କୁ ସେହି ମୂର୍ତ୍ତି ଅଳକାନନ୍ଦା ନଦୀରୁ ପ୍ରାପ୍ତ ହୋଇଥିଲା ଏବଂ ସେ ତାକୁ ତପ୍ତକୁଣ୍ଡ ନିକଟସ୍ଥ ଗୁମ୍ଫାରେ ସ୍ଥାପନା କରିଥିଲେ । ତା'ର ପରବର୍ତ୍ତୀ ମୁହୂର୍ତ୍ତରେ ଗଡବାଲ୍ ରାଜାଙ୍କ ଦ୍ୱାରା ଉକ୍ତ ମୂର୍ତ୍ତିକୁ ମନ୍ଦିରରେ ସ୍ଥାପନା କରାଗଲା ।

ବଦ୍ରିନାଥଙ୍କ ମନ୍ଦିର ବର୍ଷରେ ଛ'ମାସ, ପବିତ୍ର ଦୀପାବଳିରୁ ଚୈତ୍ର ପୂର୍ଣ୍ଣିମା ପର୍ଯ୍ୟନ୍ତ ବରଫପାତ ଯୋଗୁଁ ବନ୍ଦ ରୁହେ । ସେହି ସମୟରେ ଭଗବାନଙ୍କ ଚଳନ୍ତି ପ୍ରତିମାକୁ ଜ୍ୟୋତି ମଠକୁ ନେଇଯାଆନ୍ତି, ଯାହାକି ହିମାଳୟ ପର୍ବତର ନନ୍ଦାଦେବୀ ଜୀବମଣ୍ଡଳ ଆରକ୍ଷିତ କ୍ଷେତ୍ରରେ ଅବସ୍ଥିତ ।

ଭଗବାନ ଶିବଙ୍କଠାରୁ ନରନାରାୟଣ, ବିଷ୍ଣୁଙ୍କଠାରୁ ବେଦବ୍ୟାସ, ଗଣେଷଙ୍କଠାରୁ ପାଣ୍ଡବଗଣ ଏହି ପୁଣ୍ୟଭୂମିରେ, ପଦାର୍ପଣ କରି ସମସ୍ତେ ନିଜ ନିଜର ଅସ୍ତିତ୍ୱ ଓ ମହତ୍ତ୍ୱକୁ ପ୍ରଦର୍ଶିତ କରିଛନ୍ତି । ପ୍ରକୃତରେ ବଦ୍ରିନାଥ ଧାମର ଦର୍ଶନ ବିନା ଚାରିଧାମର ଯାତ୍ରା ଅସମ୍ପୂର୍ଣ୍ଣ ଅଟେ ।

ପରିଶେଷରେ ଜୁନ୍ ମାସ ପ୍ରଥମ ଦିନରୁ ପାଞ୍ଚ ତାରିଖ ପର୍ଯ୍ୟନ୍ତ ବାବାଜୀ ସତ୍ୟାନନ୍ଦ ଦାସଙ୍କ ପ୍ରବଚନ ଓ ରାଧା ବଲ୍ଲଭ ମଠର ମୁଖ୍ୟ ମହନ୍ତ ରାମକୃଷ୍ଣ ଦାସଙ୍କ ପୌରୋହିତ୍ୟରେ 'ଶ୍ରୀଜଗନ୍ନାଥ' ପାଞ୍ଚରାତ୍ର ସେଠାରେ ଅନୁଷ୍ଠିତ ହୋଇଥିଲା ।

ସେହି ପୁଣ୍ୟପୀଠରେ ଗଞ୍ଜାମର ଜଣେ ମା'ଙ୍କ ଦେହାନ୍ତ ହୋଇଥିଲା । ବାସ୍ତବରେ ଅତି ପୁଣ୍ୟବତୀ ଥିଲେ ସେ । ଶୁଣାଯାଏ, ଯିଏ ସେହି ପୁଣ୍ୟ ଧାମର ଦର୍ଶନ କରେ ସେ ଆଉ ମାତୃ ଉଦରରେ ସ୍ଥାନ ପାଏ ନାହିଁ । ଅର୍ଥାତ୍ ସେ ଆଉ ଜନ୍ମମୃତ୍ୟୁର ଚକ୍ରରେ ପଡେନାହିଁ, ତାକୁ ମୁକ୍ତି ମିଳିଯାଏ, ସତେ ଯେମିତି ଘଣ୍ଟକର୍ଣ୍ଣର ମୁକ୍ତି ଭଳି ଭଗବାନ ବଦ୍ରିନାଥ ସେହି ମା'ଙ୍କୁ ମଧ୍ୟ ମୁକ୍ତି ପ୍ରଦାନ କରିଦେଲେ ।

ଏକାମ୍ର ସତ୍ୟ ସେବାଶ୍ରମ
ବୈକୁଣ୍ଠ ସରଣୀ, ୟୁନିଟ୍–୯, ଭୁବନେଶ୍ୱର–୨୨

# ମୁକୁଟ ବିହୀନ ସମ୍ରାଟ୍

ବିମଳା ସିଂହ

ସମୟ ସ୍ରୋତରେ ସବୁକିଛି ବଦଳି ଯାଇପାରେ
ସମୁଦ୍ରର, ଆକାଶର, ରାସ୍ତାର,
ପାପର ଆଉ ପୁଣ୍ୟର
ବଦଳି ଯାଇପାରେ ମନର ଦସ୍ତାବିଜ୍ ........
ହେ ଦୂରଦ୍ରଷ୍ଟା ! ଏ ବୀର ମାଟିର
ହେ ସ୍ରଷ୍ଟା ! ସୃଜନ କଳାର
ତୁମ ସାଧନା ପଣର କାନ୍‌ଭାସ୍ ପରେ
ଚିତ୍ରିତ ତୁମ ଜୀବନର ସ୍ୱର ବଦଳି ପାରେନା
ବଦଳି ପାରେନା ତୁମ ଜନମ ମାଟିର ନକ୍ସା
ଯେଉଁଠି ଶୁଭିଥିଲା ତୁମ ଜୀବନର ପ୍ରଥମ କୁଆଁ କୁଆଁ ରାବ
ଯେଉଁଠି ଛୁଇଁଥିଲ ଏ ମାଟିର ପ୍ରଥମ ଚୁମ୍ବନ
ଯେଉଁଠି ଥିଲା ତୁମ ଏନ୍ତୁଡ଼ିଶାଳ
ଆଉ, ନିର୍ବାପିତ ଦୀପଶିଖା ଏଇ ମାଟି ଦେହେ ........
ବଦଳି ପାରେନା ହେ ମହାନାୟକ !
ମହାମୁକ୍ତି ଗୀତ ଗାଇ ଅନୁରାଗ ଭରା
ତୁମ ସଂକଳ୍ପର କାହାଣୀ ଏଇ ମାଟି ପାଇଁ ।
ବଦଳି ପାରେନା ହେ କଳିଙ୍ଗ ସମ୍ରାଟ୍ !
ତୁମ ବୀରତ୍ୱର କାହାଣୀ
କଟକରୁ ପେଶୱାରକୁ ସାଇକେଲ ଯାତ୍ରା
ଅବା ଇଣ୍ଡୋନେସିଆକୁ ତୁମ ପୁରୁଣା 'ଡାକୋଟା'ରେ ଯାତ୍ରା
ଆଉ– 'ଭୂମିପୁତ୍ର' ଆଖ୍ୟା ଅର୍ଜନ କାହାଣୀ .......
ହେ ସ୍ୱପ୍ନବାଦୀ କଳିଙ୍ଗ ସମ୍ରାଟ !
ବଦଳି ପାରେନା ତୁମ ହାତଗଢ଼ା ଶିକ୍ଷା
ଆଉ ଶିଳ୍ପ କ୍ଷେତ୍ରର କାହାଣୀ
ପାରାଦ୍ୱୀପ ବନ୍ଦର, ଜାତୀୟ ରାଜପଥ,ବାଲିମେଳା ଡ୍ୟାମ୍
ସୁନାବେଡ଼ା ମିଗ୍ ବିମାନ କାରଖାନା
ଚାରବାଟିଆ ମିଲିଟାରୀ ବିମାନ ଅବତରଣ କେନ୍ଦ୍ର
ଆଞ୍ଚଳିକ ଶିକ୍ଷା ପ୍ରତିଷ୍ଠାନ
ବୁର୍ଲା ଇଞ୍ଜିନିୟରିଂ କଲେଜ
ଜ୍ୟୋତି ବିହାର, ଭଞ୍ଜ ବିହାରର ଚିତ୍ରପଟ ........
ବଦଳି ପାରେନା ତୁମ ସଂଗ୍ରାମ ପଣର ସେଇ ଅଭୁଲା, ଅଲିଭା
ଯେତେସବୁ ଦୁଃଖ ଆଉ ଯାତନାର କାହାଣୀ
ରାଜନୀତି କ୍ଷେତ୍ରେ ହିମାଳୟ ସମ
ତୁମ ଯେତେସବୁ ଯୋଜନା !
ଆଉ ତୁମ ସାହସିକ ପଦକ୍ଷେପ
ତେରରୁ ତିରିଶି ଜିଲ୍ଲା କରିବାର ମମତା
ହେ ତ୍ୟାଗୀ ! ଏ ମାଟିର ଆଦର୍ଶ ! ଗର୍ବ ଆଉ ଗଉରବ !
ହେ ଚିନ୍ତାନାୟକ, ହେ ରାଷ୍ଟ୍ରନାୟକ,
ଏ ମାଟିର ଶ୍ରେଷ୍ଠ ବିଧାଣି, ହେ ମୁକୁଟ ବିହୀନ ସମ୍ରାଟ୍ !
ତୁମ ଯଶ ବାନା ଉଡୁଥିବ ଚିରକାଳ ଏ ମାଟି ପବନେ
ପବିତ୍ର ଓଁକାର ଶବ୍ଦରେ, ଯୁଗ ଯୁଗ ପାଇଁ ........

ପ୍ଲଟ ନଂ– ୧୮୬୮, ଲେନ୍ – ୬
ଭକ୍ତମଧୁ ନଗର, ଗଣ୍ଡମୁଣ୍ଡା
ଖଣ୍ଡଗିରି, ଭୁବନେଶ୍ୱର – ୩୦

# ଓଡ଼ିଶାରେ ବିଭିନ୍ନ ଧର୍ମର ପ୍ରଚାର ଓ ପ୍ରସାର

ହିମାଦ୍ରୀ ତନୟା ମିଶ୍ର

ଆମ ଜାତୀୟ ସଂସ୍କୃତିର କେନ୍ଦ୍ରବିନ୍ଦୁ ହେଉଛି ଧର୍ମ। ବିଭିନ୍ନ ସମ୍ପ୍ରଦାୟର ସାମାଜିକ କ୍ରିୟାକଳାପ ଧର୍ମଭିତ୍ତିକ କହିଲେ ଅତ୍ୟୁକ୍ତି ହେବ ନାହିଁ। ପ୍ରତ୍ୟେକ ଆଞ୍ଚଳିକ ଭାଷା ମଧ୍ୟରେ ସଂହତି, ଶୃଙ୍ଖଳା ଧର୍ମକୁ ହିଁ ଭିତ୍ତିକରି ସୁରକ୍ଷିତ ହୋଇ ରହିପାରିଛି। ଆମର ପାର୍ବତ୍ୟାଞ୍ଚଳରେ ଯେଉଁ ଆଦିବାସୀ ସମ୍ପ୍ରଦାୟ ରହିଥିଲେ ସେମାନଙ୍କ ଧର୍ମନୀତି ସମ୍ପୂର୍ଣ୍ଣ ପୃଥକ୍ ଥିବାରୁ ସାଂସ୍କୃତିକ କ୍ଷେତ୍ରରେ ଓଡ଼ିଶାରେ ବୌଦ୍ଧ ଓ ବ୍ରାହ୍ମଣ୍ୟ ଧର୍ମର ପ୍ରାଧାନ୍ୟ ପ୍ରାଚୀନ କାଳରୁ ରହି ଆସିଥିବାରୁ ଏମାନେ ଆର୍ଯ୍ୟ ଓ ଦ୍ରାବିଡ଼ ଜାତିଠାରୁ ବହୁ ଦୂରକୁ ଅପସାରିତ ହୋଇଯାଇଥିଲେ। ତଥାପି ଦୀର୍ଘକାଳର ଏକତ୍ର ସହାବସ୍ଥାନ ଫଳରେ ଧର୍ମ କ୍ଷେତ୍ରରେ ଧୀରେ ଧୀରେ ଉଭୟ ଜନଗୋଷ୍ଠୀଙ୍କ ମଧ୍ୟରେ ପାରସ୍ପରିକ ସାଂସ୍କୃତିକ ପ୍ରଭାବ ପଡ଼ିବାକୁ ଆରମ୍ଭ କଲା। ଏଣୁ ଆଦିବାସୀଙ୍କ ସାମାଜିକ ସଂସ୍କୃତି ଓ ସ୍ୱଭାବରେ ମଧ୍ୟ ପରିବର୍ତ୍ତନ ଦେଖାଦେଲା। ସେମାନଙ୍କ ପୂଜିତା ଦେବୀଙ୍କୁ ବ୍ରାହ୍ମଣମାନେ ବନଦେବୀ ଆଖ୍ୟା ଦେଇ ପୂଜା କରିବାକୁ ଲାଗିଲେ। ପ୍ରଥମେ କୁହାଯାଇଛି, ମହେନ୍ଦ୍ରାଞ୍ଚଳରେ ପ୍ରତିଷ୍ଠିତ ପୁଳିନ୍ଦ (ଶବର) ମାନଙ୍କ ଦେବତାଙ୍କୁ ବ୍ରାହ୍ମଣ ପଣ୍ଡିତମାନେ 'ସ୍ୱୟମ୍ଭୂ'ନାମରେ ଅଭିହିତ କରିଥିଲେ । ଆଉ ମଧ୍ୟ ୪ର୍ଥ ବା ୫ମ ଶତାବ୍ଦୀରେ କଳାହାଣ୍ଡି ଜିଲ୍ଲା ଅନ୍ତର୍ଗତ ପର୍ବତ ଦ୍ୱାର ନାମକ ରାଜଧାନୀରୁ ଘୋଷିତ ମହାରାଜ ତୁଷ୍ଟିକାର ଗୋଟିଏ ତାମ୍ରପତ୍ର ବ୍ରାହ୍ମଣଙ୍କୁ ଦାନ କଲାବେଳେ ନିଜକୁ ସ୍ତମ୍ଭେଶ୍ୱରୀ ବରଲବ୍ଧ ରାଜ୍ୟ ବିଭବ ବୋଲି ସେଥିରେ ଲେଖାଇଥିଲେ। ଏଥିରୁ ସ୍ପଷ୍ଟ ପ୍ରମାଣିତ ହୁଏ ଆଦିବାସୀ ପୂଜିତ ଦେବାଦେବୀଙ୍କୁ ଭିନ୍ନ ଭିନ୍ନ ନାମରେ ବ୍ରାହ୍ମଣମାନେ ଆରାଧନା କରିବାକୁ ଲାଗିଲେ। ପ୍ରାଚୀନ ବୌଦ୍ଧ ଧର୍ମ (ବୁଦ୍ଧ)ଙ୍କ ନାମାନୁସାରେ ଗୁହ ଶବରମାନେ ମହେନ୍ଦ୍ରମାଳରେ ରହିଥିବାର କଥା ପୁରାଣମାନଙ୍କରେ 'ଗୁହ' ଆଖ୍ୟା ଦିଆଯାଇଥିବାର ଜଣାଯାଏ। ଗୁହ ଶବରମାନେ କଳିଙ୍ଗ, ମାହିଷ୍ୟ, ମହେନ୍ଦ୍ରମାଳ ପ୍ରଭୃତି ରାଜ୍ୟରେ ବସବାସ କରୁଥିବା ଲୋକମାନଙ୍କୁ ପାଳନ କରୁଥିଲେ। ତତ୍କାଳୀନ ରାଜାମାନଙ୍କ ତାମ୍ର ଶାସନାନୁସାରେ, ପୁଳିନ୍ଦ ସେନ ନାମକ ଜଣେ ରାଜା କଳିଙ୍ଗରେ ଶାସନ କରୁଥିଲେ।

ଅଶୋକଙ୍କ ରାଜତ୍ୱ କାଳରେ ବୁଦ୍ଧଙ୍କ ମହତ୍‌ବାଣୀ କଳିଙ୍ଗରେ ସମ୍ରାଟ୍‌ଙ୍କ ପକ୍ଷରୁ ପ୍ରଚାର କରିବା ଧର୍ମର ଏକ ଅଙ୍ଗରୂପେ ଗୃହୀତ। ଯାହା ଧଉଳି ଓ ଜଉଗଡ ଅନୁଶାସନରୁ ଜଣାଯାଏ । ଏହାଙ୍କ ପରେ ଖ୍ରୀଷ୍ଟପୂର୍ବ ୧ମ ଓ ୨ୟ ଶତାବ୍ଦୀରେ କଳିଙ୍ଗରେ ଚେଦୀବଂଶୀୟ ମହାରାଜା ଖାରବେଳ ବୌଦ୍ଧ ଧର୍ମ ଓ ବ୍ରାହ୍ମଣ୍ୟ ଧର୍ମକୁ ସମ୍ମାନିତ କରିଥିଲେ ଏବଂ ନିଜେ ଜୈନ ଧର୍ମରେ ଦୀକ୍ଷିତ ହୋଇ କଳିଙ୍ଗରେ ଜୈନ ଧର୍ମର ପ୍ରସାର କରାଇଥିଲେ। ବହୁ ଜୈନ ପଣ୍ଡିତ, ମୁନି, ଯୋଗୀ ପ୍ରଭୃତି ମନୀଷୀଙ୍କ ସମାଗମ ଭୁବନେଶ୍ୱରର ଖଣ୍ଡଗିରି ଓ ଉଦୟଗିରିଠାରେ ହୋଇଥିବାର ଗୁମ୍ଫାମାନଙ୍କରେ ଦେଖିବାକୁ ମିଳେ। ଜୈନ ଧର୍ମ ପରେ ଖ୍ରୀ: ୪ର୍ଥ ବା ୫ମ ଶତାବ୍ଦୀରେ ଉତ୍ତର ଓଡ଼ିଶାରେ ନାଗବଂଶୀୟ ରାଜାମାନଙ୍କର ରାଜତ୍ୱ ଅଶନପାଟ ଶିଳାଲେଖରୁ ପ୍ରକଟିତ ହୁଏ। ଓଡ଼ିଶା ଉପକୂଳ ଅଞ୍ଚଳରୁ କୁଷାଣ ଓ ଶକମାନଙ୍କୁ ତଡ଼ିଦେଇ ନାଗବଂଶୀୟ ରାଜା ମାଣଭଞ୍ଜ ଓ ପୁତ୍ର ଶତ୍ରୁଭଞ୍ଜ 'ବନ୍ଧ୍ୟାଟବୀ' ରାଜ୍ୟରେ ରାଜତ୍ୱ କରିବାକୁ ଲାଗିଲେ। ଏହି ସମୟରେ ବୌଦ୍ଧଭିକ୍ଷୁ ଓ ଜୈନ ପରିବ୍ରାଜକ ସମେତ ବ୍ରାହ୍ମଣଧର୍ମୀ କେତେକ ବ୍ରହ୍ମଚାରୀମାନଙ୍କୁ

ପ୍ରଚୁର ପରିମାଣରେ ଅର୍ଥ ଦାନ କରାଯାଉଥିଲା । ସେସମୟରେ ରାଜା ବ୍ରାହ୍ମଣଧର୍ମାବଲମ୍ବୀ ହୋଇଥିଲେ ଏବଂ ବହୁ ଶାସ୍ତ୍ରରେ ପାଣ୍ଡିତ୍ୟ ଅର୍ଜନ କରିଥିଲେ । ଉତ୍ତର ଓଡ଼ିଶାରେ କେତେକ ଐତିହାସିକ ସ୍ଥାପତ୍ୟ ଓ ଲିପିରୁ ଜଣାଯାଇଛି ଯେ ସେଠାରେ ବ୍ରାହ୍ମଣଧର୍ମ ଓ ବୌଦ୍ଧ ଧର୍ମର ପ୍ରଭାବ ଗୁପ୍ତ ଯୁଗରେ ପଡ଼ିଥିଲା । ବାଲେଶ୍ୱରର ଅଳ୍ପ ଦୂରରେ ମୟୂରଭଞ୍ଜ ଜିଲ୍ଲାର ମୁଖ୍ୟ ଐତିହାସିକ ସ୍ଥାନ ଖିଚିଂରେ ଓଡ଼ିଶାର ଏକ ପ୍ରସିଦ୍ଧ ପ୍ରାଚୀନ ଶୈବ ମନ୍ଦିର ଥିବାର ଦେଖାଯାଏ । ସେଥିରେ ନିର୍ମାଣ କୌଶଳ ମଧ୍ୟ ଓଡ଼ିଶାର ଶିଳ୍ପଶୈଳୀର ଅନୁରୂପ, ତାହା ଖ୍ରୀ.୭ମ ବା ୮ମ ଶତାବ୍ଦୀରେ ଖିଞ୍ଜିଲୀମଣ୍ଡଳର ଭଞ୍ଜ ବଂଶୀୟ ରାଜାମାନେ ମୟୂରଭଞ୍ଜ ଜିଲ୍ଲାରୁ ଆରମ୍ଭକରି ଦକ୍ଷିଣରେ ଘୁମୁସର ପର୍ଯ୍ୟନ୍ତ ବହୁ ଅଞ୍ଚଳରେ ସାମନ୍ତ ରାଜା ରୂପେ ଅବସ୍ଥାନ କରୁଥିଲେ । ପ୍ରଥମେ ସେମାନେ ଶୈବ ଧର୍ମ ଅବଲମ୍ବନ କରିଥିଲେ । କିନ୍ତୁ ଧର୍ମ ଶତାବ୍ଦୀରେ ବୈଷ୍ଣବ ଧର୍ମରେ ଦୀକ୍ଷିତ ହୋଇଥିଲେ । ସେମାନେ ଶିବଙ୍କୁ ନିଜର ଇଷ୍ଟ ଦେବତା ଭାବରେ ପୂଜା କରୁଥିଲେ ।

ମୟୂରଭଞ୍ଜ ଜିଲ୍ଲାର ଖିଚିଂଠାରେ ଏକ ସୁପ୍ରସିଦ୍ଧ ଶିବ ମନ୍ଦିର ମଧ୍ୟ ଓଡ଼ିଶାର ପୂର୍ବାଞ୍ଚଳରେ ପ୍ରତିଷ୍ଠିତ ହୋଇଥିଲା, ସେଥିରେ ନଟରାଜ ଶିବଙ୍କ ବିଗ୍ରହ ପ୍ରତିଷ୍ଠା କରାଯାଇଥିବା ଜଣାଯାଏ । ଦକ୍ଷିଣ ଓଡ଼ିଶାରେ ମହେନ୍ଦ୍ରାଞ୍ଚଳର ପାଦ ଦେଶରେ ଆଧୁନିକ ବୁଢ଼ାରଶିଙ୍ଗ ନିକଟ ପୁତିଙ୍ଗ ନାମକ ଗ୍ରାମରେ ପଢେଶ୍ୱରଙ୍କ କୀର୍ତ୍ତି ଘୋଷଣା କରେ । ସୁତରାଂ ଓଡ଼ିଶାର ଉଭୟ ସୀମାରେ ଭଞ୍ଜ ବଂଶ ଓ ଶଙ୍ଖବଂଶ ରାଜାମାନେ ସେମାନଙ୍କ ଶୈବଗୁରୁ ସାହାଯ୍ୟରେ ପ୍ରାୟ ପ୍ରତି ଗ୍ରାମରେ ଶିବମନ୍ଦିରମାନ ନିର୍ମାଣ କରି ବ୍ରାହ୍ମଣମାନଙ୍କୁ ଶାସନ ଦାନ କରିଥିଲେ । ଏହାର ମୁଖ୍ୟ ଉଦ୍ଦେଶ୍ୟ ଥିଲା ଗ୍ରାମର ସୁରକ୍ଷା, ପ୍ରତି ଜନପଦ, ନଗର ଓ ଦୁର୍ଗଗୁଡ଼ିକର ସୁରକ୍ଷା, ଆର୍ଯ୍ୟମାନଙ୍କର ଆଗମନ ପୂର୍ବରୁ ଏଠାରେ ଆଦିବାସୀମାନେ ପାର୍ବତୀୟ ଅଞ୍ଚଳରେ ରହି ସେମାନଙ୍କ ସୁରକ୍ଷା ନିମନ୍ତେ ଦେବାଦେବୀମାନଙ୍କୁ ପ୍ରତିଷ୍ଠା କରିଥିଲେ । କାଳକ୍ରମେ ସେହି ଦେବଦେବୀ ମା' ଆରାଧନା ସକାଶେ ବ୍ରାହ୍ମଣମାନଙ୍କ ଦ୍ୱାରା ବୈଦିକ ବିଧିରେ ତାଙ୍କ ମନ୍ତ୍ର ଓ ପୂଜାବିଧିମାନ ପରିକଳ୍ପିତ ହେଲା । ଓଡ଼ିଶାରେ ବର୍ତ୍ତମାନ ଯେଉଁ ଦେବଦେବୀମାନଙ୍କୁ ବିଭିନ୍ନ ଅଞ୍ଚଳରେ ଭିନ୍ନ ଭିନ୍ନ ନାମରେ ଆରାଧନା କରାଯାଇଥିଲା, ସେଥିରେ ମୂଳରୁ ଆଦିବାସୀ କିମ୍ବା ଜୈନ ଓ ମହାଯାନ ବୌଦ୍ଧମାନଙ୍କ ପୂଜିତ ଦେବଦେବୀ ଅଛନ୍ତି । ହିନ୍ଦୁମାନେ ତାଙ୍କ ପ୍ରତ୍ୟେକ ଶୁଭ କାର୍ଯ୍ୟରେ ପ୍ରଥମେ କୁମ୍ଭ ପୂଜାଙ୍କର ଜଳପୂର୍ଣ୍ଣ ମଙ୍ଗଳ କଳସ ଉପରେ ଆମ୍ରପତ୍ର ସହ ନାରିକେଳ ଫଳ କୌଣସି ପବିତ୍ର ଆସ୍ଥାନରେ ରଖି କୁମ୍ଭକୁ ପଞ୍ଚ ଦେବତାଙ୍କ ନାମରେ ପୁଷ୍ପ ଚନ୍ଦନ ଦେଇ ଆରାଧନା କରନ୍ତି । ଗଣପତି, ବରୁଣ, ଇନ୍ଦ୍ରାଦି ଦଶଦିଗପାଳ, ସୂର୍ଯ୍ୟାଦି ନବଗ୍ରହ ଓ ଗ୍ରାମଦେବୀ ଏପରି ପଞ୍ଚଦେବତାଙ୍କ ନାମରେ ପୁଷ୍ପଚନ୍ଦନ ଦେଇ କୁମ୍ଭ ପୂଜା କରିଥାନ୍ତି । ପୂର୍ବେ ରାଜ୍ୟର ନିରାପତ୍ତା ସକାଶେ ରାଜାମାନେ ଦୃଢ଼ ଦୁର୍ଗ ନିର୍ମାଣ କରି ସେଥିରେ ଥିବା ରାଜନବରରେ ହିଁ ସପରିବାରେ ବାସ କରୁଥିଲେ । ତାଙ୍କ ସୁରକ୍ଷା ପାଇଁ ସୈନ୍ୟସାମନ୍ତ ଦୁର୍ଗଦ୍ୱାରକୁ ଜଗି ରହୁଥିଲେ ।

ଦୁର୍ଗ ପ୍ରାଚୀରଗୁଡ଼ିକୁ ଘେରି ଗୋଟିଏ ଗୋଟିଏ ଗଭୀର ଜଳପୂର୍ଣ୍ଣ ଜଳାଶୟ ଖୋଦିତ କରାଯାଇ ସେଥିରେ କୁମ୍ଭୀର ଓ ସର୍ପାଦିଙ୍କ ବ୍ୟବସ୍ଥା କରାଯାଉଥିଲା । ଦୁର୍ଗ ବା ରାଜ୍ୟର କୌଣସି ନିର୍ଦ୍ଦିଷ୍ଟ ଓ ବିଶିଷ୍ଟ ସ୍ଥାନରେ ରାଜାଙ୍କର ଇଷ୍ଟ ଦେବୀଙ୍କ ପାଇଁ ମନ୍ଦିର ନିର୍ମାଣ କରାଯାଉଥିଲା ଏବଂ ସେହି ଦେବୀଙ୍କର ମୁଖ୍ୟ ପର୍ବ ଆଶ୍ୱିନ ମାସରେ ପାଳିତ ହେଉଥିଲା । ସେହି ସମୟରେ ରାଜାଙ୍କର ସୈନ୍ୟସାମନ୍ତଙ୍କ ଅସ୍ତ୍ର ଶିକ୍ଷାର ପରୀକ୍ଷା ଏବଂ ପୁରସ୍କାର କିମ୍ବା ଉପାଧିମାନ ବିତରଣ ପାଇଁ ଉତ୍ସବ ପାଳିତ ହେଉଥିଲା, ଯାହା ସାମ୍ପ୍ରତିକ 'ଦୁର୍ଗୋତ୍ସବ' ବା 'ଦଶହରା' ନାମରେ ଜଣାଯାଏ । 'ମାର୍କଣ୍ଡେୟ' ପୁରାଣରେ ଦୁର୍ଗାଙ୍କର ମହିଷାସୁର ସଙ୍ଗେ ଯୁଦ୍ଧ ସମ୍ପର୍କୀୟ ଆଖ୍ୟାନ ବ୍ରାହ୍ମଣମାନଙ୍କ ଦ୍ୱାରା ଶୁଦ୍ଧପୂତ ଭାବେ ଦେବୀଙ୍କ ସମ୍ମୁଖରେ ପାରାୟଣ କରିବା ବିଧି ଅଦ୍ୟାବଧି ପ୍ରଚଳିତ ରହିଛି । ଓଡ଼ିଶାରେ ସୂର୍ଯ୍ୟବଂଶୀୟ ମହାରାଜା ପୁରୁଷୋତ୍ତମ ଦେବଙ୍କ ପ୍ରଣୀତ 'ଦୁର୍ଗୋତ୍ସବ-ଚନ୍ଦ୍ରିକା' ନାମକ ଗ୍ରନ୍ଥରେ ଏ ସମ୍ବନ୍ଧରେ ବିଶଦ୍ ବିବରଣୀ ସଙ୍କଳିତ ହୋଇଅଛି । ଆଶ୍ୱିନ ଶୁକ୍ଳନବମୀ ଦିନ ଯେଉଁ ରାଜା ଚଣ୍ଡିକାଙ୍କ ଉପାସନା କରନ୍ତି, ସେ ଯୁଦ୍ଧରେ ବିଜୟୀ ହୋଇ ଶତ୍ରୁନାଶ କରିବାକୁ ସକ୍ଷମ ହୁଅନ୍ତି ବୋଲି ବିଶ୍ୱାସ କରାଯାଏ । ଏହିଦିନ ସାମରିକ ପ୍ରସ୍ତୁତି ପାଇଁ ଉଦ୍ଦିଷ୍ଟ ଥିଲା । ହସ୍ତୀ-ଅଶ୍ୱ ଓ ପଦାତିକ ସୈନ୍ୟମାନଙ୍କର ଏକତ୍ର ସମାବେଶ ହେଉଥିଲା ।

ରାଜାମାନେ 'ଦିଗ୍‌ବିଜୟୀ' ସକାଶେ ଯାତ୍ରା କରିବା ପାଇଁ ଏହା ହିଁ ପ୍ରକୃଷ୍ଟ ଓ ଉତ୍କୃଷ୍ଟ ସମୟ । ଆଶ୍ୱିନ ପୂର୍ଣ୍ଣିମା ଦିନଟି ଦେବତାଙ୍କ ସେନାପତି ସ୍କନ୍ଦ ବା କୁମାର କାର୍ତ୍ତିକେୟଙ୍କ ଉଦ୍ଦେଶ୍ୟରେ କୁମାର ଉତ୍ସବ ପାଳନ ମଧ୍ୟ କରାଯାଉଥିଲା, ଯାହା ଅଦ୍ୟାବଧି ରହିଛି । ଖ୍ରୀଷ୍ଟିୟ ୮ମ ଶତାବ୍ଦୀ ପୂର୍ବରୁ ଓଡ଼ିଶାର ପୂର୍ବୋତ୍ତର ପ୍ରଦେଶ ତୋଷଳୀ ନାମରେ ପରିଚିତ, ଯାହା ସୁବର୍ଣ୍ଣରେଖାଠାରୁ ଋଷିକୁଲ୍ୟା ପର୍ଯ୍ୟନ୍ତ ପରିବ୍ୟାପ୍ତ ରହିଥିଲା । ତୋଷଳୀର ବିରଜାନଗର (ବିରଜାକ୍ଷେତ୍ର) ଏକ ରାଜଧାନୀ ରୂପେ ବ୍ୟବହୃତ ହେଉଥିଲା । ସେଠାରେ ଭୌମକର ବଂଶୀୟ ରାଜାମାନେ ଆଧିପତ୍ୟ ବିସ୍ତାର କରିଥିଲେ । ଏମାନେ ବୌଦ୍ଧ ଧର୍ମାବଲମ୍ବୀ ହୋଇଥିବାରୁ ଉତ୍କଳର ସେହି ଅଞ୍ଚଳରେ ଥିବା ବୌଦ୍ଧ ମନ୍ଦିର ଓ ଚୈତ୍ୟଗୁଡ଼ିକ ଭଗ୍ନାବଶେଷ ଥିଲା । ସେଥିରୁ ସଂସ୍କାର କରି ବୌଦ୍ଧ ଶ୍ରମଣ ଓ ପଣ୍ଡିତମାନଙ୍କୁ ବିଭିନ୍ନ ପ୍ରଦେଶରୁ ନିମନ୍ତ୍ରଣ କରି କେତେକ ଶିକ୍ଷାକେନ୍ଦ୍ର ସ୍ଥାପିତ କରିଥିଲେ । ଏଥି ସହିତ ତାଙ୍କ ଦ୍ୱାରା କଟକ ଜିଲ୍ଲାର ଲଳିତଗିରି, ରତ୍ନଗିରି, ଉଦୟଗିରି ପ୍ରଭୃତି ବୌଦ୍ଧ କେନ୍ଦ୍ରରେ ବୌଦ୍ଧ ଶିକ୍ଷାନୁଷ୍ଠାନଗୁଡ଼ିକ ଗଢ଼ି ଉଠିଥିଲା ।

ନବମ ଶତାବ୍ଦୀରେ ଭୌମବଂଶୀୟ କେତେକ ରାଜା ବେଦାଧ୍ୟାୟୀ ବ୍ରାହ୍ମଣମାନଙ୍କ ଉପଦେଶକ୍ରମେ ତାନ୍ତ୍ରିକ ଶୈବଧର୍ମ ଗ୍ରହଣ କରି 'ପରମ ମାହେଶ୍ୱର' ଉପାଧିରେ ପରିଚିତ ହୋଇଥିଲେ । ସେତେବେଳେ ବୈଦିକ ଧର୍ମାବଲମ୍ବୀ ଶୈବମାନେ ବିଭିନ୍ନ ବେଶଧାରୀ (ଶୈବ, ଶାକ୍ତ ଓ ବୈଷ୍ଣବ) ଅନାଚାର ପନ୍ଥୀ ବୋଲି ବୌଦ୍ଧମାନେ ସେମାନଙ୍କୁ କହୁଥିଲେ । ଭୌମ ରାଜାମାନଙ୍କ ଦ୍ୱାରା ବୌଦ୍ଧ ଧର୍ମ ଓ ବ୍ରାହ୍ମଣ୍ୟ ଧର୍ମ ମଧ୍ୟରେ ସହଯୋଗ ସଂପାଦିତ ହୋଇ ରାଜନୈତିକ ଏକତା ଆସିଥିଲା । ଯେଉଁ ସମୟରେ ନୈଷ୍ଠିକ ବେଦାଧ୍ୟାୟୀ ବ୍ରାହ୍ମଣ ଓ ନୈଷ୍ଠିକ ବୌଦ୍ଧ – ଧର୍ମାବଲମ୍ବୀଙ୍କ ମଧ୍ୟରେ ଧର୍ମଭିତ୍ତିକ ବିଦ୍ୱେଷ ହେତୁ ସାମାଜିକ ଶାନ୍ତି ଭଙ୍ଗ ହେବାକୁ ଲାଗିଲା, ସେହି ସମୟରେ ଭୌମକର ବଂଶୀୟ ରାଜାମାନଙ୍କ ଉଦାର ନୀତି ହେତୁ ଓଡ଼ିଶାରେ ଏକ ନବଯୁଗର ପ୍ରତିଷ୍ଠା ହୋଇଥିଲା । ୮ମ ଓ ୯ମ ଶତାବ୍ଦୀ ମଧ୍ୟରେ ରହିଥିବା ବୌଦ୍ଧ ମନ୍ଦିର ଓ ଚୈତ୍ୟଗୁଡ଼ିକର ସଂସ୍କାର ହୋଇଥିବାର କଥା ଭୌମ ରାଜାମାନଙ୍କ ରାଜତ୍ୱର ପ୍ରଥମାର୍ଦ୍ଧ ବୋଲି ଜଣାଯାଏ ।

ପ୍ରାଚୀନ ବୈଦିକ ଯୁଗରେ ସୂର୍ଯ୍ୟଙ୍କୁ ରାଜା ନାରାୟଣ ରୂପେ ଆର୍ଯ୍ୟମାନେ ଆରାଧନା କରୁଥିଲେ । 'ଋଗ୍ ବେଦ'ର ପ୍ରଥମ ମଣ୍ଡଳରେ ଥିବା କେତେଗୋଟି ମନ୍ତ୍ରରୁ ଜଣାଯାଏ ଯେ, ଦୀର୍ଘତମ ନାମକ ଋଷିଙ୍କ ପୁତ୍ର କକ୍ଷୀବନ୍ତ, ଅଙ୍ଗ ଓ କଳିଙ୍ଗରେ ସର୍ବପ୍ରଥମେ ସୌର ଉପାସନା ପ୍ରବର୍ତ୍ତନ ତ କରିଥିଲେ କାଳକ୍ରମେ ସୌର ଉପାସନା ଭାରତରେ ଗୌଣ ହୋଇ ଅନନ୍ତ –ଶାୟୀ – ଭଗବାନ – ନାରାୟଣଙ୍କ ଉପାସନାରେ ପରିଣତ ହେଲା । ଖ୍ରୀ. ୧ମ ଓ ୨ୟ ଶତାବ୍ଦୀରେ ଭାରତକୁ ଶାକଦ୍ୱିପୀୟ ଭିନ୍ନ ରୂପ ଧାରଣ କଲା । ସେ ଗ୍ରହାଧିପତି ରୂପେ ପୂଜିତ ହେଲେ । ଗଞ୍ଜାମର କୋଦଳାଠାରେ ଏବଂ କଳିଙ୍ଗ ନଗର ନିକଟବର୍ତ୍ତୀ ଆର୍ଶିବଲ୍ଲି ନାମକ ଗ୍ରାମରେ ସୂର୍ଯ୍ୟ ନାରାୟଣଙ୍କ ମନ୍ଦିର ଅଦ୍ୟାପି ବିଦ୍ୟମାନ । ଏହି ମନ୍ଦିର ନିର୍ମାଣ ହେବାର ଏକ ସହସ୍ର ବର୍ଷ ପରେ ଗଙ୍ଗବଂଶୀୟ ରାଜା ନରସିଂହ ଦେବ ଓଡ଼ିଶାର କେନ୍ଦ୍ର ଭାଗରେ ଚନ୍ଦ୍ରଭାଗା କୂଳରେ ସୁପ୍ରସିଦ୍ଧ କୋଣାର୍କ ମନ୍ଦିର ୧୩ଶ ଶତାବ୍ଦୀରେ ନିର୍ମାଣ କରିଥିଲେ । ପରେ ଖ୍ରୀଷ୍ଟିୟ ନବମ ଶତାବ୍ଦୀରେ ଶୁତ୍ରଭଞ୍ଜ ଦେବଙ୍କ ରାଜତ୍ୱ କାଳରେ ସେ 'ପରମ ବୈଷ୍ଣବ' ଥିବାରୁ ତାଙ୍କ ରାଜ୍ୟ ମାଧବ (ବିଷ୍ଣୁ)ଙ୍କୁ ପ୍ରତିଷ୍ଠା କରି ପୂଜାର୍ଚ୍ଚନା ଆରମ୍ଭ କରିଥିଲେ । ତାଙ୍କ ଦ୍ୱାରା ନିର୍ମିତ ବିଷ୍ଣୁ ମନ୍ଦିରରେ ନୀଳମାଧବଙ୍କୁ ପୂଜା କରାଯାଏ ଏବଂ ଏହା ଗନ୍ଧରାଡ଼ୀଠାରେ ଅବସ୍ଥିତ ।

**ଶାକ୍ତଧର୍ମ :** ଶକ୍ତି ବିଶ୍ୱ ସୃଷ୍ଟିର ମୂଳ ଉତ୍ସ । ଏହାର ଉପାସକମାନେ ଶାକ୍ତ ଏବଂ ସେମାନଙ୍କର ଉପାସନା ମାର୍ଗର ନାମ ହିଁ ଶାକ୍ତ ଧର୍ମ । ଏହି ଧର୍ମର ଉତ୍ପତ୍ତି ସମ୍ପର୍କରେ ଆଲୋଚକମାନେ ମତ ଦିଅନ୍ତି, ଶାକ୍ତ ଧର୍ମ ପ୍ରାକ୍‌ବୈଦିକ ଯୁଗର ମାତୃଦେବୀ ଉପାସନାର ପରିମାର୍ଜିତ ରୂପ । ନାରୀଶକ୍ତି ହିଁ ଜୀବଜଗତର ସୃଷ୍ଟି ହିସାବରେ ଗ୍ରହଣ ହେଉଥିବାରୁ ପ୍ରାଥମିକ ସ୍ତରରେ ମାତୃତ୍ୱ ଥିଲା ଧର୍ମର କେନ୍ଦ୍ରବିନ୍ଦୁ । ପ୍ରତ୍ନତାତ୍ତ୍ୱିକ ଖନନ ଫଳରେ ମିଳିଥିବା ପୁରାତନ ପ୍ରସ୍ତର ଯୁଗର ଆବିଷ୍କୃତ ପଥର, ହାତୀଦାନ୍ତ ଓ ହାଡ଼ର ନାରୀ ମୂର୍ତ୍ତିଗୁଡ଼ିକୁ ଲକ୍ଷ୍ୟ କଲେ ଏହାର ସ୍ପଷ୍ଟ ପ୍ରମାଣ ମିଳେ । କେବଳ ଭାରତୀୟ ଭୂଖଣ୍ଡ ନୁହେଁ ସମଗ୍ର ପୃଥିବୀର ଆଦିମ ମାନବ ଅନୁଭବ କରିଚି ବିଶ୍ୱ ସୃଷ୍ଟିର କେନ୍ଦ୍ରରେ ନାରୀ ଓ ପୃଥିବୀ ମାତାର ଅବିସ୍ମରଣୀୟ ଭୂମିକା ପୁନଶ୍ଚ ବୈଦିକ ସୂକ୍ତିର ପୃଥିବୀକୁ ମନୁଷ୍ୟର ମାତା ମନୁଷ୍ୟକୁ ତା'ର ସନ୍ତାନ

ବୋଲି ସ୍ୱୀକାର କରାଯାଇଛି । ଭାରତୀୟ ସ୍ମୃତିକାର ମହର୍ଷି ମନୁ ନାରୀକୁ ପୃଥିବୀ ସହ ତୁଳନା କରି ଲେଖିଲେ : କ୍ଷେତ୍ରଭୂତା ନାରୀ ବୀଜଭୂତା ସ୍ମୃତା ପୁମାନ । ପୁନଶ୍ଚ ଭାରତୀୟ ସଂସ୍କୃତିରେ ଗର୍ଭଧାରଣର କ୍ଷମତା ଏବଂ ମାସିକ ଋତୁଚକ୍ରର ନିୟମ କାରଣରୁ ବିଚାର କଲେ ପୃଥିବୀ ମାତା ଏବଂ ନାରୀର କଳ୍ପନୀୟ ଉଦାହରଣ ଆମ ଓଡ଼ିଶାରେ ପାଳିତ ହୋଇ ଆସୁଥିବା ରଜପର୍ବରେ ବସୁମାତା ରଜୋବତୀ ହେବା ହେତୁ ବିଶ୍ରାମ ଦିଏ । ଏଥିରୁ ସ୍ପଷ୍ଟ ହୁଏ, ଆଦିମ ସମାଜରେ ନାରୀର ଏକ ସ୍ୱତନ୍ତ୍ର ସମ୍ମାନ ଥିଲା । ତା'ର ସୃଷ୍ଟି ଶୀତଳତା ଯୋଗୁଁ ଆଦିମାନବ ତାକୁ ସମ୍ମାନ ପ୍ରଦର୍ଶନ କରୁଥିଲେ । ନାରୀ ପରି ଭୂମିଠାରେ ମଧ୍ୟ ଉର୍ବରତା ଶକ୍ତି ଏବଂ ପ୍ରଜନନ ଯୋଗ୍ୟତାର ସନ୍ଧାନ କଲା ଯେବେ ମଣିଷ ପଶୁପାଳନ ସହିତ ସ୍ଥାୟୀ ଭାବରେ କୃଷିକ୍ଷେତ୍ରରେ ନିବେଶ କଲା । ଲଙ୍ଗଳ ଶବ୍ଦ ଲିଙ୍ଗ ଶବ୍ଦରୁ ଉଦ୍ଭବ । ତେଣୁ ନାରୀ ଓ ପୃଥିବୀ ମାତାର ଏହି ସମ୍ବନ୍ଧକ୍ରମେ ପୂଜାରେ ବିକାଶ ଲାଭ କଲା ।

ଶାକ୍ତ ଉପନିଷଦଗୁଡ଼ିକ ଅନେକାଂଶରେ ତନ୍ତ୍ରର ନିକଟବର୍ତ୍ତୀ ହୋଇଥିବାରୁ ଏଥିରେ ବିନ୍ଦୁ, ନାଦ, ରଜ, ବୀଜ ସ୍ଥାନ, ଶକ୍ତି, ମନ୍ତ୍ର, ଯନ୍ତ୍ର, ଚକ୍ର ଏବଂ ତାରକ ଆଦିର ବ୍ୟବହାର ଦେଖିବାକୁ ମିଳେ । ବେଦ ଓ ଉପନିଷଦ ଯୁଗରେ ସୃଷ୍ଟ ଶକ୍ତି ଧାରଣା କ୍ରମ ବିକଶିତ ହୋଇ ପୁରାଣ ଯୁଗରେ ପଲ୍ଲବିତ ବିଶାଳ ବଟବୃକ୍ଷରେ ପରିଣତ ହୋଇଛି । ରାମାୟଣ ଓ ମହାଭାରତରେ ଶକ୍ତି ଉପାସନାର ବିଶେଷ ନିଦର୍ଶନ ମିଳୁନଥିଲେ ମଧ୍ୟ ଉମା, ରୁଦ୍ରାଣୀ, ପାର୍ବତୀ, ନାଗମାତା, ସିଂହିକା, ଚଣ୍ଡୀ, ଶ୍ରୀ, ଅନ୍ନପୂର୍ଣ୍ଣା, ପର୍ଣ୍ଣଶବରୀ ଆଦି ବିଭିନ୍ନ ନାମରେ ଦେବୀ ଉପାସନା ଦେଖିବାକୁ ମିଳେ । ଶକ୍ତି ଉପାସନା ସଂସ୍କୃତି ମଧ୍ୟରେ ଓତଃପ୍ରୋତ ଭାବେ ସଂଶ୍ଳିଷ୍ଟ ହୋଇ ରହିଥିବାରୁ ଜୈନ ଓ ବୌଦ୍ଧ ଧର୍ମରେ ଶକ୍ତି ଉପାସନାର ପ୍ରଭାବ ପରିଲକ୍ଷିତ ହୁଏ । ଚର୍ଯ୍ୟାପଦ, ପୁରାଣ, ଚଣ୍ଡୀ ପୁରାଣ, ବିଲଙ୍କା ରାମାୟଣ, ଲକ୍ଷ୍ମୀ ପୁରାଣ, କଳିକା ପୁରାଣ ଆଦି ଗ୍ରନ୍ଥଗୁଡ଼ିକରେ ଶାକ୍ତ ଧର୍ମର ମହନୀୟତା ପରିଲକ୍ଷିତ ହୁଏ ।

**ଶୈବ ଧର୍ମ-** ଶୈବ ଧର୍ମର ଉତ୍ପତ୍ତି ବିଷୟରେ ଆଲୋଚନା କରିବାକୁ ଯାଇ ଗବେଷକମାନେ ଆଦି ମାନବର ପ୍ରାଥମିକ ଆବଶ୍ୟକତା ଓ ତତ୍‌ଜନିତ ପ୍ରତିକ୍ରିୟା ଉପରେ ବିଶେଷ ଗୁରୁତ୍ୱ ଆରୋପ କରିଛନ୍ତି । ଆହାର ଅନ୍ୱେଷଣ ଓ ମୈଥୁନ ଆଦିମାନବଙ୍କ ପ୍ରଧାନ ଆବଶ୍ୟକତା ଥିଲା । ଶୈବ ଧର୍ମର ମୂଳଭିତ୍ତି ଶାକ୍ତଧର୍ମ ପରି ପ୍ରଜନନ କୈନ୍ଦ୍ରିକ ବୋଲି ଜଣାଯାଏ । ମହେଞ୍ଜୋଦାରୋ ଓ ହରପ୍ପାର ଆବିଷ୍କୃତ ପ୍ରତ୍ନତାତ୍ତ୍ୱିକରୁ ଏସବୁ ଉପାଦାନ ସଂଗ୍ରହ କରାଯାଇଛି । ମହେଞ୍ଜୋଦାରୋ ଓ ହରପ୍ପା କାଳୀନ ସଭ୍ୟତା କାଳରେ ହିଁ ପ୍ରାକ୍ ଶୈବ ଧର୍ମର ବିକାଶ କାଳ ବୋଲି କୁହାଯାଏ । ହରପ୍ପା ଶବ୍ଦକୁ ବ୍ୟାଖ୍ୟା କରି କିଛି ଗବେଷକ କୁହନ୍ତି ହର ଓ ଅପ୍ପା (ବାପା) ଶବ୍ଦର ମିଶ୍ରଣରୁ 'ହରପ୍ପା' ଶବ୍ଦ ସୃଷ୍ଟି ହୋଇଛି । ଯେଉଁ ନଗରୀରେ କି ଦିନେ ହରଙ୍କର ସାର୍ବଭୌମତ୍ୱ ପ୍ରତିପାଦିତ ହେଉଥିଲା । ହରପ୍ପାର ମୋହରମାନଙ୍କର ଏହି ହରଙ୍କୁ ଶିଙ୍ଗ ଓ ଅନ୍ୟାନ୍ୟ ପ୍ରାକୃତିକ ପଶୁ ସୁଲଭ ଅବୟବ ଦ୍ୱାରା ଭୂଷିତ କରାଯାଉଥିଲା । ପୁନଶ୍ଚ ମହେଞ୍ଜୋଦାରୋରୁ ପ୍ରାପ୍ତ ଏକ ମୁଦ୍ରାରେ ଯୋଗାସନାସୀନ ପଶୁପତି, ଦୁଇଟି ନିଷାଦ ଓ ଦୁଇଟି ସର୍ପର ଚିତ୍ର ଅଙ୍କିତ ହୋଇଥିବାର ଦେଖିବାକୁ ମିଳେ । ଏଠାରେ ଶିବଙ୍କ ସହ ନିଷାଦ ଓ ସର୍ପରୁ ଏକୀକରଣ ତାଙ୍କର ଆଦିମାନବ ପ୍ରିୟତା ଓ ଯୌନ ପ୍ରଚୋଦନାର ପରିଚୟ ପ୍ରଦାନ କରିଥାଏ । ସର୍ପକୁ ସର୍ବଦା ଅନନ୍ତ ଯୌବନର ଅଧିକାରୀ ବା ଚରମ କାମୁକତାର ପ୍ରତୀକ ହିସାବରେ ଗ୍ରହଣ କରାଯାଏ । ସେ ମଧ୍ୟ ବଂଶବୃଦ୍ଧିର ପ୍ରତୀକ । ତେଣୁ ମୋଟ ଉପରେ କହିଲେ ପ୍ରାଗ୍ ଐତିହାସିକ ଯୁଗର ପ୍ରୋଟୋ ଶିବ ଥିଲେ ଯୁଗର ଯୌନ ଉପାସନା ଓ ପ୍ରକୃତି ପୂଜାର ଅନ୍ୟତମ ପ୍ରତିନିଧି । କାଳକ୍ରମେ ସିନ୍ଧୁ ଉପତ୍ୟକାବାସୀ ରୁଦ୍ର ଭାବରେ ଶିବଙ୍କୁ ଉପାସନା କରିବାକୁ ଆରମ୍ଭ କଲେ । ରୁଦ୍ରର ଶାବ୍ଦିକ ରୂପ ହେଉଛି, ଯେ ରୋଦନ କରେ । ଏହି ଶବ୍ଦକୁ ବ୍ୟାଖ୍ୟା କଲେ ବଜ୍ରର ଗର୍ଜନ ସହ ଏକୀଭୂତ । ବଜ୍ରପାତ ସହିତ ତୁଳନା କରି ରୁଦ୍ରଙ୍କୁ ଘନ ବାଦଲ ମଧ୍ୟରେ ଅନୁରଞ୍ଜିତ ଚପଳା, ଅଶନି, ନିର୍ଘୋଷ ଓ ଘୋର ବର୍ଷା ରୂପେ ଗ୍ରହଣ କରାଯାଇଛି । ଋଗ୍‌ବେଦରେ ରୁଦ୍ରଙ୍କ ବିଭିନ୍ନ ନାମକୁ ବ୍ୟାଖ୍ୟା କରାଯାଇଛି । ଯଥା ସମୟରେ ଘୋଟି ଆସୁଥିବା ଧୂସର ରଙ୍ଗର ମେଘମାଳା ଏବଂ ତନ୍ମଧ୍ୟରୁ ସ୍ଫୁରିତ ବିଜୁଳିର ଚମକ ସହ 'ଦେବ ବରାହ' ନାମକ ଗାଢ଼ କୃଷ୍ଣ ମେଘମାଳା ମଧ୍ୟରେ ବରାହର ଶ୍ୱେତଦନ୍ତ ପରି ଶ୍ୱେତ ଚପଳାର ତରଙ୍ଗ ସହ, ମହାଭିଷକ୍ ରୂପକୁ ବର୍ଷାକାଳୀନ ଔଷଧ ବୃକ୍ଷମାନଙ୍କର ପ୍ରବଳତା

ସହ ଏବଂ 'ବୃଷଭ' ନାମକୁ 'ବୃଷ' ଧାତୁ ନିଷ୍ପନ୍ନ ବୋଲି କୁହାଯାଇଛି । ବୃଷଭ ଅଧିକ ପ୍ରଜନନ ଶକ୍ତିସମ୍ପନ୍ନ । ସେହିପରି ବର୍ଷା ଋତୁ କାମୋଦ୍ଦୀପକ ଓ ପଶୁ, ମନୁଷ୍ୟ ଏବଂ ବୃକ୍ଷଲତା ସମସ୍ତଙ୍କର ବଂଶବୃଦ୍ଧିର ସମୟ ବୋଲି କୁହାଯାଇଛି । ଏହିପରି ବିଭିନ୍ନ ବେଦ, ଉପନିଷଦ, ପୁରାଣ, ମହାଭାରତ, ରାମାୟଣ, ବାୟୁପୁରାଣ, ମତ୍ସ୍ୟପୁରାଣ, ଲିଙ୍ଗପୁରାଣ, ସୂର୍ଯ୍ୟପୁରାଣ, ବ୍ରହ୍ମ ପୁରାଣ, ବରାହ ପୁରାଣ ଓ ଶିବ ପୁରାଣ ଆଦି ଗ୍ରନ୍ଥଗୁଡ଼ିକରେ ଶିବଙ୍କର ବ୍ୟାପକ ସ୍ମରଣ ସମ୍ବନ୍ଧରେ ତଥ୍ୟ ମିଳେ । ଭାରତୀୟ ସଂସ୍କୃତିରେ ଲିଙ୍ଗ ଉପାସନା ସୁପ୍ରାଚୀନ । ଖ୍ରୀଷ୍ଟୀୟ ୩ୟ ଶତାବ୍ଦୀରେ ଓଡ଼ିଶାରେ ଶୈବଧର୍ମର ବ୍ୟାପକ ବିସ୍ତାର ହୋଇଥିଲା । ପଞ୍ଚମ ଶତାବ୍ଦୀର ପରବର୍ତ୍ତୀ କାଳରେ ଓଡ଼ିଶାର କଳା ଓ ଭାସ୍କର୍ଯ୍ୟରେ ଶୈବଧର୍ମର ପ୍ରଭାବ କ୍ରମେ ପରିଲକ୍ଷିତ ହେବାକୁ ଲାଗିଲା । ଦଣ୍ଡନାଚ, ପାଟୁଆ ନାଚ, ଚଡ଼କ ପୂଜା ଓ ଛଉନାଚ ପ୍ରଭୃତି ଲୋକନୃତ୍ୟରେ ତଥା ଢଗଢମାଳି ଡାକ ବଚନ, ଖନା ବଚନ, ମନ୍ତ୍ର ତନ୍ତ୍ର ଆଦିରେ ଶୈବ ଧର୍ମର ପ୍ରଭାବ ଦେଖିବାକୁ ମିଳେ । ଓଡ଼ିଆ ସାହିତ୍ୟରେ ବତ୍ସା ଦାସଙ୍କ କଳସା ଚଉତିଶା ଓ ଅବଧୂତ ସ୍ୱାମୀଙ୍କ ରୁଦ୍ରସୁଧାନିଧି, ସୋମନାଥ ବ୍ରତକଥାରେ ଶୈବ ଧର୍ମର କଥା ବିଶେଷ ଭାବରେ ପରିଦୃଷ୍ଟ ହୁଏ । ଓଡ଼ିଶାର ପ୍ରସିଦ୍ଧ ଶିବଲିଙ୍ଗ ଯଥା– ଲିଙ୍ଗରାଜ, ଲୋକନାଥ, ଧବଳେଶ୍ୱର, ଚନ୍ଦ୍ରଶେଖର, ସ୍ୱପ୍ନେଶ୍ୱର, ଗୋକର୍ଣ୍ଣେଶ୍ୱର, ଆଖଣ୍ଡଳମଣି ଓ ଶରଣକୁଳ, ଲଡୁବାବା ପ୍ରଭୃତି ଶିବଙ୍କର ଅନେକ ନାମକୁ ନେଇ ବହୁ ସ୍ତୁତି, ସ୍ତବ, ଚରିତ ଭଜନ, ଜଣାଣ, ଚଉତିଶା ଆଦି ରଚିତ ହୋଇଛି, ଯାହା ଶୈବ ଧର୍ମର ପ୍ରସାର କ୍ଷେତ୍ରରେ ମୁଖ୍ୟ ଭୂମିକା ଗ୍ରହଣ କରିପାରିଛି ।

**ଜୈନ ଧର୍ମ–** ଜୈନ ଧର୍ମ ପୃଥିବୀର ସର୍ବପ୍ରାଚୀନ ସଂସ୍କାରବାଦୀ ଧର୍ମ । ଜୈନ ଧର୍ମର ସୃଷ୍ଟି ସମ୍ପୂର୍ଣ୍ଣ ଅଭିନବତ୍ୱ । ଆର୍ଯ୍ୟ ତଥା ପ୍ରାଚୀନ ଦ୍ରାବିଡ଼ ସମ୍ପ୍ରଦାୟର ଏହା ଥିଲା ଅଧିକ ନିକଟବର୍ତ୍ତୀ । ସତ୍ୟ, ଅହିଂସା, ଅଚୌର୍ଯ୍ୟ, ଅନଧିକାର ଓ ବ୍ରହ୍ମଚର୍ଯ୍ୟ ପରି ମାନବିକ ଦିଗ ଉପରେ ହିଁ ଏହି ଧର୍ମ ଗୁରୁତ୍ୱ ଦେଉଥିଲା । ଯୁଗଯୁଗର ପରୀକ୍ଷା ପରେ ସଚେତନ ମଣିଷ ଉପଲବ୍ଧ କଲେ ମଣିଷର ସର୍ବଶ୍ରେଷ୍ଠ ଲକ୍ଷ୍ୟ ହେଉଛି ମୋକ୍ଷ । ଅନ୍ୟକୁ ଦୁଃଖ ଦେବା ନୁହେଁ ବରଂ ସର୍ବଜନ ସୁଖାୟ ନୀତି ଉପରେ ପର୍ଯ୍ୟବସିତ ହେବା ଉଚିତ । ମୋକ୍ଷ ସାଧନା ପାଇଁ ମନୁଷ୍ୟକୃତ ଇଚ୍ଛା ନୁହେଁ ଧର୍ମାନ୍ଧତା ନୁହେଁ, ଅନ୍ଧବିଶ୍ୱାସ ନୁହେଁ ବରଂ ଆତ୍ମ ସୁଖ ବଳି, କାମନା- ବାସନାର ବଳି, ନିଜକୁ ସଂଶୋଧିତ କରିବାର ସମୟ, ଜୀବନର ତତ୍ତ୍ୱକୁ ଉପଲବ୍ଧି କରିବାର ସମୟ, ନିଜକୁ ଚିହ୍ନିବାର ପ୍ରୟାସ ଇତ୍ୟାଦିର ମହନୀୟତା ଜୈନ ଧର୍ମ ଶିଖାଇଛି । ଯାଗ, ଯଜ୍ଞ, ପଶୁବଳି, ଜୀବ ହିଂସାର କୌଣସି ପ୍ରୟୋଜନୀୟତା ନାହିଁ । ଏକନିଷ୍ଠ ସାଧନା ମନୁଷ୍ୟକୁ ଆଣିଦେବ ଜୀବନତ୍ୱ ଓ ମୋକ୍ଷ । ଏହି ଜୀବତ୍ୱ ପ୍ରାପ୍ତିର ସାଧନାମୟ ଧର୍ମ ଜୀବନ ନାମ ଜୈନ ଧର୍ମ । ଋଷଭ ଦେବଙ୍କୁ ଜୈନଧର୍ମମାନଙ୍କର ପ୍ରଥମ ତୀର୍ଥଙ୍କର କୁହାଯାଏ, ଏହି ଋଷଭ ପୁଣି ହେଉଛନ୍ତି ହିନ୍ଦୁମାନଙ୍କ ଚତୁର୍ବିଂଶ ଅବତାର ମଧ୍ୟରୁ ଜଣେ । ତାଙ୍କ ପରିଚୟ ଋଷି ବା ରାଜା ଭାବରେ ଜୀବନର ଆଦର୍ଶ ଓ ସାଧନା ଯୋଗୁଁ ସେ ହେଲେ ଅବତାର । କାଳକ୍ରମେ ଆର୍ଯ୍ୟମାନଙ୍କ ଆଗମନ ଓ ଦୁଇଟି ସଭ୍ୟତାର ମିଶ୍ରଣ ଫଳରେ ବିଶ୍ୱବିଖ୍ୟାତ ବୈଦିକ ସଭ୍ୟତାର ସୃଷ୍ଟି ହେଲା । ବେଦର ମନ୍ତ୍ରଦ୍ରଷ୍ଟା ଋଷି ମାନବ ଜୀବନରେ ଶାନ୍ତି ଓ ପ୍ରଗତି ପାଇଁ ସତତ ଉଦ୍ୟମ କରୁଥିଲେ । ପବିତ୍ର ତଥା ସୁସଂହତି ଜୀବନଯାପନ ଲାଗି ସେମାନେ କର୍ମ, ପୂଜା, ଉପାସନା ଓ ଯାଗଯଜ୍ଞର ସୂତ୍ରପାତ କଲେ । ସମାଜରେ ବିଜ୍ଞ ବ୍ରାହ୍ମଣଙ୍କ ହାତରେ ଯଜ୍ଞକର୍ମ ଦିଆଗଲା ଏବଂ ଅନ୍ୟ ତିନିବର୍ଣ୍ଣ କ୍ଷତ୍ରିୟ, ବୈଶ୍ୟ, ଶୁଦ୍ରମାନଙ୍କୁ ଏଥିରୁ ବାଦ୍ ଦିଆଗଲା । ନେମିନାଥ, ମହାବୀର ଓ ପାର୍ଶ୍ୱନାଥ ପ୍ରଭୃତି ୨୦ଜଣ ତୀର୍ଥଙ୍କର ଜୈନଧର୍ମର ପ୍ରଚାରକ ଥିଲେ । ଜୈନଧର୍ମର ତ୍ରିରତ୍ନ ସମ୍ୟକ୍ ଦର୍ଶନ, ସମ୍ୟକ୍ ଜ୍ଞାନ ଓ ସମ୍ୟକ୍ ଚରିତ୍ର ଉପରେ ପ୍ରତିଷ୍ଠିତ । ବିନୟ ଏହାର ଭିତ୍ତିଭୂମି । ଜୈନ ଧର୍ମର ମୁଖ୍ୟ ଉଦ୍ଦେଶ୍ୟ ଥିଲା ସମାଜରୁ ଶୋଷଣ ଓ ସୁବିଧାବାଦ ବିରୁଦ୍ଧରେ ଏକ ସାଂସ୍କୃତିକ ବିପ୍ଳବ । ଜୈନ ଧର୍ମ ଥିଲା ଏକ ସମତା ଧର୍ମ ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ଏଥିରେ ସବୁ ସମ୍ପ୍ରଦାୟର ଲୋକଙ୍କୁ ଦୀକ୍ଷିତ କରାଯାଉଥିଲା । ମନୁଷ୍ୟର ଜାତି ବିଭାଗ ଜନ୍ମାନୁସାରୀ ନ ହୋଇ କର୍ମାନୁସାରୀ ହେବା ଉଚିତ୍ । ଏହା ମହାବୀରଙ୍କ ଉକ୍ତି ଥିଲା । ଓଡ଼ିଶାରେ କଳିଙ୍ଗର ବିଶିଷ୍ଟ ରାଜା କରାକଣ୍ଡୁଙ୍କ ଜୈନଧର୍ମ ଗ୍ରହଣ ଓ ପୋଷକତା ଫଳରେ ଜୈନଧର୍ମ କଳିଙ୍ଗ ଦେଶର ରାଜଧର୍ମରେ ପରିଣତ ହେଲା । ଫଳରେ କଳିଙ୍ଗବାସୀ ଜୈନଧର୍ମ ପ୍ରତି ସେମାନଙ୍କର ଆତ୍ମୀୟତା ପ୍ରକାଶ

କଲେ। ଶେଷତୀର୍ଥଙ୍କର ମହାବୀରଙ୍କ ଓଡଶା ଆଗମନ ଓ ଜୈନଧର୍ମ ପ୍ରଚାର ପାଇଁ ଆମନ୍ତ୍ରଣ କରିଥିଲେ। ତତ୍‌କାଳୀନ କଳିଙ୍ଗର ରାଜଧାନୀ ତୋଷାଳିଠାରେ ଏହି ଜୈନ ଧର୍ମର ପ୍ରବଚନ ପ୍ରଦାନ କରିଥିବା କଥା ହାତୀଗୁମ୍ଫା ଶିଳାଲେଖରେ ଲିପିବଦ୍ଧ ରହିଥିବା କଥା ଜଣାଯାଏ। ପରେ ମୌର୍ଯ୍ୟବଂଶ, ଅଶୋକ, ଐର ଖାରବେଳ, ନାଗ ଓ ଗୁପ୍ତ ବଂଶର କେଶରୀ ବଂଶର ବହୁ ରାଜାମାନେ ଓଡ଼ିଶାରେ ଜୈନ ଧର୍ମର ପ୍ରଚାର ଓ ପ୍ରସାର କରାଇଥିଲେ।

**ବୌଦ୍ଧ ଧର୍ମ:** ଭାରତୀୟ ସାଂସ୍କୃତିକ ଇତିହାସରେ ମହାବୀର ଓ ଗୌତମ ପ୍ରଥମ କରି ବିପ୍ଳବର ସ୍ୱର ଉତ୍ତୋଳନ କରିଥିଲେ। ତତ୍‌କାଳୀନ ମାନବ ସମାଜକୁ ଏକ ବିରାଟ ପରିବର୍ତ୍ତନର ସ୍ୱରରେ ଛନ୍ଦାୟିତ କରି ଏକ ସୁଗଠିତ, ନିର୍ଦ୍ଦିଷ୍ଟ ଆଲୋକ ମାର୍ଗ ଦେଖାଇ ଦେଇଥିଲେ। ସମାଜ ସଂସ୍କାରକ ଭଗବାନ ବୁଦ୍ଧ ଯେଉଁ ନୂତନ ଧର୍ମର ଆବିଷ୍କାର କଲେ, ତାହା ବୌଦ୍ଧଧର୍ମ ନାମରେ ଅଭିହିତ। ସମକାଳୀନ ଭାରତୀୟ ସମାଜର ଅର୍ଥନୈତିକ, ରାଜନୈତିକ ଓ ସାମାଜିକ ବାତାବରଣ ବୌଦ୍ଧ ଧର୍ମ ବାତାବରଣ ବୌଦ୍ଧ ଧର୍ମ ପରି ଏକ ବିପ୍ଳବାତ୍ମକ ମହାନ ଧାର୍ମିକ ଆନ୍ଦୋଳନର ସୂତ୍ରପାତ କରିବାରେ ସକ୍ଷମ ହୋଇଥିଲା। ପ୍ରଥମେ ବଣିକ ବୈଶ୍ୟ ଜାତି ହିଁ ବୁଦ୍ଧଙ୍କର ଶିଷ୍ୟ ହୋଇଥିଲେ। ସେସମୟରେ ଅନେକ ସାମାଜିକ ବିଶୃଙ୍ଖଳା ବିରୁଦ୍ଧରେ ଭଗବାନ ବୁଦ୍ଧ ପ୍ରଥମେ ସ୍ୱର ଉତ୍ତୋଳନ କରିଥିଲେ। ଜଣେ ସମାଜ ସଂସ୍କାରକ ହିସାବରେ ବୁଦ୍ଧଦେବ ପ୍ରଥମେ ବର୍ଣ୍ଣାଶ୍ରମ ଧର୍ମରୁ ଉଚ୍ଛେଦ ସାଧନ ଜାରି ରଖି ସମାଜରେ ଜାତି ଧର୍ମ ବର୍ଣ୍ଣ ନିର୍ବିଶେଷରେ ସମସ୍ତଙ୍କୁ ସମାନତା ଦୃଷ୍ଟିକୋଣରୁ ବିଚାର କରିବା ତାଙ୍କର ଲକ୍ଷ୍ୟ ଥିଲା। ନିର୍ବାଣ ଲାଭକୁ ବୁଦ୍ଧ ମାନବ ଜୀବନର ଚରମ ଲକ୍ଷ୍ୟ ବୋଲି ପ୍ରଚାର କରିଥିଲେ। ପବିତ୍ର ଜୀବନଯାପନ ପାଇଁ ଅଷ୍ଟାଙ୍ଗ ମାର୍ଗର ନିର୍ଦ୍ଦେଶ ଦେଇଥିଲେ। ସତ୍ ଚିନ୍ତା, ସତ୍ ବିଶ୍ୱାସ, ସତ୍ ଚେଷ୍ଟା, ସତ୍ ଧ୍ୟାନ, ସତ୍ ବାକ୍ୟ, ସତ୍ ଜୀବନଯାତ୍ରା, ସତ୍ ଆକାଂକ୍ଷା ଓ ସତ୍ ସ୍ୱଭାବ, ବୌଦ୍ଧ ଧର୍ମର ସରଳତା, ଆବେଗିକ ଉପାଦାନ, କୋହଳ ନୀତି, ଲୋକ ଭାଷାର ଧର୍ମ ପ୍ରଚାର ବୌଦ୍ଧ ଧର୍ମକୁ ବିଶେଷ ଲୋକପ୍ରିୟ କରିପାରିଥିଲେ। ବୁଦ୍ଧଦେବଙ୍କର ମହାନିର୍ବାଣ ପରେ ତାଙ୍କର ଶରୀରବଶେଷକୁ ବୌଦ୍ଧଭିକ୍ଷୁମାନେ ବିଭିନ୍ନ ଦେଶରେ ସ୍ମୃତି ସ୍ତୂପମାନ ତିଆରି କରିଥିଲେ। ଏହି ସମୟରେ ଥେରକ୍ଷମ ନାମକ ଏକ ବୌଦ୍ଧଭିକ୍ଷୁ ବୁଦ୍ଧଙ୍କର ଏକ ବାମ କଳଦାନ୍ତକୁ ନେଇ କଳିଙ୍ଗ ଆସିଥିଲେ। ସେସମୟର ରାଜା ବ୍ରହ୍ମ ଦତ୍ତଙ୍କର ବୌଦ୍ଧଧର୍ମ ଓ ବୁଦ୍ଧଦେବଙ୍କ ପ୍ରତି ଯଥେଷ୍ଟ ଅନୁରକ୍ତି ରହିଥିଲା। ତେଣୁ ବୁଦ୍ଧଦେବଙ୍କ ନାମାନୁସାରେ ତାଙ୍କ ରାଜ୍ୟର ନାମ ଦନ୍ତପୁର ବୋଲି ରଖିଥିଲେ। ଅଶୋକଙ୍କ ସମୟକୁ ନିଆଗଲେ ଯୁଦ୍ଧର କରୁଣ ବିଭୀଷିକା ଆଶୋକଙ୍କୁ ଚଣ୍ଡାଶୋକରୁ ଧର୍ମାଶୋକରେ ପରିଣତ କରାଇଥିଲା ଏବଂ ସେହିଦିନଠାରୁ ସେ ବୌଦ୍ଧଧର୍ମ ଗ୍ରହଣ କରିଥିଲେ। ଭୌମକର ବଂଶୀୟ ରାଜାମାନେ ଓଡ଼ିଶାରେ ବୌଦ୍ଧଧର୍ମର ପ୍ରସାର ନିମିତ୍ତ ବିଶେଷ ପ୍ରଯତ୍ନ କରିଥିଲେ। ଚର୍ଯ୍ୟାଗୀତିକା, ସାରଳା ମହାଭାରତ, ବୌଦ୍ଧ ବୀରସିଂହ ଓ ବୀରସିଂହ ଚଉତିଶା, ପଞ୍ଚସଖା ସାହିତ୍ୟରେ, ଆଧୁନିକ ଓଡ଼ିଆ ସାହିତ୍ୟରେ ତଟ ନିରଞ୍ଜନା, ବୌଦ୍ଧାବତାର, ମହାନିର୍ବାଣ, ସାରିପୁତ ଓ ମଧୁମତ୍ତା ଆଦି ସାର୍ଥକ ସୃଷ୍ଟିଗୁଡ଼ିକରେ ବୁଦ୍ଧଦେବଙ୍କ ଜୀବନଦର୍ଶନ କଥା ବର୍ଣ୍ଣିତ ରହିଛି। ଯାହା ବୌଦ୍ଧ ଧର୍ମର ପ୍ରସାର କ୍ଷେତ୍ରରେ ମହତ୍ୱ ପ୍ରତିପାଦନ କରେ।

**ନାଥ ଧର୍ମ :** ନାଥଧର୍ମର ସମ୍ପୂର୍ଣ୍ଣ ଆଦର୍ଶ ଓ ସ୍ୱରୂପ ତତ୍ତ୍ୱ ବିଶେଷତଃ ଯୋଗଦର୍ଶନକୁ ଅବଲମ୍ବନ କରୁଥିବାରୁ ନାଥ ସମ୍ପ୍ରଦାୟୀମାନଙ୍କୁ ଯୋଗୀ କୁହାଯାଏ। ଏହାର ମୂଳ ସାଧନା ହେଉଛି କାୟା ସାଧନା । କୁଳ କୁଣ୍ଡଳିନୀ ଶକ୍ତିର ସୁଷୁମ୍ନା ମଧ୍ୟବର୍ତ୍ତୀ ଚିତ୍ରାନାଡ଼ୀ ସାହାଯ୍ୟରେ ମସ୍ତକରେ ସ୍ଥିତ ସହସ୍ରାରେ ନିତ୍ୟବିରାଜିତ ଶିବଙ୍କ ସହିତ ମିଳନ ହିଁ ଯୋଗୀମାନଙ୍କର ଯୋଗ ସାଧନାର ପ୍ରଧାନ ଫଳ। ନାଥ ତତ୍ତ୍ୱର ମୂଳ ଉଦ୍ଦେଶ୍ୟ ହେଉଛି ଶିବ ଓ ଶକ୍ତି ମଧ୍ୟରେ ଲୋକ ଧାରଣାରେ ରହି ଯାବତୀୟ ପାର୍ଥକ୍ୟକୁ ପରିହାର କରିପାରିଲେ ସାଧକ ଶୂନ୍ୟ ବା ପରମାର୍ଥିକ ଅବସ୍ଥାକୁ ପ୍ରାପ୍ତ ହୋଇପାରିବ। ପରବର୍ତ୍ତୀ କାଳରେ ନାଥ ସାଧନା ମୂର୍ତ୍ତି ସାଧନରେ ପରିଣତ ହେବା ପରେ ଗୋରେଖ ଓ ମତ୍ସ୍ୟେନ୍ଦ୍ରଙ୍କର ଚତୁର୍ଭୁଜ ମୂର୍ତ୍ତିପୂଜା ପ୍ରବର୍ତ୍ତିତ ହୋଇଛି। ଓଡ଼ିଶାରେ ନାଥଧର୍ମ ମଙ୍ଗ ରାଜାମାନଙ୍କ ସମୟରୁ ହିଁ ବିଶେଷ ଦୃଷ୍ଟି ଆକର୍ଷଣ କରିଥିଲା । ଦ୍ୱାଦଶ ଶତାବ୍ଦୀର ସିଦ୍ଧ ସାଧକ ଗୋରେଖନାଥଙ୍କ ପ୍ରବର୍ତ୍ତିତ ନାଥଧର୍ମ ସମଗ୍ର ଭାରତ ବର୍ଷରେ ଲୋକପ୍ରିୟ ହୋଇ ଉଠିଥିଲା, ଯାହାର ପ୍ରଭାବ ସେ ଓଡ଼ିଶାର ଧର୍ମଭୂମି ଉପରେ ପକାଇଥିଲେ। ବହୁ ପ୍ରାଚୀନ କାଳରୁ ଶୂନ୍ୟ ତତ୍ତ୍ୱ ଋଗ୍‌ବେଦୀୟ

ସାହିତ୍ୟରୁ ଆରମ୍ଭ କରି ବୌଦ୍ଧରୁ ଜୈନ ଓ ବୈଷ୍ଣବ ପ୍ରଭୃତି ଧର୍ମ ସମୂହରେ ପରିଲକ୍ଷିତ ହୋଇଥାଏ । ନାଥ ଧର୍ମରେ ମଧ୍ୟ ଶୂନ୍ୟତ୍ୱ ଓ ଶୂନ୍ୟ ସାଧନାର ସ୍ଥାନ ରହିଛି । ଓଡ଼ିଶାରେ ନାଥଧର୍ମର ବାର ସମ୍ପ୍ରଦାୟ ଅନୁସାରେ ସିଦ୍ଧମାନଙ୍କ ପାଇଁ ବାରଗୋଟି ପ୍ରଧାନ ପୀଠ ଥିଲା । ସେମାନଙ୍କ ମଧ୍ୟରୁ କଟକର କିଆରବାବା, ହରିହରପୁର, ଚଉଦ କୁଲାଟ, ପଦ୍ମପୁର, ବାରସ୍ୱତୀ ମଠ ଢେଙ୍କାନାଳର କପିଳାସ ମଠ ପ୍ରଧାନ ଥିଲା । ଓଡ଼ିଶାରେ ଖ୍ରୀଷ୍ଟୀୟ ଦ୍ୱାଦଶ ଶତାବ୍ଦୀବେଳକୁ ନାଥଧର୍ମର ଆବିର୍ଭାବ ନାଥଚାର୍ଯ୍ୟମାନଙ୍କ ଧର୍ମର ମାର୍ଗ ଥିଲା । କେବଳ ଶୁଷ୍କ ଯୌଗିକ ମାର୍ଗ, ଯୋଗ ସିଦ୍ଧର ଉପାୟ, ତା'ର ଫଳାଫଳ ଚକ୍ରସାଧନ, ବିଭିନ୍ନ ଚକ୍ରମାନଙ୍କର ବର୍ଣ୍ଣନା, ପବନ ବିଚାର ଓ ନାଡ଼ୀ ସଂସ୍ଥାନ ପ୍ରଭୃତି । ଯୋଗ୍ୟତାମୂଳକ ବିଚାର ଓ ଆଧ୍ୟାତ୍ମିକ ଜିଜ୍ଞାସା ପ୍ରଧାନ ଧର୍ମ ଓ ଦର୍ଶନ ଥିଲା । ନାଥଧର୍ମର ପ୍ରସାର କ୍ଷେତ୍ରରେ ଗୋରକ୍ଷନାଥଙ୍କ ଭୂମିକା ଅନବଦ୍ୟ । ସେ ବହୁ ଭାଷାର ବିଦ୍ୱାନ ଥିଲେ । ତେଣୁ ପ୍ରତ୍ୟେକ ଭାଷାର ଲୋକଙ୍କ ପାଇଁ ଲୋକଭାଷାରେ ନାଥଧର୍ମର ମୂଳତତ୍ତ୍ୱମାନଙ୍କୁ ବ୍ୟାଖ୍ୟା କରି ଗ୍ରନ୍ଥମାନ ରଚନା କରିଥିଲେ । ଓଡ଼ିଆ ସାହିତ୍ୟରେ ନାଥଧର୍ମର ବହୁ ବିଷୟକ ଉପାଦାନମାନ ରହିଛି । ନାଥଧର୍ମର ତତ୍ତ୍ୱ ଓ ଦର୍ଶନ ସହିତ ଓଡ଼ିଆ ସାହିତ୍ୟର ବିଭିନ୍ନ ବିଭାଗରେ ଦର୍ଶନ ତତ୍ତ୍ୱ, ଆଚରଣ ଏବଂ ଗୋରକ୍ଷ, ମତ୍ସ୍ୟେନ୍ଦ୍ର ସିଦ୍ଧାଚାର୍ଯ୍ୟଙ୍କ ପରି ନାଥସାଧୁମାନଙ୍କର ବର୍ଣ୍ଣନା କରାଯାଇଛି । ଶିଶୁବେଦ, ଅମରକୋଷ ଗୀତା, ସପ୍ତାଙ୍ଗ ଯୋଗସାର ଗୀତା, ଅଷ୍ଟାଙ୍ଗ ଯୋଗ ଧାରଣା, ଗୋବିନ୍ଦ ଚନ୍ଦ୍ର, ଶିବ ସ୍ୱରୋଦୟ, ଟୀକା ଗୋବିନ୍ଦଚନ୍ଦ୍ର, ଗୋରେଖ ସଂହିତା, ସାରଳା ମହାଭାରତ, ପଞ୍ଚସଖା ସାହିତ୍ୟ, ରୁଦ୍ରସୁଧାନିଧି ପ୍ରଭୃତିରେ ନାଥଧର୍ମର ସଂକେତ ଦେଖିବାକୁ ମିଳେ । ନିର୍ଗୁଣ ପରଂବ୍ରହ୍ମଙ୍କ ଉପାସନା ଧ୍ୟାନ, କର୍ମ ଓ ଭକ୍ତି ଅପେକ୍ଷା ଜ୍ଞାନର ପ୍ରାଧାନ୍ୟ, ପବିତ୍ରତା ଏବଂ ବିଭିନ୍ନ ରୂଢ଼ି, ପ୍ରତୀକ ଓ ରୂପକ ମାଧ୍ୟମରେ ଜଟିଳତତ୍ତ୍ୱର ସରଳ ପରିପ୍ରକାଶ ନାଥଧର୍ମର ବିଶେଷତ୍ୱ ପରିପ୍ରକାଶ କରେ । ଅନ୍ୟ ଧର୍ମମାନଙ୍କ ପରି ନାଥ ଧର୍ମକୁ ରାଜ ସମର୍ଥନ ମିଳିନଥିଲା । ଫଳରେ କବୀର, ଜ୍ଞାନଦେବଙ୍କ ପରି ସିଦ୍ଧଯୋଗୀମାନଙ୍କର ବ୍ୟକ୍ତିତ୍ୱବୋଧ ଉପରେ ଧର୍ମର ପ୍ରଚାର ଓ ପ୍ରସାର ନିର୍ଭର କରୁଥିଲା । ସପ୍ତଦଶ ଅଷ୍ଟାଦଶ ଶତାବ୍ଦୀ ବେଳକୁ ଓଡ଼ିଶାରେ ସେଭଳି ଉଚ୍ଚ ବ୍ୟକ୍ତିତ୍ୱସମ୍ପନ୍ନ ନାଥ ଯୋଗୀଙ୍କର ଆବିର୍ଭାବ ହୋଇପାରିଲା ନାହିଁ । ଫଳରେ ନାଥଧର୍ମ ଯେଉଁ କେତେକ ଗୃହସ୍ଥଙ୍କ ଦ୍ୱାରା ଅନୁସୃତ ହୋଇଥିଲା ସେମାନଙ୍କର 'ଅଲାବୁ ପାତ୍ର', 'କେନ୍ଦରା', 'ଭିକ୍ଷାବୃତ୍ତି' ଓ 'ଭଜୁକି ନା ରାମ ନାମରେ ଗୋବିନ୍ଦ'ଗୀତ ମଧ୍ୟରେ ସୀମିତ ରହିଗଲା ।

**ମହିମା ଧର୍ମ :** ଓଡ଼ିଶାର ଏକାନ୍ତ ନିଜସ୍ୱ ଧର୍ମ ଭାବରେ ମହିମା ଧର୍ମ ପ୍ରକାଶିତ । ମହିମା ସ୍ୱାମୀ ଏହି ଧର୍ମର ଆବିଷ୍କାରକ ଓ ପ୍ରଚାରକ । ଊନବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ଏହାର ଆବିର୍ଭାବ । ଓଡ଼ିଶାରୁ ଏହା ପଶ୍ଚିମବଙ୍ଗ, ବିହାର, ଆନ୍ଧ୍ରପ୍ରଦେଶ, ଆସାମ ଓ ଇନ୍ଦୋର ପ୍ରଭୃତି ରାଜ୍ୟଗୁଡ଼ିକୁ ପରିବ୍ୟାପ୍ତ ହୋଇଥିଲା । ଅଷ୍ଟାଦଶ ଓ ଊନବିଂଶ ଶତାବ୍ଦୀରେ ଓଡ଼ିଶା ଆଧ୍ୟାତ୍ମିକ ଅବକ୍ଷୟତାରେ ପରାଭୂତ ହୋଇପଡ଼ିଥିଲା । ସମାଜରେ ଲୋକଙ୍କ ପ୍ରତି ରାଜା ଓ ଜମିଦାରମାନଙ୍କ ଅତ୍ୟାଚାର ଏବଂ ଜାତିପ୍ରଥାର ଦୁର୍ବିସହ ପରିସ୍ଥିତି ଜନସାଧାରଣଙ୍କୁ ଆଧ୍ୟାତ୍ମିକ କର୍ମରୁ ବଞ୍ଚିତ କଲା । ସେହିପରି ଏକ ଘଡ଼ିସନ୍ଧି ମୁହୂର୍ତ୍ତରେ ସତ୍ୟ ମହିମା ଧର୍ମର ସୃଷ୍ଟି ହୋଇଥିଲା । ଏଥିରେ ରହିଥିଲା ପ୍ରଚଳିତ ଅନ୍ଧ ପରମ୍ପରା ବିରୁଦ୍ଧରେ ବିପ୍ଳବ ଏବଂ ସମସ୍ତଙ୍କୁ ଭ୍ରାତୃବନ୍ଧନରେ ବାନ୍ଧିଦେବାର ପ୍ରୟାସ । ସନ୍ଥକବି ଭୀମଭୋଇଙ୍କ ରଚନାବଳୀ, ଶ୍ୟାମଘନ ଦାସଙ୍କ 'ଅଲେଖଲୀଳା' ଏବଂ ମହିମାସାଧୁ ବିଶ୍ୱନାଥ ବାବାଙ୍କ 'ସତ୍ୟମହିମା' ଧର୍ମର ଇତିହାସ ଗ୍ରନ୍ଥରୁ ଓଡ଼ିଶାରେ ଏହି ଧର୍ମର ଆବିର୍ଭାବ ସମ୍ପର୍କରେ ସୂଚନା ମିଳେ । ମହିମା ସ୍ୱାମୀଙ୍କ ପ୍ରକୃତ ନାମ ମୁକୁନ୍ଦ ଦାସ ବୋଲି 'ତତ୍ତ୍ୱବୋଧିନୀ' ଗ୍ରନ୍ଥରେ ପ୍ରକାଶିତ । ଏହି ମହିମାଧର୍ମର ପ୍ରଥମ ପ୍ରଚାରକ ପ୍ରଥମେ ହିମାଳୟର କୈଳାସରୁ ଓଡ଼ିଶା ଅଭିମୁଖେ ଆସିଥିଲେ । ଏପରି ବହୁ ନାଗସନ୍ନ୍ୟାସୀ ଉତ୍କଳରେ ବହୁବର୍ଷ ରହିବା ପରେ ଓଡ଼ିଆ ଭାଷାକୁ ନିଜ ଧର୍ମ ପ୍ରଚାର ଲାଗି ବ୍ୟବହାର କରୁଥିଲେ । ମହିମା ସାଧୁମାନଙ୍କୁ ନାଗା ସାଧୁ ମଧ୍ୟ କୁହାଯାଏ । କାରଣ ନାଗାମାନଙ୍କର ଆଚରଣ ଓ ଧର୍ମ ଜୀବନ ମହିମାସ୍ୱାମୀଙ୍କ ଆଚରଣ ସହ ଅନେକ ସକଳ କର୍ମରେ ପରଂବ୍ରହ୍ମଙ୍କୁ ସ୍ମରଣ କରିବା । ସେ ପିତା, ମାତା, ଭାଇ, ବନ୍ଧୁ ଓ କୁଟୁମ୍ବ ମନେ କରିବା । ଏଥିସହିତ ସମସ୍ତ ସାଂସାରିକ କର୍ମରେ ଜଡ଼ିତ ରହି ମଧ୍ୟ ପଦ୍ମ ପତ୍ରରେ ଜଳ ରହିବା ପରି କୌଣସିଥିରେ

ଲିପ୍ତ ନହୋଇ ବିଶ୍ୱାତ୍ମାଙ୍କ ସହିତ ଏକୀଭୂତ ହୋଇ ରହିବା ପାଇଁ ବ୍ରହ୍ମସାଧନ ଭଜନ କରିବା। ସଚ୍ଚିଦାନନ୍ଦମୟ ନିର୍ଗୁଣ ନିରହଙ୍କାର ନିରଞ୍ଜନରୂପ ବ୍ରହ୍ମ ହିଁ ମହିମାର ପ୍ରଧାନ ଉପାସ୍ୟ। ଏହି ମହିମା ଧର୍ମାବଲମ୍ବୀମାନଙ୍କ ଅଲେଖ ସ୍ୱାମୀ, ମହିମା ପ୍ରଭୁ, ଶୂନ୍ୟ ପ୍ରଭୁରୂପେ ଉପାସନା କରାଯାଏ। ମହିମାଧର୍ମରେ କର୍ମ, ଜ୍ଞାନ ଓ ଭକ୍ତି ଏହି ତିନି ତତ୍ତ୍ୱ ମଧ୍ୟରେ ସମନ୍ୱୟ ରହିଚି ବୋଲି କୁହାଯାଇଛି। କର୍ମ ବିହୀନ ଜ୍ଞାନ, ଜ୍ଞାନ ନୁହେଁ ଓ ଜ୍ଞାନହୀନ ଭକ୍ତି ପଶୁ ଆଚରଣ ସହ ସମାନ। ଜୀବ ମଧ୍ୟରେ 'ମୁଁ' ତତ୍ତ୍ୱର ଅହଂଭାବ ତାକୁ ନିଷ୍କାମ କର୍ମରୁ ବଞ୍ଚିତ କରେ। ତେଣୁ ନିଜକୁ ବାବାଙ୍କର 'ମହିମାଧର୍ମ ସୁଧାକର', ଅଲେଖ 'ଭଜନାମୃତ', ଅନାଦିଚରଣ ବାବାଙ୍କର 'ମହିମା ଭଜନ ପ୍ରଦୀପ', ରାମାନନ୍ଦ ବାବାଙ୍କର 'ମହିମା ଭଜନମାଳା', ଚିତ୍ତରଞ୍ଜନ ଦାସଙ୍କର 'ଓଡ଼ିଶାରେ ମହିମାଧର୍ମ', ଲକ୍ଷ୍ମୀନାରାୟଣ ସାହୁଙ୍କର 'ମହିମା ଧର୍ମର ସଂକ୍ଷିପ୍ତ ସାରକଥା', ଶତୃଘ୍ନ ନାଥଙ୍କର 'ଭକ୍ତକବି ଭୀମ ଭୋଇ' ତଥା ୧୯୩୫ ସାଲରେ 'ସତ୍ୟଧର୍ମ' ପତ୍ରିକା, ୧୯୪୦ ଖ୍ରୀଷ୍ଟାବ୍ଦରେ 'ମହିମା' ପତ୍ରିକା ପ୍ରଭୃତିରେ ମହିମାଧର୍ମ ସମ୍ବନ୍ଧୀୟ ଅନେକ ତଥ୍ୟ ପ୍ରକାଶିତ ହୋଇଛି, ଯାହା ଏହି ଧର୍ମର ପ୍ରସାର ପ୍ରଭାବ ପକାଇଥାନ୍ତି।

**ବ୍ରାହ୍ମଧର୍ମ:** ଉପନିଷଦ ଯୁଗରେ ପ୍ରତ୍ୟେକ ଭାରତୀୟ ଶାନ୍ତିପୂର୍ଣ୍ଣ ସହାବସ୍ଥାନ କରୁଥିଲେ। ଦେଶରେ ଗଣତନ୍ତ୍ର ଶାସନ ପ୍ରତିଷ୍ଠିତ ହୋଇଥିବା ହେତୁ ରାଜତନ୍ତ୍ରର ଅତ୍ୟାଚାର ନ ଥିଲା। ସବୁ ମଣିଷ ସ୍ୱାଧୀନ ଭାବେ ଚିନ୍ତା କରି ପାରୁଥିଲେ ଏବଂ ସ୍ୱାଧୀନ ଭାବେ ମତବ୍ୟକ୍ତ କରିପାରୁଥିଲେ। ଏହି ସ୍ୱାଧୀନ ଚିନ୍ତାରୁସମ୍ଭୂତ ହେଲା ବିଶ୍ୱବିଖ୍ୟାତ ଉପନିଷଦୀୟ ସାହିତ୍ୟମାଳା। ଏଥିରେ ସାଧାରଣତଃ ଜନସାଧାରଣଙ୍କ ମନରେ ଗୁରୁ, ବ୍ରାହ୍ମଣ ପ୍ରତି ଭକ୍ତି ଇତ୍ୟାଦି ଉଦ୍ରେକ କରିବାରେ ସହାୟକ ହୋଇଥିଲା। ମହାବୀର, ଗୌତମ, ଚାର୍ବାକ୍ ଓ ମହାକାଞ୍ଚନ ପ୍ରମୁଖ ସନ୍ଥମାନେ ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ପ୍ରତ୍ୟେକ ମାନବକୁ ତା'ର ମାନବିକ ମୂଲ୍ୟବୋଧ ଦେବା ସହିତ ଜୀବନର ନିର୍ମମ ସତ୍ୟ ଲିପିବଦ୍ଧ। ପରବର୍ତ୍ତୀ ସମୟରେ ଶସ୍ୟଶ୍ୟାମଳା ଭାରତଭୂମି ବହୁ ବୈଦେଶିକ ଆକ୍ରମଣକାରୀଙ୍କ ଦ୍ୱାରା ବହୁବାର ଆକ୍ରାନ୍ତ ହୋଇ ଆଧ୍ୟାତ୍ମିକ ଚିନ୍ତାରାଜ୍ୟର ଶାଳୀନତା ହରାଇ ବସିଲା। ଅଷ୍ଟାଦଶ ଶତାବ୍ଦୀରେ ଇଂରେଜମାନଙ୍କ ଆଗମନ ଫଳରେ ଭାରତବର୍ଷ ତା'ର ଗୌରବକୁ ହରାଇ ବସିଲା। ଦୀର୍ଘଦିନର ପରାଧୀନତା ରହିବା ଫଳରେ ହିନ୍ଦୁ ଜାତି ପଶୁ ଭଳି ଶାସିତ ହେବା ଯୋଗୁଁ ନିଜେ ମଧ୍ୟ ପଶୁସୁଲଭ ଆଚରଣରେ ପ୍ରଲୁବ୍ଧ ହେଲା। କୁସଂସ୍କାର, ନରବଳି ପ୍ରଭୃତି ନାନା ବିଭୀଷିକାମୟ ପରିସ୍ଥିତି ଉପୁଜିବାକୁ ଲାଗିଲା। ଏହି ଦିଗହଜା ଅନ୍ଧକାରମୟ ଦୁର୍ଦ୍ଦିନ ସମୟରେ ରାଜା ରାମମୋହନ ରାୟଙ୍କ ଆବିର୍ଭାବରେ ଭାରତୀୟ ଉପନିଷଦରେ ବ୍ରାହ୍ମବାଦର ପୁନଃ ପ୍ରତିଷ୍ଠା ହୋଇଥିଲା। ତେଣୁ ତାଙ୍କୁ ଯୁଗମାନବ ବୋଲି କୁହାଯାଏ। ସେ ବେଦ ଉପନିଷଦ, ସଂସ୍କୃତ ଭାଷାରେ ରଚିତ ରାମାୟଣ, ମହାଭାରତ, ସଂହିତା, ଦର୍ଶନ ଶାସ୍ତ୍ର, ବେଦାନ୍ତ ଇତ୍ୟାଦି ପଠନ କରିବା ପରେ ହୃଦୟଙ୍ଗମ କଲେ ଯେ ସବୁ ତତ୍ତ୍ୱର ମୂଳକଥା ହେଉଛି ପରମେଶ୍ୱର ବିଶ୍ୱ ସୃଷ୍ଟିର ନିୟାମକ । ସେଇକଥା ସେ ବିଶ୍ୱବାସୀଙ୍କୁ ହୃଦୟଙ୍ଗମ କରାଇବାର ପ୍ରୟାସରେ ସର୍ବଦା ବ୍ରତୀ ରହିଥିଲେ। ରାମମୋହନଙ୍କ ସଂସ୍କାରଶୀଳ ମନୋଭାବ ହିଁ ତାଙ୍କ ଅମରତ୍ୱ ପ୍ରକାଶ କରେ। ବିଭିନ୍ନ ସ୍ଥାନରେ 'ରାମସଭା' ଗଠନ କରି ଆଲୋଚନା ମଧ୍ୟ କରାଉଥିଲେ। ଓଡ଼ିଶାରେ ବ୍ରାହ୍ମସମାଜ ଫକୀର ମୋହନଙ୍କ ଆତ୍ମଜୀବନୀ ଚରିତକୁ ଅବଲୋକନ କଲେ ୧୮୫୫ ସାଲରେ ଆଦି ବ୍ରାହ୍ମସମାଜର ପ୍ରଚାରକ ଈଶାଣଚନ୍ଦ୍ର ବସୁ ବାଲେଶ୍ୱରରେ ଏହି ଧର୍ମ ପ୍ରଚାର ପ୍ରଥମେ କରିଥିଲେ। ପରେ ପରେ ରାଜକୁମାର ଚାଟାର୍ଜୀ, ସାଧୁ ଅଘୋରନାଥ ରାୟ ଓ ନନ୍ଦଲାଲ ବାନାର୍ଜୀ ପ୍ରମୁଖ ବ୍ରାହ୍ମ ସମାଜର ପ୍ରଚାର କରିଥିଲେ। ମଧୁସୂଦନ ରାଓଙ୍କ ରଚିତ ଜୀବନ ଚିନ୍ତା, ସ୍ତବ, ଋଷି ପ୍ରାଣେ ଦେବତାବତରଣ, ଆତ୍ମସମର୍ପଣ, ଧୂଳି, ବିଧି ବିଧାନ, ନବଯୁଗର ଅଭିଷେକ, ଏ ସମସ୍ତ ସୃଷ୍ଟିରେ ବ୍ରାହ୍ମଧର୍ମର ଚିନ୍ତାଧାରା ତଥା ଜୀବାତ୍ମାରେ ପରମାତ୍ମା ଭୂମାଙ୍କର ଆବିର୍ଭାବ ଉପରେ ଆଧାରିତ। ବିଶ୍ୱନାଥ କର ବ୍ରାହ୍ମଧର୍ମ ଓ ସଂସ୍କାର ପ୍ରିୟ ବ୍ରାହ୍ମଣମନାଙ୍କୁ ଓଡ଼ିଶାର ରକ୍ଷଣଶୀଳ ଓଡ଼ିଆ ପରିବାର ଭାବରେ ଦେଖି ଆସୁଥିଲେ। ସେ ଥିଲେ ଯଥାର୍ଥରେ ଓଡ଼ିଶାରେ ବ୍ରାହ୍ମଧର୍ମ ଓ ଓଡ଼ିଆ ବ୍ରାହ୍ମ ସାହିତ୍ୟରେ ସୁଯୋଗ ପ୍ରଚାରକ। ଓଡ଼ିଆ ସାହିତ୍ୟରେ ବିଭିନ୍ନ ପତ୍ରିକା ଏବଂ କବି ନନ୍ଦ କିଶୋର, କୁନ୍ତଳା କୁମାରୀ ସାବତ୍ ପ୍ରଭୃତି ବହୁ ବରେଣ୍ୟ କବି ବ୍ରାହ୍ମଧର୍ମର ଆଦର୍ଶ, ବିଭୁପ୍ରୀତି, ପ୍ରାର୍ଥନା, ଧ୍ୟାନ ପ୍ରତି ବିଶେଷ ପ୍ରଭାବିତ ହୋଇ ବହୁ କାବ୍ୟ କବିତା ଲେଖିଯାଇଛନ୍ତି।

**ଖ୍ରୀଷ୍ଟଧର୍ମ:** ଆଧୁନିକ ଯୁଗରେ ଦେଖିଲେ ଦେଶର ପ୍ରାୟ ଅର୍ଦ୍ଧାଧିକ ଲୋକ ଖ୍ରୀଷ୍ଟଧର୍ମରେ ଦୀକ୍ଷିତ। ସରଳ ନୀତି ଉଦାର ମାନବିକତାର ପ୍ରଚାର, ପ୍ରାର୍ଥନା ଓ ସେବା ମାଧ୍ୟମରେ ଈଶ୍ୱରଙ୍କର ଉପଲବ୍ଧ, ବିଶ୍ୱ ଭ୍ରାତୃତ୍ୱର ପରାକାଷ୍ଠା ଏବଂ ସର୍ବୋପରି ଖ୍ରୀଷ୍ଟିୟାନ ପ୍ରଚାରକମାନଙ୍କର ଆତ୍ମତ୍ୟାଗ ଏହି ଧର୍ମ ମହାନ୍ ଧର୍ମର ପ୍ରଚାରକ। ଧର୍ମଗ୍ରନ୍ଥ ବାଇବେଲକୁ ପଠନ କଲେ ଯୀଶୁଙ୍କ ସମ୍ପର୍କରେ ଅନେକ ଅଲୌକିକ ତଥ୍ୟ ନଜରକୁ ଆସେ। ଇହୁଦୀ ଧର୍ମ ଥିଲା ପ୍ରାଚ୍ୟ ଓ ପାଶ୍ଚାତ୍ୟର ସର୍ବପ୍ରାଚୀନ ଧର୍ମ। ଏଥିରେ ଥିବା ଅନ୍ଧବିଶ୍ୱାସ, କୁସଂସ୍କାର, ଜନତାଙ୍କୁ ଶୋଷଣ, ଧର୍ମ, ଈଶ୍ୱର ଓ ଦେବଦୂତଙ୍କ ନାମରେ ଜନମାନସକୁ ବିଭ୍ରାନ୍ତ କରିବା କଥାକୁ ଯୀଶୁ ସହ୍ୟ କରିପାରି ନଥିଲେ। ସମାଜକୁ ସୁସ୍ଥ ବାତାବରଣ ଦେବା ଉଦ୍ଦେଶ୍ୟରେ ସ୍ନେହ, ପ୍ରେମ ଓ ବିଶ୍ୱ ଭ୍ରାତୃତ୍ୱର ବାଣୀ ପ୍ରଚାର କରିଥିଲେ। ଯୀଶୁଙ୍କ ଧର୍ମ ଜୀବନର ପ୍ରଥମ ଓ ପରମ ଲକ୍ଷ୍ୟ ଥିଲା। ଈଶ୍ୱରଙ୍କ ପ୍ରତି ଓ ପ୍ରତ୍ୟେକ ଜୀବାତ୍ମା ପ୍ରତି ପ୍ରେମ ହୃଦୟରେ ରଖିବା। ଧର୍ମ ଉପଦେଶ ମାଧ୍ୟମରେ ନ୍ୟାୟ, କର୍ତ୍ତବ୍ୟନିଷ୍ଠା, ଦାନ, ଭ୍ରାତୃତ୍ୱ, ସମତା, ନମ୍ରତା, ଧୀରତା, ଶୋକାତୁର, ନ୍ୟାୟନିଷ୍ଠ, ପବିତ୍ରତା, ଶାନ୍ତିକାମୀ, ଦୟାଳୁ, ବିଶ୍ୱାସ, ସତକାର୍ଯ୍ୟ ଇତ୍ୟାଦି କଥା ସମାଜକୁ ବାର୍ତ୍ତା ଦେଉଥିଲେ। ତାଙ୍କ ମତରେ ପୃଥିବୀର କୌଣସି ବ୍ୟକ୍ତି ଘୃଣ୍ୟ ନୁହେଁ। ପାପକୁ ଘୃଣା କର, ପାପୀକୁ ନୁହେଁ ଏବଂ ସବୁଠାରୁ ମହାନ ବାଣୀ ଥିଲା, ଶତ୍ରୁକୁ ଯଥାର୍ଥ ସ୍ନେହ କର କାରଣ ପ୍ରତିଶୋଧ ନେବା ଦ୍ୱାରା ଏପରି ଖଳ ହୃଦୟ କେବେ ବି ପରିବର୍ତ୍ତନ ହୋଇପାରିବ ନାହିଁ। କେବଳ ଶ୍ରଦ୍ଧା ଦ୍ୱାରା ତୁମେ ଅନ୍ୟକୁ ପରିବର୍ତ୍ତନ କରାଇ ପାରିବ। ଯୀଶୁଙ୍କ ମୃତ୍ୟୁ ପରେ ଖ୍ରୀଷ୍ଟ ଧର୍ମ ବିଶେଷ ଆଦୃତ ଲାଭ କଲା। ଏହି ଧର୍ମର ସରଳ ତତ୍ତ୍ୱ ଓ ଭ୍ରାତୃତ୍ୱ ପ୍ରେମ ପ୍ରଥମେ ସମାଜର ଅବହେଳିତ ଲୋକଙ୍କୁ ପ୍ରଥମେ ଆକୃଷ୍ଟ କରିଥିଲା। ଖ୍ରୀଷ୍ଟ ଧର୍ମର ବଳିଷ୍ଠ ଭିତ୍ତି ସଲ୍ ବା ପଲ୍ ନାମକ ବିଶିଷ୍ଟ ପ୍ରଚାରକଙ୍କ ଦ୍ୱାରା ପ୍ରତିଷ୍ଠିତ ହୋଇଥିଲା।

ଭୌଗୋଳିକ ଦୃଷ୍ଟିରୁ ଓଡ଼ିଶା ଥିଲା ସର୍ବଧର୍ମ ସମନ୍ୱୟର ପୀଠସ୍ଥଳୀ। ବହୁବର୍ଷ ପରେ ଓଡ଼ିଶା ଇଂରେଜମାନଙ୍କ ଅଧୀନକୁ ଯିବା ପରେ ମିଶନାରୀମାନଙ୍କ ଆଗମନ ପରେ ଓଡ଼ିଶାରେ ଖ୍ରୀଷ୍ଟଧର୍ମ ପ୍ରଚାର ହୋଇଥିଲା। ତେବେ ବିଶେଷ ଭାବରେ ଏହା ପ୍ରସାର ଲାଭ କରିପାରିନଥିଲା । ୧୮୬୬ରେ ଗଜପତି ରାଜାଙ୍କ ନ' ଅଙ୍କରେ ଓଡ଼ିଶାରେ ଭୟଙ୍କର ଦୁର୍ଭିକ୍ଷ ପଡ଼ିଥିଲା। ବହୁଲୋକ ଭୋକ ବିକଳରେ ରୋଗବ୍ୟାଧିର ଶିକାର ହେଲେ। ଏହି ଦାରୁଣ ଦୁଃଖଦ ପରିସ୍ଥିତି ସମୟରେ ଖ୍ରୀଷ୍ଟଧର୍ମର ପ୍ରଚାରକମାନେ ସୁବର୍ଣ୍ଣ ସୁଯୋଗ ପାଇଥିଲେ। ଅନାଥ ଶିଶୁମାନଙ୍କ ପାଇଁ ମିଶନାରୀମାନେ ସହାୟତାର ହାତ ବଢ଼ାଇ ଥିଲେ। ଅନାଥ ଆଶ୍ରମମାନ ପ୍ରତିଷ୍ଠା, କମ୍ପାନୀ ସରକାରଙ୍କୁ ସହାୟତା, ଶିକ୍ଷା, ସ୍ୱାସ୍ଥ୍ୟ ଓ ଖାଦ୍ୟର ସୁବନ୍ଦୋବସ୍ତ ମିଶନାରୀମାନେ କରାଇଥିଲେ।

ଅଧ୍ୟାପିକା
ରମାଦେବୀ ମହିଳା ବିଶ୍ୱବିଦ୍ୟାଳୟ
ଭୁବନେଶ୍ୱର



# ମା' ବିମଳା: ବଡ଼ ବାଡ଼ ଖାଉନ୍ଦାଣୀ

ଇଂଜିନିୟର ରଘୁନାଥ ପାତ୍ର

ଜଗତ ଜନନୀ କୈବଲ୍ୟ ଭୋଜିନୀ
ଦକ୍ଷ ପ୍ରଜାପତି କନ୍ୟା
ଯା ବିରହେ ଶିବ ବ୍ୟାକୁଳ ବ୍ୟଥିତ
ଛୁଟିଲା ପ୍ରଳୟ ବନ୍ୟା ।

ସତୀ ତନୁ ଅଂଶ ପଡି କ୍ଷେତ୍ରବରେ
ସୃଷ୍ଟି କଲା ଶକ୍ତିପୀଠ
ଭକତ ତାରଣେ ଜପମାଳା ଧରି
ଜପନ୍ତି ଦିବସ ରାତ୍ର ।

ବିଷ୍ଣୁ ଭକ୍ତି-ସୁଧା ଭକ୍ତଙ୍କୁ ପିଆଇ
କରନ୍ତି ଧନ୍ୟ ଭବାନୀ
ଦେବୀ କୃପା ବିନା ବିଷ୍ଣୁ ଭକ୍ତି ସ୍ୱପ୍ନ
ମାତା ବିଶ୍ୱ ବିମୋହିନୀ ।

ଓଁକାର ରୂପିଣୀ ସତ୍ୟ ସନାତନୀ
ମୁକ୍ତି ପ୍ରଦାୟିନୀ ଦେବୀ
ବଳଭଦ୍ର ପତ୍ନୀ ରେବତୀ ଜନନୀ
ବ୍ରହ୍ମମୟୀ ଭଇରବୀ ।

ଗିରିବାଳା ପୂଜି ଜନକ ନନ୍ଦିନୀ
ଲଭିଲେ ଶ୍ରୀରଘୁପତି
ରୁକ୍ମିଣୀ ଲଭିଲେ ବିଶ୍ୱ ବିମୋହନ
ଶ୍ରୀକୃଷ୍ଣ ପ୍ରାଣ ସଂପତ୍ତି ।

ମାର୍ଗଶିର ମାସେ ହବିଷ୍ୟାନ୍ନ କରି
ପୂଜିଥିଲେ ବ୍ରଜବାଳା
ଲଭିଲେ ଗୋବିନ୍ଦ ରଘୁ ହୃଦାନନ୍ଦ
ପ୍ରେମାନନ୍ଦେ ହୋଇ ଭୋଳା ।

କଇବଲ୍ୟ ବିନା ନ ରୁଚଇ ଆନ
ପରମ ବୈଷ୍ଣବୀ ଦେବୀ
ଦୁର୍ଗା ରୂପେ ସ୍ଥିତା ମାଧବଙ୍କ ସଙ୍ଗେ
ଜଗତ କଲ୍ୟାଣ ଭାବି ।

ଶାରଦୀୟ ଦୁର୍ଗା- ପୂଜା ଷୋଳଦିନେ
ବହୁ ବେଶେ ଦେବୀ ଉଭା
ଦୁର୍ଗା ମାଧବଙ୍କ ଏକତ୍ର ପୂଜନ
ସୂଚାଏ କ୍ଷେତ୍ର ପ୍ରତିଭା ।
କୃପା ବଳେ ଦେବୀ ଜିତିଲେ ରାଘବ
ଲଙ୍କା, ଧନ୍ୟ ମହାମାୟୀ
କୃପା ବଳେ ଦେବୀ ଜିତିଲେ ଅର୍ଜୁନ
କୃଷ୍ଣଙ୍କୁ ସାରଥୀ ପାଇ ।

ଦେବୀ କୃପା ବିନା ମୁକତି ମିଳେନା
ଶତ ଚେଷ୍ଟାକରି ଜୀବ
ବିଷ୍ଣୁ ଭକ୍ତି ଦେଇ ଉଦ୍ଧାର କରନ୍ତି
ଛିଡାଇ ବନ୍ଧନ ଭବ ।

କବି ରଘୁ ଭାଷେ ବାତ୍ସଲ୍ୟ ସୁରସେ
ବିମଳା ବିଶ୍ୱ ଜନନୀ
ଅତି ଆପଣାର ଜ୍ୟେଷ୍ଠା ବଧୂ ମୋର
ବଡ ବାଡ ଖାଉନ୍ଦାଣୀ !!

ବୃନ୍ଦାବନ ଧାମ
ଲୋକନାଥ ରୋଡ
ପାଟଣାହାଟ ସାହି ଛକ, ପୁରୀ-୧

# ଓଡ଼ିଶା ବିଧାନସଭାରେ ମାନ୍ୟବର ରାଜ୍ୟପାଳ ପ୍ରଫେସର ଗଣେଶୀ ଲାଲଙ୍କ ଅଭିଭାଷଣ

ମାନ୍ୟବର ବାଚସ୍ପତି ମହୋଦୟ ଓ ମାନ୍ୟବର ସଦସ୍ୟବୃନ୍ଦ,

ମୁଁ ଆପଣମାନଙ୍କୁ ପଞ୍ଚଦଶ ଓଡ଼ିଶା ବିଧାନସଭାର ପଞ୍ଚଦଶ ଅଧିବେଶନକୁ ସ୍ୱାଗତ ଜଣାଇ ଅତ୍ୟନ୍ତ ଆନନ୍ଦିତ । ଏହି ଅବସରରେ ପବିତ୍ର ଗୃହର ସମସ୍ତ ମାନ୍ୟବର ସଦସ୍ୟବୃନ୍ଦ ତଥା ଓଡ଼ିଶାର ଜନସାଧାରଣଙ୍କୁ ନବବର୍ଷର ହାର୍ଦ୍ଦିକ ଅଭିନନ୍ଦନ ଜଣାଉଛି ।

୧. ଏହି ପବିତ୍ର ଗୃହ ପୂର୍ବତନ ପ୍ରଧାନମନ୍ତ୍ରୀ ସ୍ୱର୍ଗତ ଅଟଳ ବିହାରୀ ବାଜପେୟୀ, ଲୋକସଭାର ପୂର୍ବତନ ବାଚସ୍ପତି ସ୍ୱର୍ଗତ ସୋମନାଥ ଚାଟାର୍ଜି, ତାମିଲ୍‌ନାଡୁର ପୂର୍ବତନ ମୁଖ୍ୟମନ୍ତ୍ରୀ ସ୍ୱର୍ଗତ ମୁଥୁଭେଲ କରୁଣାନିଧି, ପୂର୍ବତନ ମନ୍ତ୍ରୀ ସ୍ୱର୍ଗତ ଯଦୁନାଥ ଦାଶ ମହାପାତ୍ର, ପୂର୍ବତନ ରାଷ୍ଟ୍ରମନ୍ତ୍ରୀ ସ୍ୱର୍ଗତ ଦୋଳଗୋବିନ୍ଦ ପ୍ରଧାନ, ପୂର୍ବତନ ସରକାରୀ ଉପ ମୁଖ୍ୟ ସଚେତକ ସ୍ୱର୍ଗତ ପ୍ରସନ୍ନ କୁମାର ପାଲ, ପୂର୍ବତନ ସଦସ୍ୟ ସ୍ୱର୍ଗତ ସୁରେନ୍ଦ୍ର ପ୍ରଧାନ, ସ୍ୱର୍ଗତ ସୂର୍ଯ୍ୟମଣି ଜେନା, ସ୍ୱର୍ଗତ ବ୍ରଜ କିଶୋର ମହାନ୍ତି, ସ୍ୱର୍ଗତ ମୁରଲୀଧର କୁଅଁର, ସ୍ୱର୍ଗତ ବଂଶୀଧର ସାହୁଙ୍କ ସମେତ ଓଡ଼ିଶା ପୋଲିସ୍‌ର ପୂର୍ବତନ କନେଷ୍ଟବଳ ସ୍ୱର୍ଗତ ସଂଜୟ ମାଝୀ, ୨୯- ଆସାମ ରାଇଫଲ୍‌ସର ପୂର୍ବତନ ରାଇଫଲ୍‌ମ୍ୟାନ୍ ସ୍ୱର୍ଗତ ଚମ୍ପେଶ୍ୱର ମହାକୁଡ, ସିଆର୍‌ପିଏଫ୍‌ର ପୂର୍ବତନ ଯାନଚାଳକ ସ୍ୱର୍ଗତ ବ୍ରଜ ମୋହନ ବେହେରା, ଦୂରଦର୍ଶନର ପୂର୍ବତନ କ୍ୟାମେରାମ୍ୟାନ୍ ସ୍ୱର୍ଗତ ଅଚ୍ୟୁତାନନ୍ଦ ସାହୁଙ୍କ ଦୁଃଖଦ ବିୟୋଗରେ ଗଭୀର ଶୋକପ୍ରକାଶ କରିଛି । ପୂର୍ବତନ ମନ୍ତ୍ରୀ ସ୍ୱର୍ଗତ ଚୈତନ୍ୟ ପ୍ରସାଦ ମାଝି, ଏହି ପବିତ୍ର ଗୃହର ପୂର୍ବତନ ସଦସ୍ୟ ସ୍ୱର୍ଗତ ନିତ୍ୟାନନ୍ଦ ଗରତିଆ, ସ୍ୱର୍ଗତ ରାଜ କିଶୋର ପ୍ରଧାନ, ସ୍ୱର୍ଗତ ପର୍ଶୁରାମ ପଣ୍ଡା ଏବଂ ସ୍ୱର୍ଗତ ରତ୍ନମଞ୍ଜରୀ ଦେବୀଙ୍କ ସହ ୪୬- ରାଷ୍ଟ୍ରୀୟ ରାଇଫଲ୍‌ସର ପୂର୍ବତନ ଲାନ୍‌ସ ନାଏକ ସ୍ୱର୍ଗତ ହେମନ୍ତ କୁମାର ପଣ୍ଡାଙ୍କ ଉଦ୍ଦେଶ୍ୟରେ ଶ୍ରଦ୍ଧାଞ୍ଜଳି ଜ୍ଞାପନ କରିବା ନିମନ୍ତେ ମୋ' ସହ ଯୋଗଦେବାକୁ ମୁଁ ମାନ୍ୟବର ସଦସ୍ୟଗଣଙ୍କୁ ଅନୁରୋଧ କରୁଛି । ଏହି ପବିତ୍ର ଗୃହ ମାଧ୍ୟମରେ ଦିବଙ୍ଗତ ଅମର ଆତ୍ମାମାନଙ୍କର ଶୋକସନ୍ତପ୍ତ ପରିବାରଙ୍କ ପ୍ରତି ଆମର ଆନ୍ତରିକ ସମବେଦନା ଜଣାଉଛି ।

୨. ୨୦୦୦ ମସିହା ପରଠାରୁ ଓଡ଼ିଶାର ପରିବର୍ତ୍ତନର ଯାତ୍ରା ଉଲ୍ଲେଖଯୋଗ୍ୟ । ଅତୀତରେ ଓଡ଼ିଶା ପ୍ରାକୃତିକ ବିପର୍ଯ୍ୟୟର ସଫଳ ମୁକାବିଲା କରି ପାରୁନଥିବାରୁ ଅନେକ ଅମୂଲ୍ୟ ଜୀବନ ଅକାଳରେ ଝଡି ପଡୁଥିଲା । ଏବେ ଆମ ବିପର୍ଯ୍ୟୟ ପରିଚାଳନା ବିଶ୍ୱସ୍ତରୀୟ । ସେତେବେଳେ ଓଡ଼ିଶାର କୃଷକମାନେ ଜୀବିକା ନିର୍ବାହ ପାଇଁ କୃଷି କାର୍ଯ୍ୟ କରୁଥିଲେ । ବର୍ତ୍ତମାନ ଆମେ କୃଷି କ୍ଷେତ୍ରରେ ଏକ ପ୍ରଗତିଶୀଳ ରାଜ୍ୟ ହୋଇପାରିଛୁ, ଯେଉଁଥି ପାଇଁ ବିଗତ ୭ ବର୍ଷ ମଧ୍ୟରେ ରାଜ୍ୟ ୫ଥର 'କୃଷି କର୍ମଣ ପୁରସ୍କାର' ଲାଭ କରିଛି । ବାସ୍ତବରେ ଓଡ଼ିଶା ହେଉଛି ଦେଶର ଏକମାତ୍ର ରାଜ୍ୟ, ଯେଉଁଠି ବିଗତ ଏକ ଦଶନ୍ଧି ମଧ୍ୟରେ କୃଷକଙ୍କ ଆୟ ପ୍ରକୃତ ପକ୍ଷେ ଦ୍ୱିଗୁଣିତ ହୋଇପାରିଛି । ସେତେବେଳେ ରାଜ୍ୟର ଜନସାଧାରଣଙ୍କୁ

ଖାଦ୍ୟ ଯୋଗାଇବା ପାଇଁ କେନ୍ଦ୍ରୀୟ ବଣ୍ଟନ ବ୍ୟବସ୍ଥା ଉପରେ ନିର୍ଭର କରୁଥିବା ଏକ ଖାଦ୍ୟଶସ୍ୟ ନିଅଣ୍ଟିଆ ରାଜ୍ୟ ଭାବେ ଓଡ଼ିଶା ପରିଗଣିତ ହେଉଥିଲା । ଏବେ ଆମ ରାଜ୍ୟ ସାଧାରଣ ବଣ୍ଟନ ବ୍ୟବସ୍ଥାରେ ସର୍ବାଧିକ ଅବଦାନକାରୀ ରାଜ୍ୟଗୁଡ଼ିକ ମଧ୍ୟରେ ସ୍ଥାନିତ ହୋଇଛି ଏବଂ ଦେଶର ଖାଦ୍ୟ ନିରାପତ୍ତାରେ ଏକ ପ୍ରମୁଖ ଭୂମିକା ନିର୍ବାହ କରୁଛି । ପୂର୍ବରୁ ଶିଶୁ ମୃତ୍ୟୁହାର ଏବଂ ମାତୃ ମୃତ୍ୟୁହାର କ୍ଷେତ୍ରରେ ଓଡ଼ିଶାର ଏକ ନୈରାଶ୍ୟଜନକ ସ୍ଥିତି ଥିଲା । ଓଡ଼ିଶା ଏବେ ସର୍ବାଧିକ ଶିଶୁ ମୃତ୍ୟୁହାର ହ୍ରାସ କରାଇପାରିଛି ଏବଂ ମାତୃ ମୃତ୍ୟୁହାର ହ୍ରାସ କ୍ଷେତ୍ରରେ ଜାତୀୟ ହାର ତୁଳନାରେ ମଧ୍ୟ ଏହା କମ୍ ଅଛି । ସେତେବେଳେ ଓଡ଼ିଶା ଦେବାଳିଆ ସ୍ଥିତିରେ ଥାଇ ସରକାରୀ କର୍ମଚାରୀମାନଙ୍କୁ ଦରମା ଦେବା ପାଇଁ ସମର୍ଥ ନ ଥିଲା । ଏବେ ଆର୍ଥିକ ପ୍ରଶାସନରେ ଉତ୍କର୍ଷ ହାସଲ କରିଛି । ଓଡ଼ିଶା ସେତେବେଳେ ଉତ୍କଟ ଦାରିଦ୍ର୍ୟ ପାଇଁ ଜଣା ଥିଲା । ଏକ ଦଶନ୍ଧିରୁ କମ୍ ସମୟ ମଧ୍ୟରେ ସର୍ବାଧିକ ୨୪.୬୧ ପ୍ରତିଶତ ଦାରିଦ୍ର୍ୟ ହାର ହ୍ରାସ କରି ଓଡ଼ିଶା ଅନ୍ୟମାନଙ୍କ ପାଇଁ ପଥ ପ୍ରଦର୍ଶକ ହୋଇପାରିଛି । ଓଡ଼ିଶା ସେତେବେଳେ ଶିଳ୍ପାୟନ ନିମନ୍ତେ ବିଶେଷ ଭାବରେ ଜଣା ନ ଥିଲା । ଏବେ ସର୍ବାଧିକ ଶିଳ୍ପଭିତ୍ତିକ ଅଭିବୃଦ୍ଧି ହାର ହାସଲ କରିବାରେ ଆମେ ଦେଶର ଅନ୍ୟତମ ରାଜ୍ୟ ଏବଂ ଉତ୍ପାଦନ ପୁଞ୍ଜିନିବେଶ ଆକର୍ଷଣ କରିବାରେ ଦେଶର ପ୍ରଥମ ତିନିଟି ରାଜ୍ୟ ମଧ୍ୟରୁ ଅନ୍ୟତମ ।

୩. ଅନେକ କ୍ଷେତ୍ରରେ ଓଡ଼ିଶା ଅସାଧାରଣ ପ୍ରଗତି ହାସଲ କରିଛି । ୨୦୧୪ ମସିହାରୁ ଏ ପର୍ଯ୍ୟନ୍ତ ରେକର୍ଡ଼ ସଂଖ୍ୟକ ୨୦ ଲକ୍ଷ ବାସଗୃହ ନିର୍ମାଣ କରି ଗ୍ରାମ୍ୟ ଗୃହନିର୍ମାଣ କ୍ଷେତ୍ରରେ ଓଡ଼ିଶା ଦେଶରେ ଏକ ଅଗ୍ରଣୀ ରାଜ୍ୟର ମାନ୍ୟତା ପାଇଛି । ରେକର୍ଡ଼ ସଂଖ୍ୟକ ୬ ଲକ୍ଷ ଛାତ୍ରୀ ଆମର ଛାତ୍ରୀନିବାସଗୁଡ଼ିକରେ ରହି ଅଧ୍ୟୟନ କରୁଛନ୍ତି । ୭ ଲକ୍ଷ ମହିଳା ସ୍ୱୟଂ ସହାୟିକା ଗୋଷ୍ଠୀର ୭୦ ଲକ୍ଷ ମହିଳାଙ୍କୁ ନେଇ ଆଜି ଚଳଚଞ୍ଚଳ ଆମ ମିଶନ ଶକ୍ତି ଆନ୍ଦୋଳନ ଓଡ଼ିଶାର ସାମାଜିକ–ଅର୍ଥନୈତିକ ଚିତ୍ର ବଦଳାଇ ଚାଲିଛି । ଆମର ପ୍ରମୁଖ ସ୍ୱାସ୍ଥ୍ୟ ସହାୟତା ଉପକ୍ରମ 'ବିଜୁ ସ୍ୱାସ୍ଥ୍ୟ କଲ୍ୟାଣ ଯୋଜନା' ସାର୍ବଜନୀନ ସ୍ୱାସ୍ଥ୍ୟସେବା ଯୋଗାଇବା କ୍ଷେତ୍ରରେ ଅନନ୍ୟ । ସମସ୍ତ ଯୋଗ୍ୟ ପରିବାରକୁ ଖାଦ୍ୟ ସୁରକ୍ଷା ସୁନିଶ୍ଚିତ କରିବା ପାଇଁ ଆମେ ଆମ ରାଜ୍ୟର ନିଜସ୍ୱ ଖାଦ୍ୟ ସୁରକ୍ଷା ଯୋଜନା ଆରମ୍ଭ କରିଛୁ । ୪୮ ଲକ୍ଷରୁ ଊର୍ଦ୍ଧ୍ୱ ବ୍ୟକ୍ତିଙ୍କୁ ଆମେ ପେନ୍‌ସନ୍ ଯୋଗାଇ ଦେଉଛୁ, ଯାହା ଜନସଂଖ୍ୟା ପ୍ରତିଶତ ଆଧାରରେ ସର୍ବାଧିକ । ଆମର ଜଙ୍ଗଲ ଅଧିବାସୀମାନଙ୍କୁ ଜମି ଅଧିକାର ଯୋଗାଇଦେବା କ୍ଷେତ୍ରରେ ଆମେ ଦେଶରେ ଅଗ୍ରଣୀ । ଆଦିବାସୀ ସଂସ୍କୃତି, ପରମ୍ପରା ଓ ଐତିହ୍ୟର ସଂରକ୍ଷଣ ଉପରେ ଗୁରୁତ୍ୱାରୋପ କରିବା ସହିତ ୬୨ଟି ଜନଜାତି ସମ୍ପ୍ରଦାୟ ଓ ୧୩ଟି ନିର୍ଦ୍ଦିଷ୍ଟ ଆପଦଗ୍ରସ୍ତ ଜନଜାତି ବର୍ଗର ସ୍ୱତନ୍ତ୍ର ପରିଚିତି ବଜାୟ ରଖିବା ନିମନ୍ତେ ୯ଟି ଆଦିବାସୀ ବହୁଳ ଜିଲ୍ଲାଗୁଡ଼ିକରେ ସ୍ୱତନ୍ତ୍ର ଉନ୍ନୟନ ପରିଷଦ ଗଠନ କରାଯାଇଛି । ୨୦୧୪ ମସିହାଠାରୁ ଆମେ ପ୍ରାୟ ୮ ଲକ୍ଷ ହେକ୍ଟର ଅତିରିକ୍ତ ଜଳସେଚନ ସାମର୍ଥ୍ୟ ସୃଷ୍ଟି କରିପାରିଛୁ ଏବଂ ୨୦୧୯ ମସିହା ଏପ୍ରିଲ୍ ସୁଦ୍ଧା ଆମର ପାଞ୍ଚ ବର୍ଷରେ ୧୦ ଲକ୍ଷ ଅଧିକ ହେକ୍ଟର ଜଳସେଚନ ଲକ୍ଷ୍ୟକୁ ଅତିକ୍ରମ କରିବୁ । ଦେଶରେ ସ୍ମାର୍ଟ ସିଟି ପ୍ରତିଯୋଗିତାରେ ଭୁବନେଶ୍ୱର ସର୍ବାଗ୍ରେ ରହିଲା । ଓଡ଼ିଶା ବର୍ତ୍ତମାନ ଭାରତର କ୍ରୀଡ଼ା ରାଜଧାନୀ ଭାବେ ଉଭା ହୋଇଛି । 'ସ୍କିଲ୍‌ଡ ଇନ୍ ଓଡ଼ିଶା' ଏବେ ଏକ ବିଶ୍ୱସ୍ତରୀୟ ବ୍ରାଣ୍ଡର ମାନ୍ୟତା ଲାଭ କରିଛି ।

୪. କୃଷି କ୍ଷେତ୍ରର ଅଭିବୃଦ୍ଧି ତଥା ରାଜ୍ୟରେ ଦାରିଦ୍ର୍ୟ ହ୍ରାସ କରିବା ଉଦ୍ଦେଶ୍ୟରେ ମୋ' ସରକାର 'କାଳିଆ' ଯୋଜନା ଆରମ୍ଭ କରିଛନ୍ତି । ଏହି ଯୋଜନାଟି ପ୍ରଗତିଶୀଳ ଓ ସର୍ବଗ୍ରାହୀ । ଏହାଦ୍ୱାରା ୯୨% ଚାଷୀ, ଋଣୀ ଓ ଅଣଋଣୀ, ଭାଗଚାଷୀ (ପ୍ରକୃତ ଚାଷୀ) ଏବଂ ଭୂମିହୀନ କୃଷି ଶ୍ରମିକ ଉପକୃତ ହେବେ । ଏହାଦ୍ୱାରା ଗ୍ରାମପଞ୍ଚାୟତ ଦ୍ୱାରା ଚିହ୍ନଟ ହୋଇଥିବା ଆପଦଗ୍ରସ୍ତ ଚାଷୀ ପରିବାରଗୁଡ଼ିକୁ ସହାୟତା ମିଳିବା ସହିତ ବିନା ସୁଧରେ କୃଷି ଋଣ ମଧ୍ୟ ଯୋଗାଇ ଦିଆଯିବ । ଏତଦ୍‌ବ୍ୟତୀତ ଏହାଦ୍ୱାରା ପ୍ରତ୍ୟେକ ଚାଷୀ ଏବଂ ଭୂମିହୀନ କୃଷି ଶ୍ରମିକଙ୍କୁ ୨ ଲକ୍ଷ ଟଙ୍କାର ଜୀବନ ବୀମା

ଏବଂ ଦୁର୍ଘଟଣାଜନିତ ବୀମା ସୁବିଧା ଯୋଗାଇ ଦିଆଯିବ । ଇତିମଧ୍ୟରେ ୧୨.୪୫ ଲକ୍ଷ କ୍ଷୁଦ୍ର ତଥା ନାମମାତ୍ର ଚାଷୀ ଏବଂ ପ୍ରାୟ ୫୮,୦୦୦ ଭାଗଚାଷୀଙ୍କ ଜମାଖାତାରେ ୫ ହଜାର ଟଙ୍କା ହିସାବରେ ୬୫୨କୋଟି ଟଙ୍କା ଗତ ଜାନୁଆରୀ ମାସରେ ସିଧାସଳଖ ଜମା କରାଯାଇଛି ।

୫. ୨୦୦୧–୦୨ ମସିହା ତୁଳନାରେ ଧାନ ଉତ୍ପାଦନ ଓ ଉତ୍ପାଦକତା ଦୁଇଗୁଣ ହୋଇପାରିଛି । ରାଜ୍ୟର ୧୧ଟି ଆଦିବାସୀ ବହୁଳ ଜିଲ୍ଲା ଓ ୫୫ଟି ବ୍ଲକ୍‌ରେ ବିଭିନ୍ନ ପ୍ରକାରର ସ୍ଥାନୀୟ 'ଯଅ' ଜାତୀୟ ଶସ୍ୟକୁ ସୁରକ୍ଷିତ ରଖିବା ନିମନ୍ତେ ୧୬,୦୦୦ ହେକ୍ଟର ପରିମିତ ଅଞ୍ଚଳରେ 'ଓଡ଼ିଶା ମିଲେଟ୍ ମିଶନ୍' କାର୍ଯ୍ୟକ୍ଷମ ହୋଇଛି ।

୬. ଜୈବିକ କୃଷିର ପରିସର ବୃଦ୍ଧି ଦ୍ୱାରା ଓଡ଼ିଶାର ଜୈବିକ କୃଷି ସାମର୍ଥ୍ୟ ବୃଦ୍ଧି କରାଯିବା ଉଦ୍ଦେଶ୍ୟରେ ମୋ' ସରକାର ଓଡ଼ିଶା ଜୈବିକ କୃଷି ନୀତି–୨୦୧୮ର ଶୁଭାରମ୍ଭ କରିଛନ୍ତି । କୃଷି ଉତ୍ପାଦନ ସଂଗ୍ରହ ସହିତ ବଜାର ସୁବିଧାରେ ଉନ୍ନତି ଆଣିବା ଲକ୍ଷ୍ୟରେ ମୋ' ସରକାର ଏକ ପ୍ରଗତିଶୀଳ କୃଷକ ଉତ୍ପାଦକ ସଂଗଠନ ନୀତି –୨୦୧୮ ମଧ୍ୟ ଶୁଭାରମ୍ଭ କରିଛନ୍ତି ।

୭. ମୋ' ସରକାର କୃଷକମାନଙ୍କ ଦ୍ୱାରା କୃଷି ଯନ୍ତ୍ରପାତିରେ ଅଭିନବ ଉଦ୍ଭାବନକୁ ପ୍ରୋତ୍ସାହିତ କରିବା ପାଇଁ 'ମୁଖ୍ୟମନ୍ତ୍ରୀ ଅଭିନବ କୃଷି ଯନ୍ତ୍ରପାତି ସମ୍ମାନ' ପ୍ରଚଳନ କରିଛନ୍ତି । କୃଷିଭିତ୍ତିକ ପ୍ରକଳ୍ପ ସ୍ଥାପନ ନିମନ୍ତେ ଗୋଟିଏ ସ୍ଥାନରୁ ସମସ୍ତ ସୁବିଧା ଯୋଗାଇଦେବା ଉଦ୍ଦେଶ୍ୟରେ 'ମୁଖ୍ୟମନ୍ତ୍ରୀ କୃଷି ଉଦ୍ୟୋଗ ଯୋଜନା' ମଧ୍ୟ ଆରମ୍ଭ କରାଯାଇଛି ।

୮. ଶସ୍ୟବୀମା, ଧାନ ସଂଗ୍ରହଣ, ସଫଳ ପଣ୍ୟାଗାର ପରିଚାଳନା, କୃଷି ବିପଣନ ସଂସ୍କାର ଭଳି ବିସ୍ତୃତ ସେବାଗୁଡ଼ିକୁ ସୁବ୍ୟବସ୍ଥିତ କରି ମୋ' ସରକାର ସମବାୟ କ୍ଷେତ୍ରକୁ ସର୍ବାଧିକ ସୁସଂହତ କରିବା ସହିତ କୃଷକ ବିଶେଷ କରି ରାଜ୍ୟର ଦୁର୍ବଳବର୍ଗଙ୍କ ନିମନ୍ତେ ଗ୍ରାମପଞ୍ଚାୟତ ସ୍ତରରେ ଗୋଟିଏ ସ୍ଥାନରେ ସବୁ ସୁବିଧା ଯୋଗାଇଦେବା ଲକ୍ଷ୍ୟରେ ପ୍ରାଥମିକ କୃଷି ସମବାୟ ସମିତିଗୁଡ଼ିକୁ ବିକଶିତ କରୁଛନ୍ତି ।

୯. ପ୍ରତ୍ୟେକ ବ୍ୟାଙ୍କ ଏଟିଏମ୍‌ରୁ ଯେଭଳି କୃଷକମାନେ ମଞ୍ଜୁର କରାଯାଇଥିବା ଋଣ ପାଇପାରିବେ, ସେହି ଉଦ୍ଦେଶ୍ୟରେ ସମସ୍ତ କିଷାନ୍ କ୍ରେଡ଼ିଟ୍ କାର୍ଡ଼ଗୁଡ଼ିକୁ ରୁ–ପେ କିଷାନ୍ କାର୍ଡ଼ରେ ପରିଣତ କରିବା ପାଇଁ ମୋ' ସରକାର ପଦକ୍ଷେପ ଗ୍ରହଣ କରିଛନ୍ତି ।

୧୦. ମୋ' ସରକାର କୃଷକମାନଙ୍କୁ ଏକ ପ୍ରତିଶତ ସୁଧ ହାରରେ ୫୦,୦୦୦ ଟଙ୍କା ପର୍ଯ୍ୟନ୍ତ କୃଷି ଋଣ ଯୋଗାଇ ଆସୁଥିଲେ, ଯାହା ୨୦୧୯ ମସିହା ଅପ୍ରେଲ ୧ ତାରିଖ ପରଠାରୁ ବିନା ସୁଧରେ ଯୋଗାଇ ଦିଆଯିବ । ଯୁଗ୍ମ ଦେୟ ଗୋଷ୍ଠୀ ଗଠନ କରି ବିନା କୌଣସି ବନ୍ଧକରେ ବିନା ଅସୁବିଧାରେ ଋଣ ପାଇବାରେ କ୍ଷୁଦ୍ର, ନାମମାତ୍ର, ଭୂମିହୀନ, ଭାଗଚାଷୀ ଏବଂ ଗ୍ରାମୀଣ ମହିଳାମାନେ ଏବେ ଉପକୃତ ହେଉଛନ୍ତି ।

୧୧. ରାଜ୍ୟରେ ଥିବା ସମସ୍ତ ପ୍ରାଥମିକ କୃଷି ସମବାୟ ସମିତିଗୁଡ଼ିକର କମ୍ପ୍ୟୁଟରୀକରଣ କରିବା ଦିଗରେ ମୋ' ସରକାର ଗୁରୁତ୍ୱ ଦେଇଛନ୍ତି । ଏ ପର୍ଯ୍ୟନ୍ତ ଓଡ଼ିଶା ରାଜ୍ୟ ସମବାୟ ବ୍ୟାଙ୍କର ଡାଟା କେନ୍ଦ୍ର ସହ ସଂଯୋଜିତ ହୋଇ ୧୧୭୯ ପ୍ରାଥମିକ କୃଷି ସମବାୟ ସମିତି ଅନ୍‌ଲାଇନ୍‌ରେ କାରବାର କରୁଛନ୍ତି ଏବଂ ଅବଶିଷ୍ଟ ପ୍ରାଥମିକ କୃଷି ସେବା ସମିତିଗୁଡ଼ିକରେ ଏହି ବ୍ୟବସ୍ଥା ଖୁବ୍‌ଶୀଘ୍ର କାର୍ଯ୍ୟକାରୀ ହେବାକୁ ଯାଉଛି ।

୧୨. ବଜାର ଏବଂ ଅନ୍ୟାନ୍ୟ ଆନୁଷଙ୍ଗିକ ସୂଚନା ପାଇବା ପାଇଁ ମୋ' ସରକାର ଚାଷୀମାନଙ୍କୁ ପ୍ରାୟ ୬୦,୦୦୦ ମୋବାଇଲ୍ ଫୋନ୍ ଯୋଗାଇ ଦେଇଛନ୍ତି । କୃଷି ବିପଣନ ସଂସ୍କାରର ଏକ ଗୁରୁତ୍ୱପୂର୍ଣ୍ଣ ଅଂଶସ୍ୱରୂପ ରାଜ୍ୟରେ ଇ–ବାଣିଜ୍ୟ ସୁବିଧା ନିମନ୍ତେ ଅଧିକ ସଂଖ୍ୟକ ଇ–ପ୍ଲାଟ୍‌ଫର୍ମ ପ୍ରତିଷ୍ଠା କରିବାକୁ ମୋ' ସରକାର ନିଷ୍ପତ୍ତି ଗ୍ରହଣ କରିଛନ୍ତି ।

୧୩. ମୁଁ ଖୁସି ଯେ, ମୋ’ ସରକାର ମହାନଦୀ ଓ ପୋଲ୍ଲାଭରମ୍ ପ୍ରସଙ୍ଗରେ ଓଡ଼ିଶାର ଜନସାଧାରଣଙ୍କ ସହିତ ଦୃଢ଼ ଭାବେ ରହିଛନ୍ତି ଏବଂ ଓଡ଼ିଶାର ଜନସାଧାରଣଙ୍କ ସ୍ୱାର୍ଥରକ୍ଷା ନିମନ୍ତେ ସଂକଳ୍ପବଦ୍ଧ ଅଛନ୍ତି ।

୧୪. ଭୂତଳ ଏବଂ ଭୂପୃଷ୍ଠ ଜଳ ସମ୍ପଦର ସାମଗ୍ରିକ ବିକାଶ, ସଂରକ୍ଷଣ ତଥା ସୁବିନିଯୋଗ ମାଧ୍ୟମରେ ରାଜ୍ୟକୁ ମରୁଡ଼ିମୁକ୍ତ କରିବା ଦିଗରେ ମୋ’ ସରକାର ସଦାସର୍ବଦା ଉଦ୍ୟମ କରିଆସୁଛନ୍ତି ।

୧୫. ମୋ’ ସରକାର ୬୭ଟି ବୃହତ୍ ଉଠା ଜଳସେଚନ ପ୍ରକଳ୍ପ ପୂର୍ଣ୍ଣାଙ୍ଗ କରିଛନ୍ତି । କୃଷକମାନଙ୍କୁ ବିଦ୍ୟୁତ୍ ଶକ୍ତି ସଂଯୋଗ ସହିତ ୫୩,୯୯୨ଟି ଗଭୀର ନଳକୂପ ହସ୍ତାନ୍ତର କରାଯାଇଛି ଏବଂ ୬,୦୫୯ଟି ଗୋଷ୍ଠୀ ଉଠା ଜଳସେଚନ ପଏଣ୍ଟ୍ ପାଣି ପଞ୍ଚାୟତଗୁଡ଼ିକୁ ହସ୍ତାନ୍ତର କରାଯାଇଛି । ଏହା ବ୍ୟତୀତ ଜଳ ସଂରକ୍ଷଣ ସହିତ ଅଧିକ ଅଞ୍ଚଳକୁ ଜଳସେଚିତ କରିବା ଲକ୍ଷ୍ୟରେ ବିଭିନ୍ନ ନାଳଗୁଡ଼ିକରେ ୮,୭୫୭ଟି ଚେକ୍ ଡ୍ୟାମ୍ ନିର୍ମାଣ କରାଯାଇଛି ।

୧୬. ମୋ’ ସରକାର ୪ଟି ବୃହତ୍ ଓ ମଧ୍ୟମ ଜଳସେଚନ ପ୍ରକଳ୍ପ ଯଥା ରୁକୁରା, ଅପର ଇନ୍ଦ୍ରାବତୀ ସଂପ୍ରସାରଣ, ରେଡ୍ ଏବଂ ଟିଟିଲାଗଡ଼ ଜଳସେଚନ ପ୍ରକଳ୍ପର ନିର୍ମାଣ ସମାପ୍ତ କରିଛନ୍ତି । ଅନ୍ୟ ୨ଟି ବୃହତ୍ ଓ ମଧ୍ୟମ ପ୍ରକଳ୍ପ ଯଥା ଲୋୟର ଇନ୍ଦ୍ର ଏବଂ ତେଲେଙ୍ଗିରି ପ୍ରକଳ୍ପ କାର୍ଯ୍ୟ ଖୁବ୍‌ଶୀଘ୍ର ସମାପ୍ତ ହେବାକୁ ଯାଉଛି ।

୧୭. ତିତିଲି ବାତ୍ୟା ଦ୍ୱାରା ପ୍ରଭାବିତ ଜିଲ୍ଲାଗୁଡ଼ିକର ବନ୍ଧବାଡ଼ ଓ କେନାଲ ଘାଇଗୁଡ଼ିକର ମରାମତି କାର୍ଯ୍ୟ ସମ୍ପୂର୍ଣ୍ଣ କରାଯାଇଛି । ୧୭୬୦ ଉଠା ଜଳସେଚନ ପଏଣ୍ଟଗୁଡ଼ିକୁ ମଧ୍ୟ ଯୁଦ୍ଧକାଳୀନ ଭିତ୍ତିରେ ପୁନଃ କାର୍ଯ୍ୟକ୍ଷମ କରାଯାଇଛି ।

୧୮. ମତ୍ସ୍ୟ ଉତ୍ପାଦନରେ ଆତ୍ମନିଭରଶୀଳ ହେବା ନିମନ୍ତେ ବିଭିନ୍ନ କାର୍ଯ୍ୟକ୍ରମ ଆରମ୍ଭ କରାଯିବା ସହିତ ମୋ’ ସରକାର ୨୦୨୦–୨୧ ମସିହା ସୁଦ୍ଧା ମଧୁର ଜଳ ମତ୍ସ୍ୟ ଉତ୍ପାଦନରେ ହାରାହାରି ୧୩ ପ୍ରତିଶତ ବାର୍ଷିକ ଅଭିବୃଦ୍ଧି ଲକ୍ଷ୍ୟ ହାସଲ ଦିଗରେ ଅଗ୍ରସର ।

୧୯. ସାମୁଦ୍ରିକ କଇଁଛ ସଂରକ୍ଷଣ ନିମନ୍ତେ ମାଛ ଧରିବାରେ ରହିଥିବା କଟକଣା ଯୋଗୁଁ ପ୍ରଭାବିତ ୫ ହଜାର ମତ୍ସ୍ୟଜୀବୀ ପରିବାରକୁ ମୋ’ ସରକାର ପରିବାର ପିଛା ୭,୫୦୦ଟଙ୍କାର ଜୀବିକା ନିର୍ବାହ ସହାୟତା ଯୋଗାଇ ଦେଉଛନ୍ତି ।

୨୦. ପୁଷ୍ଟି ନିରାପତ୍ତା ଓ ଆର୍ଥିକ ସଶକ୍ତିକରଣ ଲକ୍ଷ୍ୟରେ ମୋ’ ସରକାର ୨୦୧୮–୧୯ ବର୍ଷରେ ୬୦ ପ୍ରତିଶତ ରିହାତି ସହ ପ୍ରାୟ୧୫୭୫ ହେକ୍ଟର ପରିମିତ ଜଳାଶୟରେ ମତ୍ସ୍ୟ ଚାଷ ନିମନ୍ତେ ପ୍ରାୟ ୧୬୫୦ ମହିଳା ସ୍ୱୟଂ ସହାୟିକା ଗୋଷ୍ଠୀଙ୍କୁ ଗ୍ରାମପଞ୍ଚାୟତ ପୁଷ୍କରିଣୀଗୁଡିକୁ ଲିଜ୍ ଆକାରରେ ପ୍ରଦାନ କରିବାର ବ୍ୟବସ୍ଥା କରିଛନ୍ତି ।

୨୧. ମୋ’ ସରକାର ‘ପ୍ରାଣୀ ସଂପଦ ବିକାଶ ନିମନ୍ତେ ଦୀର୍ଘକାଳୀନ ଅବଧିଭିତ୍ତିକ ଋଣ ସହାୟତା ଉପରେ ସୁଧ ରିହାତି’ ନାମକ ଏକ ନୂତନ ଯୋଜନାରେ ଚଳିତ ବର୍ଷ ପ୍ରାୟ ୧୦ ହଜାର କୃଷକଙ୍କ ନିମନ୍ତେ ମିଆଦୀ ଋଣ ଉପରେ ୩ ପ୍ରତିଶତ ସୁଧ ରିହାତି ଯୋଗାଇ ଦେଇଛନ୍ତି ।

୨୨. ବିଭିନ୍ନ ଗୋ–ଦୁଗ୍ଧ ଉନ୍ନୟନ ପ୍ରକଳ୍ପ କାର୍ଯ୍ୟକାରୀ କରାଇ ଓଡ଼ିଶା ଦୁଗ୍ଧ ଉତ୍ପାଦନ କ୍ଷେତ୍ରରେ ଆତ୍ମନିର୍ଭରଶୀଳ ହୋଇପାରିଛି ଏବଂ ବର୍ତ୍ତମାନ ଆମେ ଦୈନିକ ପ୍ରାୟ ୫.୫୦ ଲକ୍ଷ ଲିଟର ଦୁଗ୍ଧ ସଂଗ୍ରହ କରୁଛୁ ।

୨୩. ମୋ’ ସରକାର ପ୍ରାଇଓରିଟି ହାଉସ୍‌ହୋଲ୍ଡ୍ (ପିଏଚ୍‌ଏଚ୍) ଏବଂ ଅନ୍ତ୍ୟୋଦୟ ଅନ୍ନ ଯୋଜନା (ଏଏୱାଇ) ଅନ୍ତର୍ଭୁକ୍ତ ୩୨୨.୩୯ ଲକ୍ଷ ବ୍ୟକ୍ତିଙ୍କ ସମେତ ମୋଟ ୮୬.୯୦ ଲକ୍ଷ ପରିବାରକୁ ଜାତୀୟ ଖାଦ୍ୟ ସୁରକ୍ଷା ଅଧିନିୟମ ଅଧୀନରେ ସୁବିଧା ପ୍ରଦାନ କରିଛନ୍ତି । ଗରିବ, ଦୁଃସ୍ଥ ତଥା ଜାତୀୟ ଖାଦ୍ୟ ସୁରକ୍ଷା ଅଧିନିୟମରୁ ବାଦ୍ ପଡିଥିବା ଯୋଗ୍ୟ ହିତାଧିକାରୀଙ୍କୁ

ଖାଦ୍ୟ ସୁରକ୍ଷା ଯୋଜନାରେ ସାମିଲ କରିବା ଲକ୍ଷ୍ୟରେ ମୋ' ସରକାର ୨୦୧୮ ମସିହା ଅକ୍ଟୋବର ମାସ ୨ ତାରିଖଠାରୁ ସାରା ରାଜ୍ୟରେ ନିଜସ୍ୱ ଖାଦ୍ୟ ସୁରକ୍ଷା ଯୋଜନା ଆରମ୍ଭ କରିଛନ୍ତି । ଏହି ଯୋଜନାରେ ୨୩ ଲକ୍ଷ ହିତାଧିକାରୀ ଅନ୍ତର୍ଭୁକ୍ତ ହୋଇସାରିଛନ୍ତି, ଯେଉଁମାନେ କିଲୋ ପ୍ରତି ଏକ ଟଙ୍କା ମୂଲ୍ୟରେ ମୁଣ୍ଡ ପିଛା ମାସିକ ୫ କେ.ଜି ହିସାବରେ ଚାଉଳ ପାଇପାରୁଛନ୍ତି ।

୨୪. ଗ୍ରାମ୍ୟ ଗୃହ ନିର୍ମାଣ କ୍ଷେତ୍ରରେ ଓଡ଼ିଶା ଏକ ଅଗ୍ରଣୀ ରାଜ୍ୟର ମାନ୍ୟତା ଲାଭ କରିଛି । ବିଗତ ୪ ବର୍ଷ ମଧ୍ୟରେ ଓଡ଼ିଶା ୨୦ ଲକ୍ଷରୁ ଅଧିକ ଗୃହ ନିର୍ମାଣ କାର୍ଯ୍ୟ ସମ୍ପୂର୍ଣ୍ଣ କରିଛି ଏବଂ ମୋ' ସରକାର ନିର୍ଦ୍ଦିଷ୍ଟ ସମୟ ସୀମା ମଧ୍ୟରେ ଗ୍ରାମାଞ୍ଚଳର ସମସ୍ତ କଚ୍ଚା ଘରକୁ ପକ୍କା ଘରରେ ପରିଣତ କରିବା ନିମନ୍ତେ ପ୍ରତିବଦ୍ଧ ।

୨୫. ପ୍ରଖ୍ୟାତ ସ୍ୱାଧୀନତା ସଂଗ୍ରାମୀ ବକ୍ସି ଜଗବନ୍ଧୁଙ୍କ ସମ୍ମାନାର୍ଥେ ପାଇକ ବିଦ୍ରୋହର ଦ୍ୱି-ଶତବାର୍ଷିକୀ ପାଳନ ଅବସରରେ ଉଭୟ ଗ୍ରାମାଞ୍ଚଳ ଏବଂ ସହରାଞ୍ଚଳର ବାସିନ୍ଦାମାନଙ୍କୁ ପର୍ଯ୍ୟାପ୍ତ ନିରାପଦ ପାନୀୟ ଜଳ ଯୋଗାଣ ଲକ୍ଷ୍ୟରେ 'ବସୁଧା' (Buxi Jagabandhu Assured Drinking Water to all habitations) ଯୋଜନା ୨୦୧୭-୧୮ ବର୍ଷରୁ ପୂର୍ଣ୍ଣଭାବରେ କାର୍ଯ୍ୟକାରୀ ହେଉଛି ।

୨୬. ରାଜ୍ୟର ସମସ୍ତ ୩୧୪ ବ୍ଲକ୍‌ରେ ଲୋକାଭିମୁଖୀ ଅଭିନବ କାର୍ଯ୍ୟକ୍ରମ 'ଆମ ଗାଁ, ଆମ ବିକାଶ' କାର୍ଯ୍ୟକାରୀ ହୋଇଛି । ଭିଡ଼ିଓ କନ୍‌ଫରେନ୍ସିଂ ଜରିଆରେ ରାଜ୍ୟର ମୁଖ୍ୟମନ୍ତ୍ରୀ ଗ୍ରାମାଞ୍ଚଳର ଲୋକମାନଙ୍କ ସହିତ ସିଧାସଳଖ ଆଲୋଚନା ମାଧ୍ୟମରେ ୬୭୯୮ ଗ୍ରାମପଞ୍ଚାୟତ ପାଇଁ ୧୫୫୪ କୋଟି ଟଙ୍କା ମୂଲ୍ୟର ୬୨୮୫୭ ପ୍ରକଳ୍ପ ମଞ୍ଜୁର କରିଛନ୍ତି । ରାଜ୍ୟ ସରକାରଙ୍କ ଏହି କାର୍ଯ୍ୟକ୍ରମ ସମଗ୍ର ଦେଶରେ ଏକ ଅନନ୍ୟ ଜନ ସମ୍ପର୍କ କାର୍ଯ୍ୟକ୍ରମ ଭାବେ ବିବେଚିତ ହୋଇଛି ।

୨୭. ରାଜ୍ୟ ସରକାରଙ୍କ ବିଭିନ୍ନ ଜନକଲ୍ୟାଣକାରୀ କାର୍ଯ୍ୟକ୍ରମରେ ଜନସାଧାରଣଙ୍କ ଅନ୍ତର୍ଭୁକ୍ତି ବିଭିନ୍ନ କାର୍ଯ୍ୟକ୍ରମର ସୁଫଳ ପ୍ରଦାନ ମାଧ୍ୟମରେ ସେମାନଙ୍କର ସଶକ୍ତିକରଣ ତଥା ବିଭିନ୍ନ ଯୋଜନାର ଯୋଗ୍ୟ ହିତାଧିକାରୀଙ୍କୁ ସେମାନଙ୍କ ପ୍ରାପ୍ୟ ପ୍ରଦାନ ସୁନିଶ୍ଚିତ କରିବା ଲକ୍ଷ୍ୟରେ ସଂପ୍ରତି ଓଡ଼ିଶାରେ 'ପିଠା' କାର୍ଯ୍ୟକ୍ରମର ଶୁଭାରମ୍ଭ କରାଯାଇଛି । ୨୦୧୮ ଡ଼ିସେମ୍ବର ମାସରୁ ଗ୍ରାମପଞ୍ଚାୟତ ସ୍ତରରେ 'ପିଠା' କାର୍ଯ୍ୟକ୍ରମ ପ୍ରତି ମାସ ୧୫ ତାରିଖରୁ ୨୦ ତାରିଖ ପର୍ଯ୍ୟନ୍ତ ଅନୁଷ୍ଠିତ ହେଉଛି ।

୨୮. 'ବିଜୁ ସ୍ୱାସ୍ଥ୍ୟ କଲ୍ୟାଣ ଯୋଜନା' କାର୍ଯ୍ୟକାରୀ କରାଯିବା ସହିତ ସମାନୁପାତିକ, ସୁଲଭ ଏବଂ ଗୁଣାତ୍ମକ ସ୍ୱାସ୍ଥ୍ୟ ସେବାକୁ ସାର୍ବଜନୀନ କରି ଓଡ଼ିଶା ସାର୍ବଜନୀନ ସ୍ୱାସ୍ଥ୍ୟ ସେବାର ଲକ୍ଷ୍ୟ ପୂରଣ କରିଛି । ଏହି ଯୋଜନାରେ ପ୍ରାୟ ୭୦ ଲକ୍ଷ ପରିବାର (୩.୫କୋଟି ବ୍ୟକ୍ତି) ସରକାରୀ ଡାକ୍ତରଖାନାଗୁଡ଼ିକରେ ଯେପରି ଦେୟମୁକ୍ତ ସ୍ୱାସ୍ଥ୍ୟସେବାଗୁଡ଼ିକ ପାଇପାରିବେ, ତାହା ମୋ' ସରକାର ସୁନିଶ୍ଚିତ କରିବା ଲକ୍ଷ୍ୟରେ ପରିବାର ପିଛା ବାର୍ଷିକ ୫ ଲକ୍ଷ ଟଙ୍କାର ଚିକିତ୍ସା ସହାୟତା ଯୋଗାଇ ଦିଆଯାଉ ଥିବାବେଳେ ହିତାଧିକାରୀ ପରିବାରଗୁଡ଼ିକର ମହିଳାମାନଙ୍କ କ୍ଷେତ୍ରରେ ଅତିରିକ୍ତ ୨ ଲକ୍ଷ ଟଙ୍କା ସହାୟତାର ବ୍ୟବସ୍ଥା ରହିଛି ।

୨୯. ସ୍ୱାସ୍ଥ୍ୟସେବା କ୍ଷେତ୍ରରେ ଦେୟମୁକ୍ତ ରୋଗ ନିରୂପଣ ସେବା 'ନିଦାନ', ଦେୟମୁକ୍ତ ଡାୟାଲିସିସ୍ ସେବା -'ସହାୟ', ସାର୍ବଜନୀନ ଚକ୍ଷୁ ସ୍ୱାସ୍ଥ୍ୟସେବା 'ସୁନେତ୍ର', ସହରାଞ୍ଚଳ ପି.ଏଚ୍.ସି./ସି.ଏଚ୍.ସି ଗୁଡ଼ିକରେ ବିଶେଷଜ୍ଞ ସେବା- 'ଆମ କ୍ଲିନିକ୍', ଆନୁଷଙ୍ଗିକ ସେବାଗୁଡ଼ିକ ସୁସଂହତ କରିବା ନିମନ୍ତେ -'ନିର୍ମଳ', ଆଶା ମାତୃତ୍ୱ ଯୋଜନା, ରକ୍ତ ବିକାର ରୋଗୀଙ୍କୁ ଯାତାୟାତ ସହାୟତା, ଆଶା କଲ୍ୟାଣ ଯୋଜନା, ଯକ୍ଷ୍ମା ପୀଡ଼ିତ ରୋଗୀମାନଙ୍କୁ ପୁଷ୍ଟି ସହାୟତା, ଚିକିତ୍ସା ପରେ ପ୍ରସୂତି ମହିଳା ଓ ଅସୁସ୍ଥ ଶିଶୁମାନଙ୍କୁ ଘର ଫେରନ୍ତା ସହାୟତା ଭଳି ଅନେକ ନୂତନ ଯୋଜନା ଓ କାର୍ଯ୍ୟକ୍ରମ ମୋ' ସରକାର ଆରମ୍ଭ କରିଛନ୍ତି ।

୩୦. ଜନସ୍ୱାସ୍ଥ୍ୟ ସୁବିଧାରେ ଅଣାଯାଇଥିବା ବହୁଳ ପରିବର୍ତ୍ତନ ଯୋଗୁଁ ସରକାରୀ ସ୍ୱାସ୍ଥ୍ୟ ସେବା ସୁବିଧା ଉପରେ ଜନସାଧାରଣଙ୍କ ବିଶ୍ୱାସ, ନିର୍ଭରଶୀଳତା ବୃଦ୍ଧି ପାଇଛି ତଥା ବିଭିନ୍ନ ଜାତୀୟ ଏବଂ ଅନ୍ତର୍ଜାତୀୟ ସ୍ତରରେ ରାଜ୍ୟ ଏଥିପାଇଁ ପ୍ରଶଂସିତ ହୋଇଛି । ବର୍ହିବିଭାଗ ସ୍ୱାସ୍ଥ୍ୟସେବା ସୁବିଧା କ୍ଷେତ୍ରରେ ସର୍ବାଧିକ ଉନ୍ନତି ପରିଲକ୍ଷିତ ହୋଇଥିବା ଯୋଗୁଁ ୨୦୧୬-୧୭ ଓ ୨୦୧୭-୧୮ ବର୍ଷରେ ଜାତୀୟ ସ୍ତରରେ ଓଡ଼ିଶା ଦ୍ୱିତୀୟ ସ୍ଥାନ ହାସଲ କରି ଜାତୀୟ ପୁରସ୍କାର ଲାଭ କରିଛି । ଓଡ଼ିଶାର ସର୍ବାଧିକ ୯୧% ଲୋକ ସ୍ୱାସ୍ଥ୍ୟସେବା ପାଇଁ ସରକାରୀ ସ୍ୱାସ୍ଥ୍ୟସେବା ବ୍ୟବସ୍ଥା ଉପରେ ନିର୍ଭର କରୁଛନ୍ତି ।

୩୧. ଓଡ଼ିଶାରେ ଆନୁଷ୍ଠାନିକ ପ୍ରସବରହାର ୧୯୯୮-୯୯ (ଏନ୍‌ଏଫ୍‌ଏଚ୍‌ଏସ୍-୨) ବର୍ଷରେ ୨୨.୬% ରହିଥିବା ବେଳେ ୨୦୧୫ (ଏନ୍‌ଏଫ୍‌ଏଚ୍‌ଏସ୍-୪)ରେ ଏହା ୮୫.୪% କୁ ବୃଦ୍ଧି ପାଇଛି, ଯାହା କି ଜାତୀୟ ହାରଠାରୁ ଅଧିକ । ଜନସଂଖ୍ୟା ନିୟନ୍ତ୍ରଣର ବିବିଧ ଉପାୟ ଅବଲମ୍ବନ କରି ମୋଟ ପ୍ରଜନନ ହାର ୨.୦କୁ ହ୍ରାସ କରାଯାଇ ଜନସଂଖ୍ୟାକୁ ସ୍ଥିର ରଖିବା ଦିଗରେ ଓଡ଼ିଶା ଏକ ମହତ୍ତ୍ୱପୂର୍ଣ୍ଣ ଉପଲବ୍ଧ ହାସଲ କରିଛି, ଯାହା ନିଶ୍ଚିତ ଭାବରେ ରାଜ୍ୟର ସାମାଜିକ-ଆର୍ଥିକ ବିକାଶକୁ ତ୍ୱରାନ୍ୱିତ କରିବାରେ ସହାୟକ ହେବ ।

୩୨. ମ୍ୟାଲେରିଆ ଦ୍ରୁତ ହ୍ରାସ କରିବା ଦିଗରେ ଓଡ଼ିଶା ଏକ ଆଦର୍ଶ ରାଜ୍ୟ ଭାବରେ ବିଶ୍ୱ ସ୍ୱାସ୍ଥ୍ୟ ସଂଗଠନ ଦ୍ୱାରା ଅନ୍ତର୍ଜାତୀୟ ସ୍ତରରେ ସ୍ୱୀକୃତି ଲାଭ କରିଛି । ୨୦୧୬ରୁ ୨୦୧୮ ମଧ୍ୟରେ ମ୍ୟାଲେରିଆ ସଂକ୍ରମଣ ୮୨%ରୁ ଊର୍ଦ୍ଧ୍ୱ ହ୍ରାସ କରାଯିବା ସହିତ ମ୍ୟାଲେରିଆଜନିତ ମୃତ୍ୟୁ ୮୭%ରୁ ଊର୍ଦ୍ଧ୍ୱ ଭାଗ ହ୍ରାସ ଘଟାଇ ଓଡ଼ିଶା ମ୍ୟାଲେରିଆ ନିୟନ୍ତ୍ରଣରେ ଏକ ପଥପ୍ରଦର୍ଶକ ରାଜ୍ୟ ହୋଇପାରିଛି ।

୩୩. ୪ଟି ନୂତନ ସରକାରୀ ମେଡିକାଲ କଲେଜର ପ୍ରତିଷ୍ଠା କରାଯିବା ଦ୍ୱାରା ରାଜ୍ୟରେ ଏମ୍‌ବିବିଏସ୍ ସ୍ଥାନ ସଂଖ୍ୟା ୪୫୦ରୁ ୧୦୫୦କୁ ବୃଦ୍ଧି ପାଇଛି । ରାଜ୍ୟର ବିଭିନ୍ନ ଦୂର ଏବଂ ଅଗମ୍ୟ ଅଞ୍ଚଳରେ ଅଧିକ ୫ଟି ନୂତନ ସରକାରୀ ମେଡିକାଲ କଲେଜ ଖୁବ୍‌ଶୀଘ୍ର ପ୍ରତିଷ୍ଠା ହେବାକୁ ଯାଉଛି । କ୍ୟାଡର ପୁର୍ନଗଠନ, ଡାକ୍ତରମାନଙ୍କ ନିମନ୍ତେ ସ୍ଥାନଭିତ୍ତିକ ନିଯୁକ୍ତି ପ୍ରୋତ୍ସାହନ, ଦୁର୍ଗମ ଅଞ୍ଚଳ ନିମନ୍ତେ କର୍ପସ୍ ପାଣ୍ଠିର ବ୍ୟବସ୍ଥା, ସ୍ୱଚ୍ଛ ଅବସର ନୀତି ଏବଂ ୨୫୦୦ରୁ ଊର୍ଦ୍ଧ୍ୱ ଡାକ୍ତର, ୪୦୦ ଦନ୍ତ ଚିକିତ୍ସକ ଏବଂ ୫୭୧୯ ସ୍ୱାସ୍ଥ୍ୟକର୍ମୀ ପଦବୀ ସୃଷ୍ଟି ସମେତ ସ୍ୱାସ୍ଥ୍ୟସେବା ନିମନ୍ତେ ଦକ୍ଷ ମାନବ ସମ୍ବଳ ସୃଷ୍ଟି ନିମନ୍ତେ ମୋ' ସରକାର ଅନେକଗୁଡିଏ ସକାରାତ୍ମକ ପଦକ୍ଷେପ ଗ୍ରହଣ କରିଛନ୍ତି ।

୩୪. ଜାତୀୟ ସ୍ତରରେ ମାନଠାରୁ ନିର୍ଦ୍ଧାରିତ ଅଧିକ କ୍ୟାଲୋରୀ ଓ ପ୍ରୋଟିନ୍ ଯୁକ୍ତ ସଂଶୋଧିତ ସୁଷମ ଖାଦ୍ୟ ଯୋଗାଣ ଯୋଗୁଁ ଅନୁପୂରକ ପୁଷ୍ଟି କାର୍ଯ୍ୟକ୍ରମରେ ୪୬ ଲକ୍ଷ ହିତାଧିକାରୀ ଉପକୃତ ହୋଇଛନ୍ତି । ଅଙ୍ଗନୱାଡି ଖାଦ୍ୟରେ ପୁଷ୍ଟି ବିବିଧତା ହାସଲ କରାଯିବା ଲକ୍ଷ୍ୟରେ ଓଡ଼ିଶା ମିଲେଟ୍ ମିଶନ ସହଯୋଗରେ ଅଙ୍ଗନୱାଡି ଶିଶୁମାନଙ୍କୁ ମାଣ୍ଡିଆ ଲଡୁ ଖୁବ୍‌ଶୀଘ୍ର ଯୋଗାଇ ଦିଆଯିବ ।

୩୫. ମୋ' ସରକାରଙ୍କ ପ୍ରମୁଖ ଯୋଜନା 'ମମତା' କାର୍ଯ୍ୟକାରୀ ହେବା ଦିନଠାରୁ ସମୁଦାୟ ୩୫.୬୯ ଲକ୍ଷ ଗର୍ଭବତୀ ଓ ପ୍ରସୂତି ମହିଳାଙ୍କ ବ୍ୟାଙ୍କ ଆକାଉଣ୍ଟରେ ସିଧାସଳଖ ୧୬୫୫.୨୮ କୋଟି ଟଙ୍କାର ପ୍ରୋତ୍ସାହନ ରାଶି ଜମା କରାଯାଇଛି ।

୩୬. ମିଶନ ଶକ୍ତି ଆନ୍ଦୋଳନରେ ୩ ଲକ୍ଷ ନୂତନ ମହିଳା ସ୍ୱୟଂ ସହାୟକ ଗୋଷ୍ଠୀକୁ ସାମିଲ କରାଯାଇ ମୋଟ ୭ଲକ୍ଷ ସ୍ୱୟଂ ସହାୟକ ଗୋଷ୍ଠୀର ୭୦ ଲକ୍ଷ ମହିଳାଙ୍କୁ ସଶକ୍ତ କରାଯାଇଛି । ମୂଳଧନ ରାଶି, ଡିଜିଟାଲ ସଶକ୍ତିକରଣ ସହାୟତା ସହ ସର୍ବାଧିକ ରୋଜଗାରକ୍ଷମ କାର୍ଯ୍ୟକଳାପକୁ ପ୍ରୋତ୍ସାହନ ଦେବା ନିମନ୍ତେ ବିନା ସୁଧରେ ୩ ଲକ୍ଷ ଟଙ୍କା ପର୍ଯ୍ୟନ୍ତ ଋଣ ସୁବିଧା ଯୋଗାଇ ଦେଇ ମିଶନ୍ ଶକ୍ତି ଏହି ଗୋଷ୍ଠୀମାନଙ୍କୁ ସଶକ୍ତ କରିଛି ।

୩୭. ଭାରତ ସରକାରଙ୍କ ବାର୍ଷିକ ଆନ୍ତଃରାଜ୍ୟ କ୍ରୀଡା ପ୍ରତିଯୋଗିତା 'ହୌସଲା-୨୦୧୮'ରେ ଓଡ଼ିଶାର ଶିଶୁ ସୁରକ୍ଷା ପ୍ରତିଷ୍ଠାନଗୁଡିକରେ ଥିବା ଆମ ପିଲାମାନେ ୧୪ଟି ସ୍ୱର୍ଣ୍ଣ, ୪ଟି ରୌପ୍ୟ ଏବଂ ୫ଟି କାଂସ୍ୟ ପଦକ ହାସଲ କରି

ଚମ୍ପିୟାନ୍ ହୋଇଛନ୍ତି । ପୁନଶ୍ଚ, ଏହିବର୍ଷ ଜାତୀୟ ବୀରତା ପୁରସ୍କାର ୨୦୧୮ ନିମନ୍ତେ ଭାରତ ସରକାରଙ୍କ ଦ୍ୱାରା ୪ଜଣ ପିଲା ଆମ ରାଜ୍ୟରୁ ମନୋନୀତ ହୋଇଛନ୍ତି ।

୩୮. ସମାଜର ଦୁର୍ବଳ ବର୍ଗଙ୍କ ସାମାଜିକ ସୁରକ୍ଷା ଏବଂ ସେମାନଙ୍କର ସଶକ୍ତିକରଣ ଲକ୍ଷ୍ୟ ହାସଲ କରିବା ନିମନ୍ତେ ମୋ' ସରକାର ପ୍ରତିଶ୍ରୁତିବଦ୍ଧ । ଚଳିତ ବର୍ଷ ଅଧିକ ୫ ଲକ୍ଷ ହିତାଧିକାରୀଙ୍କୁ 'ମଧୁବାବୁ ପେନ୍‌ସନ୍ ଯୋଜନା'ରେ ଅନ୍ତର୍ଭୁକ୍ତ କରାଯାଇଛି । ୪୮ ଲକ୍ଷରୁ ଊର୍ଦ୍ଧ୍ୱ ହିତାଧିକାରୀଙ୍କୁ ଭତ୍ତା ପ୍ରଦାନ କରି ସମଗ୍ର ଦେଶରେ ବର୍ତ୍ତମାନ ଅନ୍ୟ ରାଜ୍ୟମାନଙ୍କ ତୁଳନାରେ ସର୍ବାଧିକ ହିତାଧିକାରୀଙ୍କୁ ଭତ୍ତା ପ୍ରଦାନରେ ଆମ ରାଜ୍ୟ ଅଗ୍ରଣୀ ରହିଛି । ପ୍ରଦାନ କରାଯାଉଥିବା ମାସିକ ଭତ୍ତା ମଧ୍ୟ ୨୦୦ ଟଙ୍କା ଲେଖାଏଁ ବୃଦ୍ଧି କରାଯାଇଛି ।

୩୯. ରାଜ୍ୟରେ ହସ୍ତତନ୍ତ ଏବଂ ହସ୍ତଶିଳ୍ପର ସମୃଦ୍ଧ ପରମ୍ପରାକୁ ଦୃଷ୍ଟିରେ ରଖି ଉକ୍ତ କ୍ଷେତ୍ରରେ ସର୍ବାଙ୍ଗୀନ ଉନ୍ନତିସାଧନ ଦିଗରେ ମୋ' ସରକାର ଯଥାଯୋଗ୍ୟ କାର୍ଯ୍ୟକ୍ରମମାନ ଗ୍ରହଣ କରିଛନ୍ତି । ମୋ' ସରକାର ରାଜ୍ୟର ବୁଣାକାର ଓ କାରିଗରମାନଙ୍କର ନିରନ୍ତର ବିକାଶ ଓ ସାମଗ୍ରିକ ଅଭିବୃଦ୍ଧି ନିମନ୍ତେ ଓଡ଼ିଶା ହସ୍ତତନ୍ତ ଓ ହସ୍ତଶିଳ୍ପ ଉନ୍ନୟନ ଓ ବିକାଶ ପରିଷଦ ଗଠନ କରିଛନ୍ତି । ଉଭୟ ହସ୍ତଶିଳ୍ପ ଓ ହସ୍ତତନ୍ତ ଉତ୍ପାଦର ବିକ୍ରୟ ଓ ଏହାକୁ ପ୍ରଚାର ପ୍ରସାର ମାଧ୍ୟମରେ ଅଧିକ ଲୋକାଦୃତ କରିବା ପାଇଁ ଏହି ପରିଷଦ ଦାୟିତ୍ୱସମ୍ପନ୍ନ ଭାବେ କାର୍ଯ୍ୟ କରିବା ସହିତ ବୁଣାକାର ଓ କାରିଗରମାନଙ୍କର ଉନ୍ନତିସାଧନ ଦିଗରେ ଆବଶ୍ୟକ ନୀତି ପ୍ରଣୟନ କରିବା ପାଇଁ ରାଜ୍ୟ ସରକାରଙ୍କୁ ପରାମର୍ଶ ଦେବ ।

୪୦. ବାଲିଜୁରି ଏବଂ ବରଗଡ଼ରେ ବୁଣାକାର ବଜାର ପ୍ରତିଷ୍ଠା ନିମନ୍ତେ ତଥା କୋଟପାଡ଼ ଟେକ୍ସଟାଇଲ୍‌କୁ ପୁନଃକ୍ଷମ କରିବା ପାଇଁ ମୋ' ସରକାର ପଦକ୍ଷେପ ଗ୍ରହଣ କରିଛନ୍ତି । ମୋ' ସରକାର 'ବରିଷ୍ଠ ବୁଣାକାର ସହାୟତା ଯୋଜନା'ରେ ବରିଷ୍ଠ ବୁଣାକାରମାନଙ୍କୁ ସାମାଜିକ ସୁରକ୍ଷା ଯୋଗାଇ ଦେବା ନିମନ୍ତେ ମାସିକ ଆର୍ଥିକ ସହାୟତା ରାଶିର ବ୍ୟବସ୍ଥା କରିଛନ୍ତି ।

୪୧. ମୋ' ସରକାର ୨୦୧୮ ମାର୍ଚ୍ଚ ୨୨ ତାରିଖରେ ଓଡ଼ିଶା ହସ୍ତଶିଳ୍ପ ସଂଗ୍ରହାଳୟକୁ ଲୋକାର୍ପିତ କରିଛନ୍ତି । ସମଗ୍ର ପୂର୍ବ ଭାରତରେ ଏହା ଏକମାତ୍ର ରାଜ୍ୟ ସଂଗ୍ରହାଳୟ, ଯାହା ଓଡ଼ିଶାର ବହୁମୁଖୀ, ସମୃଦ୍ଧ ଓ ଐତିହ୍ୟସମ୍ପନ୍ନ ହସ୍ତତନ୍ତ ଓ ହସ୍ତଶିଳ୍ପକୁ ପ୍ରଦର୍ଶିତ କରିବାରେ ସକ୍ଷମ ହୋଇଛି । ଏହି ସଂଗ୍ରହାଳୟକୁ ଏକ ସମୃଦ୍ଧ ସାଂସ୍କୃତିକ କ୍ଷେତ୍ର ଭାବରେ ବିକଶିତ କରିବା ପାଇଁ ସବୁ ପ୍ରକାର ଉଦ୍ୟମ ଅବ୍ୟାହତ ରହିଛି । ଶିଳ୍ପୀ ଓ କାରିଗରମାନଙ୍କର କର୍ମଶାଳା, କ୍ରାଫ୍ଟ୍ସ୍ ଏବଂ ପର୍ଯ୍ୟଟନ ବଜାର ସୁବିଧା ଯୋଗୁଁ ପର୍ଯ୍ୟଟକ ଓ ବିଦ୍ୟାଳୟ ଛାତ୍ରଛାତ୍ରୀମାନଙ୍କ ନିମନ୍ତେ ଏହା ଏକ ପ୍ରକୃଷ୍ଟ ଦର୍ଶନୀୟ ସ୍ଥାନ ହୋଇପାରିଛି ।

୪୨. ମୋ' ସରକାର ୫୦ ହଜାର କଳାକାରଙ୍କୁ ମାସିକ ୧୨୦୦ ଟଙ୍କାର ଆର୍ଥିକ ସହାୟତା ଯୋଗାଇ ଦେବାକୁ 'ମୁଖ୍ୟମନ୍ତ୍ରୀ କଳାକାର ସହାୟତା ଯୋଜନା' ଆରମ୍ଭ କରିଛନ୍ତି ।

୪୩. ଓଡ଼ିଆ ଭାଷା ଏବଂ ଓଡ଼ିଶାର ସାଂସ୍କୃତିକ ଐତିହ୍ୟର ପ୍ରସାର ଓ ପ୍ରଚାର ନିମନ୍ତେ ମୋ' ସରକାର ନିରନ୍ତର ପ୍ରୟାସ ଜାରି ରଖିଛନ୍ତି । ପ୍ରଥମ ଥର ପାଇଁ ମୋ ସରକାରଙ୍କ ଦ୍ୱାରା ଆମର ଐତିହ୍ୟ ଓ ପରମ୍ପରାର ସୁରକ୍ଷା ନିମନ୍ତେ ଐତିହ୍ୟ କ୍ୟାବିନେଟ୍ ଗଠନ କରାଯାଇଛି । ଐତିହ୍ୟ କ୍ୟାବିନେଟ୍‌ର ପ୍ରଥମ ବୈଠକରେ ସତ୍ୟବାଦୀଠାରେ ଏକ ଓଡ଼ିଆ ବିଶ୍ୱବିଦ୍ୟାଳୟ ସ୍ଥାପନ ନିମନ୍ତେ ନିଷ୍ପତ୍ତି ଗ୍ରହଣ କରାଯାଇଥିଲା ।

୪୪. ମହାତ୍ମା ଗାନ୍ଧୀଙ୍କ ଜନ୍ମତିଥିର ୧୫୦ତମ ବାର୍ଷିକୀ ପାଳନ କରିବା ନିମନ୍ତେ ମୋ' ସରକାର ଏକ ରାଜ୍ୟସ୍ତରୀୟ ସମାରୋହ ପାଳନ କମିଟି ଗଠନ କରିଛି ଓ ଦୁଇ ବର୍ଷ ନିମନ୍ତେ ବିଭିନ୍ନ କାର୍ଯ୍ୟକ୍ରମ ସ୍ଥିର କରିଛି । ପାଇକ ବିଦ୍ରୋହର ଦ୍ୱିଶତବାର୍ଷିକୀ ପାଳନ ଅବସରରେ ଏକ ଡାକ ଟିକଟ ଓ ଏକ ସ୍ମାରକ ମୁଦ୍ରା ମଧ୍ୟ ଉନ୍ମୋଚିତ ହୋଇଛି ।

୪୫. ଗ୍ରାମାଞ୍ଚଳର ଛାତ୍ରଛାତ୍ରୀମାନଙ୍କୁ ଗୁଣାତ୍ମକ ଇଂରାଜୀ ମାଧ୍ୟମ ଶିକ୍ଷା ଯୋଗାଇ ଦେବା ପାଇଁ ରାଜ୍ୟର ପ୍ରତି ବ୍ଲକ୍‌ରେ ଓଡ଼ିଶା ଆଦର୍ଶ ବିଦ୍ୟାଳୟ ସ୍ଥାପନ କରିବା ନିମନ୍ତେ ମୋ' ସରକାର ଆଗ୍ରହୀ । ଏ ପର୍ଯ୍ୟନ୍ତ ୨୮ଟି ଜିଲ୍ଲାରେ ୧୯୦ଟି ଆଦର୍ଶ ବିଦ୍ୟାଳୟ ଖୋଲାଯାଇଛି ଏବଂ ୫୧,୩୦୯ ଜଣ ଛାତ୍ରଛାତ୍ରୀ ଏହି ବିଦ୍ୟାଳୟରେ ଗୁଣାତ୍ମକ ଶିକ୍ଷା ଗ୍ରହଣ କରୁଛନ୍ତି ।

୪୬. ଅଧାରୁ ପାଠ ଛାଡୁଥିବା ତଥା ସେହିପରି ବିଭିନ୍ନ କାରଣରୁ ସ୍କୁଲ ଛାଡୁଥିବା ପିଲା ଯେଉଁମାନେ କି ଆନୁଷ୍ଠାନିକ ଶିକ୍ଷାରୁ ବଞ୍ଚିତ ହୋଇଛନ୍ତି, ସେମାନଙ୍କୁ ମାଧ୍ୟମିକ ଶିକ୍ଷାଲାଭ କରିବା ସହିତ ଜୀବିକା ନିର୍ବାହ ପାଇଁ ଯୋଗ୍ୟ କରିବା ଉଦ୍ଦେଶ୍ୟରେ ୩୦ଟି ଜିଲ୍ଲାରେ ୩୪୪ଟି କେନ୍ଦ୍ରରେ ରାଜ୍ୟ ମୁକ୍ତ ବିଦ୍ୟାଳୟ ପ୍ରତିଷ୍ଠାନ ଆରମ୍ଭ କରାଯାଇଛି । ଏ ପର୍ଯ୍ୟନ୍ତ ୬୩,୯୦୪ ଛାତ୍ରଛାତ୍ରୀ ଏଥିରେ ନାମ ଲେଖାଇଛନ୍ତି ଏବଂ ୩୭,୦୬୪ ଛାତ୍ରଛାତ୍ରୀଙ୍କୁ ଉଚ୍ଚ ମାଧ୍ୟମିକ ସାର୍ଟିଫିକେଟ୍ (ଓଗଇ) ପ୍ରଦାନ କରାଯାଇଛି ।

୪୭. ୩୧୪ ବ୍ଲକ୍‌ର ୩୧୪ ସ୍କୁଲରେ ଧନ୍ଦାମୂଳକ ଶିକ୍ଷା ପ୍ରଦାନ ପାଇଁ ମୋ' ସରକାର ବ୍ୟବସ୍ଥା କରିଛନ୍ତି ଏବଂ ଏଥିରେ ୨୪,୮୮୫ ଜଣ ଛାତ୍ରଛାତ୍ରୀ ନାମ ଲେଖାଇଛନ୍ତି ।

୪୮. ୨୦୧୮-୧୯ ବର୍ଷରେ ପ୍ରଥମ ଶ୍ରେଣୀରୁ ଅଷ୍ଟମ ଶ୍ରେଣୀ ପର୍ଯ୍ୟନ୍ତ ପାଠ ପଢୁଥିବା ପ୍ରାୟ ୪୮ ଲକ୍ଷ ପିଲାଙ୍କୁ ସ୍କୁଲ ପୋଷାକ ବଣ୍ଟନ କରାଯାଇଛି । ମୋ' ସରକାର, ଚଳିତ ବର୍ଷ ୧୫୨କୋଟି ୬୫ ଲକ୍ଷ ଟଙ୍କା ବ୍ୟୟରେ ପ୍ରାୟ ୬ ଲକ୍ଷ ନବମ ଶ୍ରେଣୀ ପିଲାଙ୍କ ପାଇଁ ମାଗଣା ସାଇକେଲ୍ ବଣ୍ଟନ କରିବାର ବ୍ୟବସ୍ଥା କରିଛନ୍ତି ।

୪୯. ପ୍ରତିଭାବାନ ବିଦ୍ୟାର୍ଥୀଙ୍କୁ ସମ୍ବର୍ଦ୍ଧିତ କରିବା ସହ ଶ୍ରେଷ୍ଠ ବିଦ୍ୟାଳୟ ଓ କୃତୀ ଛାତ୍ରଛାତ୍ରୀମାନଙ୍କର ପିତାମାତାଙ୍କୁ ସମ୍ମାନିତ କରିବା ଲକ୍ଷ୍ୟରେ ମୋ' ସରକାର, ୨୦୧୮-୧୯ ବର୍ଷରେ ତିନୋଟି ନୂତନ ପୁରସ୍କାର ଯଥା: ମୁଖ୍ୟମନ୍ତ୍ରୀ ମେଧାବୃତ୍ତି, ଓଡ଼ିଆ ଭାଷା ବୃତ୍ତି ଓ ଶ୍ରେଷ୍ଠ ସ୍କୁଲ ପୁରସ୍କାର ଏବଂ ମେଧାବୀ ଛାତ୍ର, ଉତ୍କୃଷ୍ଟ ବିଦ୍ୟାଳୟ ଏବଂ ସଫଳ ଛାତ୍ରଛାତ୍ରୀମାନଙ୍କର ପିତାମାତାଙ୍କୁ ସମ୍ବର୍ଦ୍ଧିତ କରିବା ପାଇଁ ବ୍ୟବସ୍ଥା କରିଛନ୍ତି । ମୁଖ୍ୟମନ୍ତ୍ରୀ ମେଧାବୃତ୍ତି ପୁରସ୍କାରରେ ପ୍ରତି ବ୍ଲକ୍‌ର ୧୦୦ ଜଣ ବିଦ୍ୟାର୍ଥୀଙ୍କୁ ୫ ହଜାର ଟଙ୍କା ଲେଖାଏଁ ପୁରସ୍କାର ପ୍ରଦାନ କରାଯାଉଥିବାବେଳେ ପ୍ରତି ମହାନଗର ନିଗମର ୧୦୦ ଜଣଙ୍କୁ, ପ୍ରତି ପୌରାଞ୍ଚଳର ୫୦ ଜଣଙ୍କୁ, ପ୍ରତି ବିଜ୍ଞାପିତ ଅଞ୍ଚଳ ପରିଷଦର୨୦ ଜଣଙ୍କୁ ଏହି ପୁରସ୍କାର ପ୍ରଦାନ ସହ ସର୍ବମୋଟ ୩୫,୪୯୦ ବିଦ୍ୟାର୍ଥୀଙ୍କୁ ସମ୍ମାନିତ କରାଯାଇଛି ।

୫୦. ଓଡ଼ିଆ ଭାଷାବୃତ୍ତି ପୁରସ୍କାର ବାର୍ଷିକ ହାଇସ୍କୁଲ ପରୀକ୍ଷାରେ ଓଡ଼ିଆ ବିଷୟରେ ସର୍ବୋଚ୍ଚ ନମ୍ବର ରଖିଥିବା ୩୫୪୯ଜଣ ଛାତ୍ରଛାତ୍ରୀଙ୍କୁ ୫ ହଜାର ଟଙ୍କା ଲେଖାଏଁ ହିସାବରେ ପ୍ରଦାନ କରାଯିବା ସହ ପ୍ରତ୍ୟେକ ବ୍ଲକ୍‌ର ୧୦ ଜଣ, ପ୍ରତ୍ୟେକ ମ୍ୟୁନିସିପାଲ କର୍ପୋରେସନର ୧୦ ଜଣ, ପ୍ରତ୍ୟେକ ମ୍ୟୁନିସିପାଲିଟିର ୫ ଜଣ ଓ ପ୍ରତ୍ୟେକ ଏନ୍.ଏ.ସିରୁ ୨ ଜଣ ଛାତ୍ରଙ୍କୁ ପୁରସ୍କୃତ କରାଯାଉଛି ।

୫୧. ମୋ' ସରକାର, ଓଡ଼ିଶା ଓ ଓଡ଼ିଶା ବାହାରେ ରହୁଥିବା ବିଭିନ୍ନ ସ୍କୁଲର ପୁରାତନ ଛାତ୍ରଛାତ୍ରୀଙ୍କୁ ଜନହିତରେ କାର୍ଯ୍ୟ କରିବା ପ୍ରତି ଆକୃଷ୍ଟ କରିବା ନିମନ୍ତେ 'ମୋ ସ୍କୁଲ ଅଭିଯାନ' କାର୍ଯ୍ୟକ୍ରମ ଆରମ୍ଭ କରିଛନ୍ତି । ୩୦ଟି ଜିଲ୍ଲାରେ 'ମୋ ସ୍କୁଲ ଅଭିଯାନ' ପ୍ରତି ଅଭୂତପୂର୍ବ ସମର୍ଥନ ସହ ୮୦୫୦ ବିଦ୍ୟାଳୟର ପୁରାତନ ଛାତ୍ରଛାତ୍ରୀଙ୍କଠାରୁ ୨୧କୋଟି ୨ଲକ୍ଷ ଟଙ୍କାର ସହଯୋଗ ମିଳିଥିବା ବେଳେ ରାଜ୍ୟ ସରକାରଙ୍କ ପକ୍ଷରୁ ୪୨ କୋଟି ୫ ଲକ୍ଷ ଟଙ୍କାର ମ୍ୟାଚିଂ ଗ୍ରାଣ୍ଟ ପ୍ରଦାନ କରାଯାଇଛି । ଏହି ପାଣ୍ଠି ପାଠାଗାର ପ୍ରତିଷ୍ଠା, ବିଦ୍ୟାଳୟ ଭିତ୍ତିଭୂମିର ମରାମତି ଓ ରକ୍ଷଣାବେକ୍ଷଣ, ନୂତନ ଶ୍ରେଣୀଗୃହ ନିର୍ମାଣ, ସ୍କୁଲ ହତା ନିର୍ମାଣ, ପିଲାମାନଙ୍କ ପାଇଁ ସାଧାରଣ ସୁବିଧା, ପରୀକ୍ଷାଗାର ପ୍ରତିଷ୍ଠା, ବଗିଚା, ମଧ୍ୟାହ୍ନ ଭୋଜନ କକ୍ଷ, କ୍ରୀଡ଼ାର ପ୍ରସାର ନିମନ୍ତେ ସ୍ୱତନ୍ତ୍ର କୋଚିଂ ବ୍ୟବସ୍ଥା, ବିଦ୍ୟାଳୟର ବାର୍ଷିକ ଉତ୍ସବ ଓ ଛାତ୍ରଛାତ୍ରୀମାନଙ୍କର ମଙ୍ଗଳବିଧାନ ନିମନ୍ତେ ବିଭିନ୍ନ ଉନ୍ନତିମୂଳକ କାର୍ଯ୍ୟ ସମ୍ପାଦନ ପାଇଁ ଉଦ୍ଦିଷ୍ଟ ।

୫୨. ମୋ' ସରକାର ଉଚ୍ଚ ଶିକ୍ଷାକୁ ବିଶ୍ୱସ୍ତରୀୟ କରାଇବା ଲକ୍ଷ୍ୟରେ ଏକାଧିକ ପରିବର୍ତ୍ତନକାରୀ ସଂସ୍କାର ଆଣିଛନ୍ତି, ଯେଉଁଥିରେ ଶିକ୍ଷାର ଗୁଣାତ୍ମକ ମାନ ଗବେଷଣା ଓ ଉଦ୍ଭାବନ, ଶିଳ୍ପ–ପାଠ୍ୟକ୍ରମ ସଂଯୋଗ, ଗୋଷ୍ଠୀ ସଂପର୍କ, ଔଦ୍ୟୋଗିକ ଏବଂ ବିକାଶ ସଂଯୋଗୀକରଣ, ଦକ୍ଷତା ବିକାଶ ବୃତ୍ତିଗତ ପରାମର୍ଶ ଏବଂ ନିଯୁକ୍ତି, ଆନ୍ତର୍ଜାତିକରଣ, ସୂଚନା, ଯୋଗାଯୋଗ ଓ ପ୍ରଯୁକ୍ତି ଏବଂ ବିଭିନ୍ନ କ୍ଷେତ୍ରରେ ଇ–ଗଭର୍ଣ୍ଣାନ୍ସ ପ୍ରୟୋଗ ଅନ୍ତର୍ଭୁକ୍ତ ।

୫୩. ମୋ' ସରକାର, ଶିକ୍ଷା କ୍ଷେତ୍ରରେ ପଛୁଆ ଜିଲ୍ଲାଗୁଡ଼ିକରେ ୮ଟି ମଡ଼େଲ ଡ଼ିଗ୍ରୀ କଲେଜ ପ୍ରତିଷ୍ଠା କରିଛନ୍ତି । ପ୍ରଯୁକ୍ତି ସୁବିଧା ମାଧ୍ୟମରେ ଉଚ୍ଚ ଶିକ୍ଷା ଗ୍ରହଣ ହାର ବୃଦ୍ଧି ଓ ନାମଲେଖା ହାର ବୃଦ୍ଧି ବ୍ୟବସ୍ଥା ସହିତ ୬ଟି ଅଧିକ ନୂତନ ମଡେଲ୍ ଡିଗ୍ରୀ କଲେଜ ପ୍ରତିଷ୍ଠା ପାଇଁ ଯୋଜନା କରାଯାଇଛି ।

୫୪. ମୋ' ସରକାର ସ୍ନାତକ ଓ ସ୍ନାତକୋତ୍ତର ସ୍ତରରେ ଅଧ୍ୟୟନରତ ସମାଜର ଅବହେଳିତ ଛାତ୍ରଛାତ୍ରୀଙ୍କ ପାଇଁ 'ଗୋପବନ୍ଧୁ ଶିକ୍ଷା ସହାୟତା ଯୋଜନା' ନାମକ ଏକ ନୂତନ ଯୋଜନା ଆରମ୍ଭ କରିବା ସହ ପ୍ରତି ବିଦ୍ୟାର୍ଥୀ ପିଛା ବାର୍ଷିକ ୨୦ ହଜାର ଟଙ୍କାର ଆର୍ଥିକ ସହାୟତା ବ୍ୟବସ୍ଥା କରିଛନ୍ତି । ଛାତ୍ରଛାତ୍ରୀମାନେ ପାଉଥିବା ବୃତ୍ତି ସହିତ ମଧ୍ୟ ଏହି ଯୋଜନାରେ ଉପକୃତ ହେବେ । ଏହି ସହାୟତା ଛାତ୍ରଛାତ୍ରୀମାନଙ୍କର ପଠାପଢ଼ା ଶେଷ ହେବା ପର୍ଯ୍ୟନ୍ତ ପ୍ରତ୍ୟେକ ବର୍ଷ ପ୍ରଦାନ କରାଯିବ ।

୫୫. ମୋ' ସରକାର ଓଡ଼ିଆ ବିଷୟରେ ଯୁକ୍ତ ୨ ଓ ଯୁକ୍ତ ୩ ଛାତ୍ରଛାତ୍ରୀଙ୍କ ନିମନ୍ତେ 'ବ୍ୟାସକବି ଫକୀର ମୋହନ ଭାଷାବୃତ୍ତି' ସଂପ୍ରସାରଣ କରିଛନ୍ତି । ଓଡ଼ିଆରେ ସ୍ନାତକ ଓ ସ୍ନାତକୋତ୍ତର ଶ୍ରେଣୀ ଛାତ୍ରଛାତ୍ରୀଙ୍କ ପାଠପଢା ଦେୟ ଛାଡ଼ କରିଛନ୍ତି, ଓଡ଼ିଆରେ ପି.ଏଚ୍.ଡ଼ି. ଆସନ ସଂଖ୍ୟା ବୃଦ୍ଧି ଓ ପ୍ରାଧ୍ୟାପକ ପଦବୀ ବୃଦ୍ଧି ସହ ରାଜ୍ୟର ସମସ୍ତ ବିଶ୍ୱବିଦ୍ୟାଳୟ ଓ ୫୨ଟି ସରକାରୀ ମହାବିଦ୍ୟାଳୟରେ ବୃତ୍ତିଗତ ପରାମର୍ଶ ପ୍ରକୋଷ୍ଠ ଖୋଲାଯାଇଛି । ଏତଦ୍‌ବ୍ୟତୀତ, ରାଜ୍ୟର ୮ଟି ବିଶ୍ୱବିଦ୍ୟାଳୟରେ ସିଭିଲ୍ ସର୍ଭିସ୍ କୋଚିଂ ସେଣ୍ଟର ଖୋଲାଯାଇଛି ।

୫୬. ବିଗତ ୬ ବର୍ଷ ମଧ୍ୟରେ ମୋ' ସରକାର 'ବିଜୁ ଯୁବ ସଶକ୍ତିକରଣ ଯୋଜନା'ରେ ୯୦ ହଜାର ଲାପ୍‌ଟପ୍ ପ୍ରଦାନ କରିଛନ୍ତି । ଉଚ୍ଚଶିକ୍ଷାର ଡ଼ିଜିଟାଇଜେସନ ନିମନ୍ତେ ମୋ' ସରକାର ସୂଚନା ପ୍ରଯୁକ୍ତିର ବ୍ୟବହାର କରି ଇ–ଲାଇବ୍ରେରୀ, ଇ–ଆଡ଼ମିଶନ୍ (SAMS), ହାଇପାୱାର କମିଟି (HPC) ଅଟୋମେସନ, 'ଡ଼ିଜିଟାଲ ଜେଣ୍ଡର ଆଟ୍‌ଲାସ୍' ସୃଷ୍ଟି, ପର୍ସନେଲ୍ ଇନ୍‌ଫରମେସନ ମ୍ୟାନେଜ୍‌ମେଣ୍ଟ ସିଷ୍ଟମ (PIMS), ସ୍ୱୋକନ୍ ଟ୍ୟୁଟୋରିଆଲ୍ ପ୍ରୋଜେକ୍ଟ ଇତ୍ୟାଦି ଆରମ୍ଭ କରିଛନ୍ତି ।

୫୭. ସାମାଜିକ, ଅର୍ଥନୈତିକ, ଶିକ୍ଷା, ସ୍ୱାସ୍ଥ୍ୟ ଓ ଜୀବିକା ନିର୍ବାହ କ୍ଷେତ୍ର ପ୍ରତି ସ୍ୱତନ୍ତ୍ର ଧ୍ୟାନ ଦିଆଯିବା ସହିତ ଆମ ରାଜ୍ୟର ଅନୁସୂଚିତ ଜନଜାତି, ଅନୁସୂଚିତ ଜାତି, ପଛୁଆବର୍ଗ ଏବଂ ସଂଖ୍ୟାଲଘୁ ବର୍ଗର ଉନ୍ନତି ନିମନ୍ତେ ମୋ' ସରକାର ଏକ ସାମଗ୍ରିକ ତଥା ସମନ୍ୱିତ ପଦକ୍ଷେପ ଗ୍ରହଣ କରିଛନ୍ତି । ସାମାଜିକ ଉନ୍ନତି ପାଇଁ ଶିକ୍ଷାର ପ୍ରମୁଖ ଭୂମିକା ରହିଥିବାରୁ, ମୋ' ସରକାର ରାଜ୍ୟରେ ପ୍ରାୟ ୪୩୦୦ ଆବାସିକ ବିଦ୍ୟାଳୟ ଏବଂ ୬୪୦୦ ଛାତ୍ରବାସ କାର୍ଯ୍ୟକ୍ଷମ କରି ୫.୭୦ ଲକ୍ଷ ଅନୁସୂଚିତ ଜନଜାତି ଓ ଅନୁସୂଚିତ ଜାତି ବର୍ଗର ବିଦ୍ୟାର୍ଥୀଙ୍କୁ ଗୁଣାତ୍ମକ ଶିକ୍ଷା ପ୍ରଦାନର ବ୍ୟବସ୍ଥା କରିଛନ୍ତି ।

୫୮. ମୋ' ସରକାର ଅନୁସୂଚିତ ଜନଜାତି ଓ ଜାତି ବର୍ଗର ଅନଗ୍ରସର ଛାତ୍ରଛାତ୍ରୀଙ୍କୁ ଗୁଣାତ୍ମକ ଶିକ୍ଷା ସୁଯୋଗ ଯୋଗାଇ ଦେବା ଉଦ୍ଦେଶ୍ୟରେ 'ଅନ୍ୱେଷା' ନାମକ ଏକ ଯୁଗାନ୍ତକାରୀ ଯୋଜନା ଆରମ୍ଭ କରିଛନ୍ତି । ମୋ' ସରକାରଙ୍କର ଏପରି ପଦକ୍ଷେପ ଦ୍ୱାରା ଅଦ୍ୟାବଧି ରାଜ୍ୟର ୧୭ଟି ଜିଲ୍ଲାରେ ଥିବା ବିଭିନ୍ନ ବେସରକାରୀ ବିଦ୍ୟାଳୟରେ ବିନା ଖର୍ଚ୍ଚରେ ପାଠପଢ଼ା, ହଷ୍ଟେଲ, ଖାଇବା ଏବଂ ସ୍କୁଲ ଯିବା ଆସିବା ସୁବିଧା ସହ ୧୯,୦୦୦ ଅନୁସୂଚିତ ଜନଜାତି ଓ ଜାତି ବର୍ଗର ଛାତ୍ରଛାତ୍ରୀ ନାମ ଲେଖାଇପାରିଛନ୍ତି ।

୫୯. ରାଜ୍ୟର ଦୁର୍ଗମ ଅଞ୍ଚଳର ଛାତ୍ରଛାତ୍ରୀଙ୍କୁ ସହରାଞ୍ଚଳରେ ରହି ଉଚ୍ଚଶିକ୍ଷା ଲାଭର ସୁଯୋଗ ଦେବା ଉଦ୍ଦେଶ୍ୟରେ 'ଆକାଂକ୍ଷା' ଯୋଜନାରେ ଭୁବନେଶ୍ୱରଠାରେ ସମସ୍ତ ସୁବିଧା ସୁଯୋଗ ସହ ୨ଟି ସହରାଞ୍ଚଳ ଛାତ୍ରାବାସ ନିର୍ମାଣ କରାଯାଇ ପ୍ରାୟ ୧୦୦୦ ଛାତ୍ରଛାତ୍ରୀଙ୍କ ରହିବା ବ୍ୟବସ୍ଥା କରାଯାଇଛି । ବ୍ରହ୍ମପୁର, ସମ୍ବଲପୁର ଏବଂ ରାଉରକେଲାଠାରେ ମଧ୍ୟ ଆଉ ୬ଟି ନୂତନ ସହରାଞ୍ଚଳ ଛାତ୍ରାବାସ ନିର୍ମାଣ କରାଯାଉଛି, ଯେଉଁଥିରେ ୩୦୦୦ ଛାତ୍ରଛାତ୍ରୀଙ୍କର ରହିବା ବ୍ୟବସ୍ଥା ହୋଇପାରିବ ।

୬୦. ମୋ' ସରକାର ଜଙ୍ଗଲ ଜମି ଅଧିକାର ଅଧିନିୟମକୁ ମିଶନ ମୋଡ୍‌ରେ କାର୍ଯ୍ୟକାରୀ କରୁଛନ୍ତି ଓ ୪.୨୨ ଲକ୍ଷ ବ୍ୟକ୍ତିଗତ ଓ ୬୪୬୭ ଗୋଷ୍ଠୀଗତ ଭୂମି ଅଧିକାର ପ୍ରଦାନପୂର୍ବକ ସେ ବାବଦରେ ୯.୬୮ ଲକ୍ଷ ହେକ୍ଟର ପରିମାଣର ଜମି ଯୋଗାଇ ଦେଇଥିବାରୁ ଓଡ଼ିଶା ସମଗ୍ର ଦେଶରେ ଅଗ୍ରଣୀ ରାଜ୍ୟ ହୋଇପାରିଛି ।

୬୧. ମୋ' ସରକାର ୭୯୫.୪୧କୋଟି ଟଙ୍କାର ବ୍ୟବସ୍ଥା ସହିତ ଓଡ଼ିଶା ନିର୍ଦ୍ଦିଷ୍ଟ ଆପଦଗ୍ରସ୍ତ ଜନଜାତି ଗୋଷ୍ଠୀ ସଶକ୍ତିକରଣ ଓ ଜୀବିକା ଉନ୍ନୟନ କାର୍ଯ୍ୟକ୍ରମ ଆରମ୍ଭ କରିଛନ୍ତି । ୨୦୧୫–୧୬ରୁ ୨୦୨୨–୨୩ ଆର୍ଥିକ ବର୍ଷ ପର୍ଯ୍ୟନ୍ତ ୮ ବର୍ଷ ନିମନ୍ତେ ଏହି ପ୍ରକଳ୍ପ କାର୍ଯ୍ୟକାରୀ ହେବ ଏବଂ ଏଥିରେ ୧୦୧୯ ଗ୍ରାମର ପ୍ରାୟ ୯୬ ହଜାର ପରିବାର ଉପକୃତ ହେବେ ।

୬୨. ସଂଖ୍ୟାଲଘୁ ବର୍ଗଙ୍କୁ ଉନ୍ନତ ମାନର ସୁବିଧାସୁଯୋଗ ସହ ସେମାନଙ୍କ ସାମାଜିକ, ଅର୍ଥନୈତିକ ଏବଂ ସାଂସ୍କୃତିକ ବିକାଶ ଲକ୍ଷ୍ୟରେ ଅଧିକ ସଂଖ୍ୟାଲଘୁ ବସବାସ କରୁଥିବା ଗ୍ରାମଗୁଡ଼ିକ ପାଇଁ ୧୦୦ଟି ବହୁମୁଖୀ ଗୋଷ୍ଠୀ ତଥା ସାଂସ୍କୃତିକ କେନ୍ଦ୍ର ମୋ' ସରକାର ମଞ୍ଜୁର କରିଛନ୍ତି । ସଂଖ୍ୟାଲଘୁ ଛାତ୍ରଛାତ୍ରୀଙ୍କୁ ଗୁଣାତ୍ମକ ଶିକ୍ଷା ସୁବିଧା ଯୋଗାଇଦେବା, ବିଶେଷ କରି ଉଚ୍ଚଶିକ୍ଷା କ୍ଷେତ୍ରରେ ଆବାସିକ ସୁବିଧା ପ୍ରଦାନ ପାଇଁ ୨୦୧୬–୧୭ରୁ ଏକ ନୂତନ ଯୋଜନା ଆରମ୍ଭ କରାଯାଇଛି । ଏହି ଯୋଜନା ଅନୁଯାୟୀ ୪୦୦୦ ସଂଖ୍ୟାଲଘୁ ଛାତ୍ରଛାତ୍ରୀଙ୍କୁ ଆବାସିକ ସୁବିଧା ପ୍ରଦାନ କରିବା ଉଦ୍ଦେଶ୍ୟରେ ୪୦ଟି ହଷ୍ଟେଲ ମଞ୍ଜୁର କରାଯାଇଛି ।

୬୩. ଅନୁରୂପ ଭାବରେ, ମୋ' ସରକାର ଅନ୍ୟାନ୍ୟ ପଛୁଆ ବର୍ଗ/ସାମାଜିକ ଅର୍ଥନୈତିକ ପଛୁଆବର୍ଗର ୧୦,୦୦୦ ଛାତ୍ରଛାତ୍ରୀଙ୍କୁ ଆବାସିକ ସୁବିଧା ଯୋଗାଇ ଦେବା ଉଦ୍ଦେଶ୍ୟରେ ୧୦୦ଟି ଛାତ୍ରାବାସ ମଞ୍ଜୁର କରୁଛନ୍ତି । ଏହି ଛାତ୍ରଛାତ୍ରୀମାନେ ରାଜ୍ୟର ସହରାଞ୍ଚଳରେ ଥିବା ୧୪ଟି ପ୍ରମୁଖ ଶିକ୍ଷାଞ୍ଚଳରେ ଉଚ୍ଚଶିକ୍ଷା ଲାଭ କରିବାର ସୁଯୋଗ ପାଇପାରିବେ ।

୬୪. ଜଙ୍ଗଲ ସଂରକ୍ଷଣ ଓ ଉଜୁଡ଼ା ଜଙ୍ଗଲର ପୁନରୁଦ୍ଧାର ନିମନ୍ତେ ମୋ' ସରକାରଙ୍କ ତ୍ୱରିତ କାର୍ଯ୍ୟାନୁଷ୍ଠାନ ତଥା ଗୋଷ୍ଠୀ ଭାଗୀଦାରି ଫଳରେ ରାଜ୍ୟର ମୋଟ୍ ଭୌଗୋଳିକ ଆୟତନର ୩୫.୫୪ ପ୍ରତିଶତ ଅଞ୍ଚଳ ଜଙ୍ଗଲ ଆଚ୍ଛାଦିତ ହେବା ଏକ ରେକର୍ଡ଼ ହୋଇପାରିଛି । ଭାରତୀୟ ଜଙ୍ଗଲ ସର୍ବେକ୍ଷଣ ଅନୁଯାୟୀ ୫ଟି ନିର୍ଦ୍ଧାରିତ ଅବଧି ୨୦୦୯ ରୁ ୨୦୧୭ ମଧ୍ୟରେ ୨୪୯୦ ବର୍ଗ କିଲୋମିଟର ପରିବ୍ୟାପ୍ତ ଅଞ୍ଚଳରେ ଜଙ୍ଗଲ ବୃଦ୍ଧି କରି ରାଜ୍ୟ ଏକ ରେକର୍ଡ଼ ଅର୍ଜନ କରିଛି ।

୬୫. ମୋ' ସରକାର ମହାନଦୀର ସୁରକ୍ଷା ଓ ସଂରକ୍ଷଣ ସହିତ ମହାନଦୀ, ଇବ୍ ଓ ତେଲ୍ ନଦୀର ଉଭୟ ପାର୍ଶ୍ୱର ୧ କିଲୋମିଟର ପରିବ୍ୟାପ୍ତ ଅଞ୍ଚଳରେ ସବୁଜ ବଳୟ ସୃଷ୍ଟି କରି ଏହାକୁ ସ୍ରୋତସ୍ୱିନୀ କରିବା ଉଦ୍ଦେଶ୍ୟରେ ୨୦୧୭–୧୮ ରୁ ୨୦୨୧–୨୨ ଏହି ପାଞ୍ଚବର୍ଷ ପାଇଁ 'ସବୁଜ ମହାନଦୀ ମିଶନ୍' ଯୋଜନା ଆରମ୍ଭ କରିଛନ୍ତି ।

୬୬. ପୁରୀ ରଥଯାତ୍ରା ସମୟରେ ରଥ ନିର୍ମାଣ ନିମନ୍ତେ କାଠ ଯୋଗାଇଦେବା ଉଦ୍ଦେଶ୍ୟରେ ମୋ' ସରକାର ୧୭.୬୪ ଲକ୍ଷ ବଛାବଛା କିସମର ବୃକ୍ଷ ରୋପଣ କରି ସଫଳତାର ସହିତ 'ଜଗନ୍ନାଥ ବନ ପ୍ରକଳ୍ପ' କାର୍ଯ୍ୟକାରୀ କରିଛନ୍ତି ।

୬୭. ୨୦୧୮ ଅମଳ ବର୍ଷରେ କେନ୍ଦୁପତ୍ର ସଂଗ୍ରହ ବାବଦରେ ୧୫୭.୩୭ କୋଟି ଟଙ୍କା ଏବଂ ବୁଶକଟିଂ ବାବଦରେ ୨୩.୯୨ କୋଟି ଟଙ୍କା ୮ ଲକ୍ଷ କେନ୍ଦୁପତ୍ର ତୋଳାଳି ତଥା ୨୪ ହଜାର ବନ୍ଧାଳି ଯେଉଁମାନଙ୍କ ଭିତରେ ସମାଜର

ଦୁର୍ବଳ ଶ୍ରେଣୀର ଲୋକ ଏବଂ ବିଶେଷ ଭାବରେ ମହିଳା ରହିଛନ୍ତି ସେମାନଙ୍କ ବ୍ୟାଙ୍କ/ଡ଼ାକଘର ଜମାଖାତା ମାଧ୍ୟମରେ ବିତରଣ କରାଯାଇଛି କେରି ସଂଗ୍ରହ ମୂଲ୍ୟର ଶତ ପ୍ରତିଶତ ହାରରେ ବୋନସ ପରିମାଣ ୧୫୯.୨୩ କୋଟି ଟଙ୍କା ସେମାନଙ୍କ ବ୍ୟାଙ୍କ ଜମାଖାତା ଜରିଆରେ ବିତରଣ କରାଯାଇଛି ଓ ବନ୍ଧାଳି ତଥା ସାମୟିକ କର୍ମଚାରୀମାନଙ୍କୁ ପ୍ରୋତ୍ସାହନ ବାବଦରେ ୧୫.୩୦କୋଟି ଟଙ୍କା ପ୍ରଦାନ କରାଯାଇଛି ।

୬୮. କେନ୍ଦୁପତ୍ର ତୋଳାଳି ଓ ବନ୍ଧାଳିମାନଙ୍କ ମୃତ୍ୟୁ ଏବଂ ଅକ୍ଷମତା କ୍ଷେତ୍ରରେ ୧ ଲକ୍ଷ ଟଙ୍କାର ଅନୁକମ୍ପାମୂଳକ ସହାୟତା, ସର୍ବାଧିକ ଦୁଇଜଣ ଝିଅଙ୍କ ବିବାହ ନିମନ୍ତେ ୨୫ ହଜାର ଟଙ୍କା, ଦୁରାରୋଗ୍ୟ ରୋଗର ଚିକିତ୍ସା ସକାଶେ ୨ ଲକ୍ଷ ଟଙ୍କା ପର୍ଯ୍ୟନ୍ତ ସହାୟତା ଓ ସର୍ବାଧିକ ଦୁଇଜଣ ସନ୍ତାନଙ୍କ ପାଇଁ ଶିକ୍ଷାବୃତ୍ତି ପ୍ରଦାନ ନିମନ୍ତେ ଏକ କଲ୍ୟାଣ ଟ୍ରଷ୍ଟ ପାଣ୍ଠି ଗଠନ କରାଯାଇଛି ।

୬୯. ମୋ' ସରକାର ଶାଳପତ୍ର ସଂଗ୍ରହ ଉପରେ କ୍ୱିଣ୍ଟାଲ ପ୍ରତି ରହିଥିବା ୮୬ ଟଙ୍କାର ରୟାଲିଟିକୁ ସଂପୂର୍ଣ୍ଣ ରୂପେ ଉଚ୍ଛେଦ କରିଛନ୍ତି । ଏହାଦ୍ୱାରା ରାଜ୍ୟର ପ୍ରାୟ ୨୫ ଲକ୍ଷ ଶାଳପତ୍ର ସଂଗ୍ରହକାରୀ ଉପକୃତ ହେବେ ।

୭୦. ସୁସ୍ଥ ଜଙ୍ଗଲ ପରିବେଶ ଓ ବିଭିନ୍ନ ପ୍ରକଳ୍ପ ଗ୍ରାମଗୁଡ଼ିକରେ ବାସ କରୁଥିବା ତଥା ଜଙ୍ଗଲ ଉପରେ ନିର୍ଭରଶୀଳ ଅଧିବାସୀଙ୍କ ଜୀବିକା ନିର୍ବାହକୁ ସୁସଂହତ କରିବା ଲକ୍ଷ୍ୟ ସହ ଜାପାନ ଇଣ୍ଟରନ୍ୟାସନାଲ କୋ-ଅପରେସନ୍ ଏଜେନ୍ସି (ଜେଆଇସିଏ)ର ସହଯୋଗକ୍ରମେ ୧୦୦୦ କୋଟି ଟଙ୍କାରୁ ଊର୍ଦ୍ଧ୍ୱ ପ୍ରକଳ୍ପ ବ୍ୟୟ ଅଟକଳରେ ଓଡ଼ିଶା ବନାଞ୍ଚଳ କ୍ଷେତ୍ର ଉନ୍ନୟନ ପ୍ରକଳ୍ପର ୨ୟ ପର୍ଯ୍ୟାୟ ୨୦୧୭-୧୮ ରୁ ୨୦୨୬-୨୭ ମସିହା ମଧ୍ୟରେ କାର୍ଯ୍ୟକାରୀ ହେଉଛି ।

୭୧. ପଶ୍ଚିମ ଓଡ଼ିଶାରେ ଆଞ୍ଚଳିକ ବୈଷମ୍ୟ ହ୍ରାସ ଓ ବିକାଶର ଗତିକୁ ତ୍ୱରାନ୍ୱିତ କରିବା ପାଇଁ ମୋ' ସରକାର ୨୦୧୮-୧୯ ବର୍ଷ ମଧ୍ୟରେ ୧୦୦ କୋଟି ଟଙ୍କା ବ୍ୟୟ ଅଟକଳରେ ୨୪୨୮ଟି ପ୍ରକଳ୍ପର ଅନୁମୋଦନ କରିଛନ୍ତି ।

୭୨. ପ୍ରଶାସନ ଓ ବିକାଶର ବିବିଧ କ୍ଷେତ୍ରରେ ଅଭିନବ ଚିନ୍ତାଧାରାକୁ ପ୍ରୋତ୍ସାହିତ କରିବା ପାଇଁ ମୋ' ସରକାର ବିଭିନ୍ନ କ୍ଷେତ୍ରର ପ୍ରଥିତଯଶା ବ୍ୟକ୍ତିତ୍ୱଙ୍କୁ ଓଡ଼ିଶା ଜ୍ଞାନପୁଞ୍ଜ ବକ୍ତୃତାମାଳା (Odisha Knowledge Hub Lecture Series) ଅଧୀନରେ ବକ୍ତୃତା ପ୍ରଦାନ ପାଇଁ ଏବଂ ରାଜ୍ୟର ବରିଷ୍ଠ ଅଧିକାରୀମାନଙ୍କୁ ସେଥିରେ ଅଂଶଗ୍ରହଣ କରିବା ପାଇଁ ଆମନ୍ତ୍ରଣ କରୁଛନ୍ତି । ୨୦୧୮-୧୯ ବର୍ଷରେ ଏଭଳି ଚାରୋଟି ଉପାଦେୟ ବକ୍ତୃତା ପ୍ରଦାନ କରାଯାଇଛି । ଭିଡ଼ିଓ କନ୍‌ଫରେନ୍ସିଂ ମାଧ୍ୟମରେ ସମସ୍ତ ଜିଲ୍ଲା ସ୍ତରୀୟ ଅଧିକାରୀମାନେ ମଧ୍ୟ ଏହି ବକ୍ତୃତାମାଳାରେ ଅଂଶଗ୍ରହଣ କରିଥିଲେ ।

୭୩. ବିଗତ ୧୮ ବର୍ଷ ମଧ୍ୟରେ ବିବିଧ ଆର୍ଥିକ ସଂସ୍କାରମୂଳକ ପଦକ୍ଷେପ କାର୍ଯ୍ୟକାରୀ କରି ମୋ' ସରକାର ରାଜ୍ୟ ଅର୍ଥନୀତିରେ ଉଲ୍ଲେଖନୀୟ ପ୍ରଗତି ହାସଲ କରିଛନ୍ତି । ଓଡ଼ିଶା ବିତ୍ତୀୟ ଦାୟିତ୍ୱ ଏବଂ ବଜେଟ୍ ପରିଚାଳନା (FRBM) ଅଧିନିୟମ କାର୍ଯ୍ୟକାରୀ ହେବାଠାରୁ ଏଥିରେ ଥିବା ସମସ୍ତ ନିୟାମକଗୁଡ଼ିକୁ ପାଳନ କରିବାରେ ରାଜ୍ୟ ସକ୍ଷମ ହୋଇଛି । ମୋ' ସରକାରଙ୍କର ସଂଗଠିତ ଉଦ୍ୟମ ଯୋଗୁଁ ରାଜ୍ୟର ଋଣଭାର ୨୦୦୨-୦୩ ବର୍ଷରେ ୫୦.୭ ପ୍ରତିଶତ ସ୍ତରରୁ ୨୦୧୭-୧୮ ବର୍ଷରେ ୧୭.୮ ପ୍ରତିଶତକୁ ହ୍ରାସ ପାଇଛି । ଅନୁରୂପ ଭାବେ, ରାଜସ୍ୱପ୍ରାପ୍ତି ଅନୁପାତରେ ସୁଧ ଦେୟ ୨୦୦୧-୦୨ ବର୍ଷରେ ୪୦.୨ ପ୍ରତିଶତ ଥିବାବେଳେ ୨୦୧୭-୧୮ ବର୍ଷରେ ଏହା ୫.୯ ପ୍ରତିଶତକୁ ହ୍ରାସ ପାଇଛି ।

୭୪. ବୈଧାନିକ ଏବଂ ପ୍ରଶାସନିକ ପଦକ୍ଷେପ ତଥା ବ୍ୟାପକ ପ୍ରଚାରପ୍ରସାର କାର୍ଯ୍ୟକ୍ରମ ଜରିଆରେ ମୋ' ସରକାର ୨୦୧୭ ମସିହା ଜୁଲାଇ ୧ ତାରିଖରୁ ଓଡ଼ିଶାରେ ଦ୍ରବ୍ୟ ଓ ସେବା କର ପ୍ରଚଳନ କରିଛନ୍ତି ।

୭୫. ସପ୍ତମ ବେତନ କମିଶନ୍‌ଙ୍କ ସୁପାରିଶ ଲାଗୁ କରାଯିବା ଦ୍ୱାରା ମୋ' ସରକାରଙ୍କର ୪ ଲକ୍ଷରୁ ଊର୍ଦ୍ଧ୍ୱ କର୍ମଚାରୀ ଏବଂ ୩ ଲକ୍ଷରୁ ଊର୍ଦ୍ଧ୍ୱ ପେନ୍‌ସନ୍‌ଭୋଗୀ ସଂଶୋଧିତ ଦରମା ହାର ପ୍ରବର୍ତ୍ତନ ଦ୍ୱାରା ଉପକୃତ ହୋଇଛନ୍ତି ।

୭୬. ସମନ୍ୱିତ ଆର୍ଥିକ ପରିଚାଳନା ବ୍ୟବସ୍ଥା, ଆଇଏଫ୍ଏମ୍ଏସ୍ ସହ ଭାରତୀୟ ଷ୍ଟେଟ୍ ବ୍ୟାଙ୍କ୍ ଇଲେକ୍ଟ୍ରୋନିକ୍ ପ୍ରଦାନର ଏକୀକରଣ, ସରକାରୀ ଆର୍ଥିକ ପରିଚାଳନା ବ୍ୟବସ୍ଥା ଓ ପେନ୍ସନ୍‌ର ଅନ୍‌ଲାଇନ୍ ସଂଶୋଧନ ନିମନ୍ତେ 'ଅର୍ପଣ' ପୋର୍ଟାଲ୍ ପରି ବିଭିନ୍ନ ପଦକ୍ଷେପ ମାଧ୍ୟମରେ ମୋ' ସରକାର ସରକାରୀ ବ୍ୟୟ ଓ ଫଳଦାୟକ ସାମର୍ଥ୍ୟକୁ ଅଗ୍ରାଧିକାର ଦେଇଛନ୍ତି ।

୭୭. ଶ୍ରମିକମାନଙ୍କର ନୈତିକ ମନୋବଳ ବୃଦ୍ଧି ସହ ସେମାନଙ୍କ ଜୀବନଧାରଣ ମାନରେ ଉନ୍ନତି ଓ ସେମାନଙ୍କ ମଧ୍ୟରେ ଅସଂଗତି, ଅସମାନତା ଓ ତାରତମ୍ୟ ତଥା ଦାରିଦ୍ର୍ୟ ହ୍ରାସ ଲକ୍ଷ୍ୟ ରଖି ମୋ' ସରକାର ୮୯ ତାଲିକାଭୁକ୍ତ ନିୟୋଜନ କ୍ଷେତ୍ରରେ ସମୟଭିତ୍ତିକ ସର୍ବନିମ୍ନ ମଜୁରି ବୃଦ୍ଧି ସହ ୧୫ଟି ତାଲିକାଭୁକ୍ତ ନିୟୋଜନ କ୍ଷେତ୍ରରେ, ଭିନ୍ନ ଭିନ୍ନ ସ୍ତରରେ ଶ୍ରମିକମାନଙ୍କର ମଜୁରି ବୃଦ୍ଧି କରିଛନ୍ତି । ୨୦୧୮ ମସିହା ଅକ୍ଟୋବର ୩୦ ତାରିଖରୁ ଅଣକୁଶଳୀ ଶ୍ରମିକମାନଙ୍କ ସର୍ବନିମ୍ନ ମଜୁରି ୨୦୦ ଟଙ୍କାରୁ ୨୮୦ ଟଙ୍କାକୁ ବୃଦ୍ଧି କରାଯାଇଥିବାବେଳେ ଅର୍ଦ୍ଧକୁଶଳୀ ଶ୍ରମିକଙ୍କ ସର୍ବନିମ୍ନ ମଜୁରି ୨୨୦ ଟଙ୍କାରୁ ୩୨୦ ଟଙ୍କାକୁ, କୁଶଳୀ ଶ୍ରମିକଙ୍କ ନିମନ୍ତେ ୨୪୦ ଟଙ୍କାରୁ ୩୭୦ ଟଙ୍କା ଏବଂ ଅତିକୁଶଳୀ ଶ୍ରମିକଙ୍କ କ୍ଷେତ୍ରରେ ୨୬୦ ଟଙ୍କାରୁ ୪୩୦ ଟଙ୍କାକୁ ବୃଦ୍ଧି କରାଯାଇଛି ।

୭୮. ରାଜ୍ୟର ସମସ୍ତ ଦୋକାନ ଏବଂ ବାଣିଜ୍ୟିକ ପ୍ରତିଷ୍ଠାନଗୁଡ଼ିକର ନାମଫଳକରେ ଓଡ଼ିଆ ଭାଷା ବ୍ୟବହାରକୁ ସୁନିଶ୍ଚିତ କରିବା ଲକ୍ଷ୍ୟରେ ମୋ' ସରକାର ଓଡ଼ିଶା ଦୋକାନ ଓ ବାଣିଜ୍ୟିକ ପ୍ରତିଷ୍ଠାନ ଅଧିନିୟମ, ୧୯୫୬ର ଆବଶ୍ୟକୀୟ ସଂଶୋଧନ ଆଣିଛନ୍ତି ।

୭୯. ସରକାରୀ ତାଲିମ ପ୍ରତିଷ୍ଠାନଗୁଡ଼ିକରେ ଆଇ.ଟି.ଆଇ. ଏବଂ ଡ଼ିପ୍ଲୋମା ଶିକ୍ଷା ପରି ବୈଷୟିକ ଶିକ୍ଷା ଆହରଣ କରିବା ନିମନ୍ତେ ଓଡ଼ିଶା କୋଠାବାଡ଼ି ଏବଂ ଅନ୍ୟାନ୍ୟ ନିର୍ମାଣ ଶ୍ରମିକ କଲ୍ୟାଣ ବୋର୍ଡ଼ ଅଧୀନରେ ପଞ୍ଜିକୃତ ହିତାଧିକାରୀମାନଙ୍କର ପିଲାମାନଙ୍କୁ ଆର୍ଥିକ ସହାୟତା ଯୋଗାଇଦେବା ଲକ୍ଷ୍ୟରେ ମୋ' ସରକାର 'ନିର୍ମାଣ କୁସୁମ' ଯୋଜନା ପ୍ରଣୟନ କରିଛନ୍ତି ।

୮୦. ମୋ' ସରକାର ରାଜ୍ୟର ସମସ୍ତ ରାଜ୍ୟ ରାଜପଥକୁ ଅତିକମ୍‌ରେ ଦୁଇ ଲେନ୍ ବିଶିଷ୍ଟ କରିବାକୁ ଯୋଜନା କରିଛନ୍ତି । ରାଜ୍ୟର ୨୧୫୮ କି.ମି. ଦୀର୍ଘ ଏକ ଲେନ୍ ବିଶିଷ୍ଟ ରାଜ୍ୟ ରାଜପଥ ମଧ୍ୟରୁ ୧୭୦୦ କି.ମି. ରାସ୍ତାର ଦୋହରିକରଣ କରାଯାଇଛି ଏବଂ ଅବଶିଷ୍ଟ ୨୦୧୯–୨୦ ଶେଷ ସୁଦ୍ଧା ସମ୍ପୂର୍ଣ୍ଣ କରାଯିବ ।

୮୧. ମୋ' ସରକାର ୪ ଲେନ୍ ବିଶିଷ୍ଟ ୬୪୦ କି.ମି. ବିଶିଷ୍ଟ ଦୀର୍ଘ ରାସ୍ତା 'ବିଜୁ ଏକ୍ସପ୍ରେସ୍ ୱେ' ନିର୍ମାଣ କରୁଛନ୍ତି, ଯାହାକି ରାଜ୍ୟର ପଶ୍ଚିମ ଓଡ଼ିଶା ଓ କେ.ବି.କେ ଜିଲ୍ଲା ଦେଇ ଜଗଦଲ୍ଲପୁରରୁ ରାଉରକେଲା ପର୍ଯ୍ୟନ୍ତ ସଂଯୋଗ କରିବ । ୪ ଲେନ୍ ବିଶିଷ୍ଟ ସମ୍ବଲପୁରଠାରୁ ରାଉରକେଲା ପର୍ଯ୍ୟନ୍ତ ୧୨୯୨.୫୬ କୋଟି ଟଙ୍କା ବ୍ୟୟରେ ନିର୍ମିତ ରାଜ୍ୟ ରାଜପଥ–୧୦ର ୧୬୪ କି.ମି. ଦୀର୍ଘ ରାସ୍ତା ନିର୍ମାଣ ସମ୍ପୂର୍ଣ୍ଣ ହୋଇ ରାଜ୍ୟବାସୀଙ୍କ ଉଦ୍ଦେଶ୍ୟରେ ଲୋକାର୍ପିତ ହୋଇଛି ।

୮୨. ୨୦୧୮–୧୯ରେ ମୋ' ସରକାର ପୁରୀ ସହର ପାଇଁ ମହତ୍ୱାକାଂକ୍ଷୀ ଅବଢ଼ା (ଅଗମେଣ୍ଟେସନ ଅଫ ବେସିକ ଆମେନିଟିଜ୍ ଆଣ୍ଡ ଡ଼େଭେଲପମେଣ୍ଟ ଅଫ ହେରିଟେଜ ଆଣ୍ଡ ଆର୍କିଟେକ୍‌ଚର) ଯୋଜନା ପାଇଁ ୭୦ କୋଟି ଟଙ୍କା ଯୋଗାଇ ଦେଇଛନ୍ତି, ଯାହାକି ଭୂମି ଅଧିଗ୍ରହଣ, ପୁନର୍ବସତି, ଥଇଥାନ, ସଡ଼କ ଉନ୍ନତିକରଣ, ଶ୍ରୀଜଗନ୍ନାଥ ମନ୍ଦିର ଓ ପରିପାର୍ଶ୍ୱରେ ଅଧିକ ସୁବିଧା ଉପଲବ୍ଧ ହେବା, ହବିଷ୍ୟାଳୀ କେନ୍ଦ୍ର ନିର୍ମାଣ ଏବଂ ଅନ୍ୟାନ୍ୟ ଆନୁଷଙ୍ଗିକ ସୁବିଧା ବାବଦରେ ବ୍ୟୟ କରାଯିବ ।

୮୩. ମୋ' ସରକାରଙ୍କ ଦ୍ୱାରା ମହାନଦୀ ଉପରେ ୧୩ଟି ସେତୁ ନିର୍ମାଣ ପାଇଁ ପଦକ୍ଷେପ ନିଆଯାଇ ତନ୍ମଧ୍ୟରୁ ୮ଟି ସେତୁ ନିର୍ମାଣ କାର୍ଯ୍ୟ ଶେଷ ହୋଇଛି । ସେହିପରି ବ୍ରାହ୍ମଣୀ ନଦୀ ଉପରେ ୭ଟି ସେତୁ ନିର୍ମାଣ କାର୍ଯ୍ୟ ହାତକୁ ନିଆଯାଇଥିବା ବେଳେ ସେଥିମଧ୍ୟରୁ ୫ଟିର ନିର୍ମାଣ କାର୍ଯ୍ୟ ସମ୍ପର୍ଣ୍ଣ ହୋଇଛି । କାଠଯୋଡ଼ି ନଦୀ ଉପରେ ରାଜ୍ୟର ଦୀର୍ଘତମ ସେତୁ

ନିର୍ମାଣ ଶେଷ ହେବା ଫଳରେ କଟକ-ଭୁବନେଶ୍ୱର ଦ୍ୱୈତ ନଗରକୁ ବିକଳ୍ପ ରାସ୍ତା ସଂଯୋଗୀକରଣ ହୋଇପାରିଛି । ଦୀର୍ଘ ଦିନରୁ ପ୍ରତୀକ୍ଷିତ ଗୁରୁପ୍ରିୟା ସେତୁ ନିର୍ମିତ ହୋଇ ମାଲକାନଗିରିବାସୀଙ୍କ ଉଦ୍ଦେଶ୍ୟରେ ଲୋକାର୍ପିତ ହୋଇଛି । ସ୍ୱାଭିମାନ ଅଞ୍ଚଳ ଭାବେ ଅଧୁନା ନାମିତ ଏହି ଅଞ୍ଚଳର ଭିତ୍ତିଭୂମିର ବିକାଶ ଓ ଜୀବନଜୀବିକାର ସୁବିଧା ନିମନ୍ତେ ମୋ' ସରକାର ୧୦୦ କୋଟି ଟଙ୍କାର ଏକ ସ୍ୱତନ୍ତ୍ର ପ୍ୟାକେଜ୍ ଘୋଷଣା କରିଛନ୍ତି ।

୮୪. ଗ୍ରାମାଞ୍ଚଳରେ ଉନ୍ନତ ଗମନାଗମନ ପାଇଁ ସଡ଼କ ସଂଯୋଗୀକରଣ କାର୍ଯ୍ୟ ଏବଂ ଭିତ୍ତିଭୂମି ନିର୍ମାଣ ଦିଗରେ ମୋ' ସରକାର ବିବିଧ ଯୋଜନାମାନ ପ୍ରଣୟନ କରୁଛନ୍ତି । ଚଳିତ ଆର୍ଥିକ ବର୍ଷରେ, 'ବିଜୁ ସେତୁ ଯୋଜନା', 'ଗ୍ରାମ୍ୟ ଭିତ୍ତିଭୂମି ଉନ୍ନୟନ ପାଣ୍ଠି', 'ମୁଖ୍ୟମନ୍ତ୍ରୀ ସଡ଼କ ଯୋଜନା' ଆଦି ବିଭିନ୍ନ ଯୋଜନା ମାଧ୍ୟମରେ ୯,୨୩୦ କି.ମି. ଗ୍ରାମ୍ୟ ରାସ୍ତା ଏବଂ ୧୫୦ଟି ସେତୁର ନିର୍ମାଣ ନିମନ୍ତେ ସ୍ଥିରୀକୃତ ହୋଇଛି ।

୮୫. ରାଜ୍ୟର ସହରାଞ୍ଚଳରେ ସମସ୍ତ ଜନସାଧାରଣଙ୍କ ନିମନ୍ତେ ବାସୋପଯୋଗୀ, ସମୁନ୍ନତ ସହରୀକରଣ ଅନ୍ତର୍ଭୁକ୍ତ ଲକ୍ଷ୍ୟ ରଖି ରାଜ୍ୟ ସରକାର ବିବିଧ ପଦକ୍ଷେପ ଗ୍ରହଣ ପୂର୍ବକ ସହରାଞ୍ଚଳର ଭିତ୍ତିଭୂମି ନିର୍ମାଣ ଏବଂ ସହରାଞ୍ଚଳରେ ମୌଳିକ ସେବା ସୁବିଧା ଯୋଗାଇ ଦେଇଛନ୍ତି । ସହରାଞ୍ଚଳ ଭିତ୍ତିଭୂମି ନିର୍ମାଣରେ ରହୁଥିବା ଗୁରୁତ୍ୱପୂର୍ଣ୍ଣ ଅଭାବଗୁଡ଼ିକର ପୂରଣ ଓ ସହରାଞ୍ଚଳରେ କାର୍ଯ୍ୟକାରୀ କରାଯାଉଥିବା ସମସ୍ତ ଯୋଜନା ଏବଂ କାର୍ଯ୍ୟକ୍ରମଗୁଡ଼ିକୁ ଏକତ୍ର କରି ମୋ' ସରକାର 'ଉନ୍ନତି' ଯୋଜନା ସହରାଞ୍ଚଳ ରୂପାନ୍ତରଣ ନିମନ୍ତେ ପ୍ରଣୟନ କରିଛନ୍ତି । ଏହି କାର୍ଯ୍ୟକ୍ରମ ଜରିଆରେ ୪୩୭ କୋଟି ଟଙ୍କା ପୁଞ୍ଜିବିନିଯୋଗରେ ୧୧,୭୩୧ ପ୍ରକଳ୍ପ ମଞ୍ଜୁର ହୋଇଛି ଏବଂ ତନ୍ମଧ୍ୟରୁ ୪୧୭୩ ପ୍ରକଳ୍ପ କାର୍ଯ୍ୟ ବର୍ତ୍ତମାନ ସୁଦ୍ଧା ଶେଷ ହୋଇଥିବା ବେଳେ ଅବଶିଷ୍ଟ ପ୍ରକଳ୍ପଗୁଡ଼ିକ ଯଥାଶୀଘ୍ର କାର୍ଯ୍ୟକାରୀ କରାଯିବ ।

୮୬. ସହରାଞ୍ଚଳରେ ସମସ୍ତଙ୍କୁ ପାଇପ୍ ଜଳ ଯୋଗାଣ ମୋ' ସରକାରଙ୍କ ସର୍ବାଧିକ ଅଗ୍ରାଧିକାର । ଏହି ଲକ୍ଷ୍ୟ ସାଧନ ନିମନ୍ତେ 'ବସୁଧା' ଯୋଜନା ଜରିଆରେ ୫୮୯ କୋଟି ଟଙ୍କା ବିନିଯୋଗରେ ୫୪୬ଟି ପ୍ରକଳ୍ପ ସହରାଞ୍ଚଳରେ କାର୍ଯ୍ୟକାରୀ କରାଯାଉଛି । ରାଜ୍ୟର ସମସ୍ତ ୧୧୪ଟି ପୌରାଞ୍ଚଳରେ ଶକ୍ତିସଞ୍ଚୟକାରୀ ସ୍ମାର୍ଟ ଏଲ୍.ଇ.ଡ଼ି. ଲାଇଟ୍ ଦ୍ୱାରା ରାସ୍ତା ଆଲୋକୀକରଣ ବ୍ୟବସ୍ଥା କରାଯିବା ନିମନ୍ତେ ଏକ ଯୁଗାନ୍ତକାରୀ ଯୋଜନା ପ୍ରଣୟନ କରାଯାଉଛି । ଏହି ଯୋଜନାରେ ରାସ୍ତାରେ ଥିବା ସମସ୍ତ ଗତାନୁଗତିକ ବିଦ୍ୟୁତ ଆଲୋକ ବ୍ୟବସ୍ଥାଗୁଡ଼ିକୁ ସ୍ମାର୍ଟ୍ ଏଲ୍.ଇ.ଡ଼ି ଲାଇଟ୍‌ରେ ପୁନଃ ସ୍ଥାପନ କରାଯାଉଛି । ଏଥିସହିତ, ଯେଉଁ ରାସ୍ତାଗୁଡ଼ିକରେ ଆଲୋକୀକରଣ ବ୍ୟବସ୍ଥା ନଥିଲା ସେଠାରେ ବର୍ତ୍ତମାନ ସ୍ମାର୍ଟ ଏଲ୍.ଇ.ଡ଼ି. ଲାଇଟ୍‌ର ବ୍ୟବସ୍ଥା କରାଯାଇଛି । ଏହି ଯୋଜନାରେ ୬୪୦ କୋଟି ଟଙ୍କା ବିନିଯୋଗ କରାଯାଇଛି ।

୮୭. ସମସ୍ତ ୪୭ ପୌରାପରିଷଦ ଏବଂ ୬୨ ବିଜ୍ଞପିତ ଅଞ୍ଚଳ ପରିଷଦଗୁଡ଼ିକରେ ବସବାସ କରୁଥିବା ବସ୍ତିବାସିନ୍ଦାଙ୍କୁ ଭୂମି ଅଧିକାର ପ୍ରଦାନ କରିବା ଲକ୍ଷ୍ୟରେ ଓଡ଼ିଶା ବସ୍ତିବାସିନ୍ଦା ଭୂମି ଅଧିକାର ଅଧିନିୟମ-୨୦୧୭ ଭଳି ଏକ ଐତିହାସିକ ନିୟାମକ କାର୍ଯ୍ୟକାରୀ କରାଯାଇଛି । ଜାଗା ମିଶନ ଜରିଆରେ ଏଯାବତ୍ ୧୩,୦୦୦ ଭୂମି ଅଧିକାର ପ୍ରମାଣପତ୍ର (ସାର୍ଟିଫିକେଟ୍) ବଣ୍ଟନ କରାଯାଇଛି ଏବଂ ଯୋଗ୍ୟ ସମସ୍ତ ବସ୍ତିବାସିନ୍ଦାଙ୍କୁ ମାର୍ଚ୍ଚ ୨୦୧୯ ସୁଦ୍ଧା ଅଗ୍ରାଧିକାର ଦେଇ ବସବାସ ଭିତ୍ତିରେ ଭୂମି ଅଧିକାର ପ୍ରମାଣପତ୍ର ଯୋଗାଇଦେବା ନିମନ୍ତେ ଉଦ୍ୟମ ଜାରି ରହିଛି ।

୮୮. ସୁଲଭ ଦରରେ ସ୍ୱାସ୍ଥ୍ୟକର ସୁଷମ ପୁଷ୍ଟିକର ରନ୍ଧା ଖାଦ୍ୟ ସହରାଞ୍ଚଳର ଗରିବଙ୍କୁ ସହରାଞ୍ଚଳର ବିଭିନ୍ନ ଜନଗହଳିପୂର୍ଣ୍ଣ ସ୍ଥାନରେ ଯୋଗାଇଦେବା ଲକ୍ଷ୍ୟରେ ମୋ' ସରକାରଙ୍କ ପକ୍ଷରୁ 'ଆହାର' କାର୍ଯ୍ୟକ୍ରମର ଅପ୍ରେଲ ପହିଲା ୨୦୧୫ରେ ଶୁଭାରମ୍ଭ କରାଯାଇଥିଲା । ସଂପ୍ରତି ୩୦ ଗୋଟି ଜିଲ୍ଲାରେ ୧୧୮ଟି 'ଆହାର' କେନ୍ଦ୍ର କାର୍ଯ୍ୟ କରୁଛି । ୩୧ ଡିସେମ୍ବର୨୦୧୮ ଠାରୁ ବିଭିନ୍ନ ଡାକ୍ତରଖାନା ପରିସରରେ ଥିବା ୫୬ଟି 'ଆହାର' କେନ୍ଦ୍ରରେ ରାତ୍ରିକାଳୀନ ଆହାର ବ୍ୟବସ୍ଥା କରାଯାଇଛି ।

୮୯. ମୋ ସରକାର ଭୁବନେଶ୍ୱର, କଟକ, ପୁରୀ-କୋଣାର୍କ ଉନ୍ନୟନ କର୍ତ୍ତୃପକ୍ଷ ଅଞ୍ଚଳରେ ପରିବହନ ବ୍ୟବସ୍ଥା ଯୋଗାଇଦେବା ପାଇଁ କ୍ୟାପିଟାଲ୍ ରିଜନ୍ ଅର୍ବାନ୍ ଟ୍ରାନ୍ସପୋର୍ଟ (ସିଆର୍ୟୁଟି) ଅଧୀନରେ ଏକ ଏସ୍‌ପିଭି କାର୍ଯ୍ୟକାରୀ କରୁଛନ୍ତି । ପ୍ରଥମ ପର୍ଯ୍ୟାୟରେ ସିଆର୍ୟୁଟି ଦ୍ୱାରା ପରିକଳ୍ପିତ ଭୁବନେଶ୍ୱର ସିଟି ବସ୍ ଆଧୁନିକୀକରଣ ଯୋଜନାରେ ପର୍ଯ୍ୟାପ୍ତ ଗମନାଗମନ ସେବା ଯୋଗାଇଦେବା ଉଦ୍ଦେଶ୍ୟରେ ଏବେ ଚାଲୁ ରହିଥିବା ୧୧୦ଟି ବସ୍ ସେବାର ପରିସର ବୃଦ୍ଧି କରିବା ପାଇଁ ୨୦୦ଟି ବସ୍ କ୍ରୟ କରାଯାଇଛି । ୧୭୪.୩୫ କୋଟି ଟଙ୍କା ବ୍ୟୟ ଅଟକଳରେ ଭୁବନେଶ୍ୱରସ୍ଥିତ ବରମୁଣ୍ଡା ବସ୍ ଟର୍ମିନାଲ୍‌କୁ ଅତ୍ୟାଧୁନିକ ଆନ୍ତଃରାଜ୍ୟ ବସ୍ ଟର୍ମିନାଲ୍‌ରେ ପରିଣତ କରିବା କାର୍ଯ୍ୟ ହାତକୁ ନିଆଯାଇଛି ।

୯୦. ଶକ୍ତି କ୍ଷେତ୍ରରେ ସରକାରଙ୍କ ନିରବଚ୍ଛିନ୍ନ ଉଦ୍ୟମ ଯୋଗୁଁ ବିଜୁ ଗ୍ରାମଜ୍ୟୋତି, ବିଜୁ ସହରାଞ୍ଚଳ ବିଦ୍ୟୁତିକରଣ ଯୋଜନା ଏବଂ ଅନ୍ୟାନ୍ୟ ଯୋଜନା ମାଧ୍ୟମରେ ଶତକଡ଼ା ୧୦୦ ଭାଗ ଗ୍ରାମାଞ୍ଚଳ ତଥା ସହରାଞ୍ଚଳ ବିଦ୍ୟୁତିକରଣ ''ସମସ୍ତଙ୍କ ପାଇଁ ଶକ୍ତି'' ସମ୍ଭବପର ହୋଇପାରିଛି । ଗତବର୍ଷ ୨୨ ଲକ୍ଷ ପରିବାରକୁ ବିଦ୍ୟୁତ ସଂଯୋଗ ଦିଆଯାଇଥିବାବେଳେ ସର୍ବମୋଟ ୯୬ ଲକ୍ଷ ପରିବାରକୁ ବିଦ୍ୟୁତ ସଂଯୋଗ କରାଯାଇପାରିଛି । ବିଭିନ୍ନ ଯୋଜନା ମାଧ୍ୟମରେ ବିଦ୍ୟୁତ୍ ଶକ୍ତି ଉତ୍ପାଦନ, ସଂଯୋଗ, ଯୋଗାଯୋଗ ଏବଂ ବଣ୍ଟନ ଭିତ୍ତିଭୂମିର ଉନ୍ନତିକରଣ ମାଧ୍ୟମରେ ଏହି ପ୍ରଶଂସାଯୋଗ୍ୟ ଲକ୍ଷ୍ୟ ହାସଲ ହୋଇପାରିଛି ।

୯୧. ମୋ' ସରକାର ଶକ୍ତି ସଂଚରଣର ବୃଦ୍ଧି, ଉନ୍ନତିକରଣ ଏବଂ ଆଧୁନିକୀକରଣ କରିବା ପାଇଁ ଓପିଟିସିଏଲ୍ ମାଧ୍ୟମରେ ୧୪୪ଟି ଗ୍ରୀଡ୍ ସବ୍‌ଷ୍ଟେସନ ସ୍ଥାପନ, ୧୩,୭୫୭ ସର୍କିଟ କିଲୋମିଟରର ଏଚ୍.ଟି ଲାଇନ ଏବଂ ୧୮୪୧୬ ଏମ୍.ଭି.ଏ.ର ଉପଯୋଗ କରି ଆମ ରାଜ୍ୟକୁ ଦେଶର ଅନ୍ୟତମ ଶ୍ରେଷ୍ଠ ଟ୍ରାନ୍ସମିଶନ୍ ଉପଯୋଗୀ ରାଜ୍ୟରେ ପରିଣତ କରିଛନ୍ତି । ନୂଆ ବୈଷୟିକ ଜ୍ଞାନ କୌଶଳ ପ୍ରୟୋଗ ଦ୍ୱାରା ଓପିଟିସିଏଲ ଗତ ୨ ବର୍ଷ ଧରି ଶତକଡ଼ା ୯୯.୯୯ ଭାଗ ସିଷ୍ଟମ୍ ଉପଲବ୍ଧି କରାଇଆସୁଛି ।

୯୨. ଶକ୍ତି ସଂକଟ ଦୂର କରିବା ପାଇଁ ମୋ' ସରକାର ଏକ ସୁନ୍ଦର ବ୍ୟବସ୍ଥା ମାଧ୍ୟମରେ ବଳକା ମାସର ଗଚ୍ଛିତ ଶକ୍ତିକୁ ପାୱାର ବ୍ୟାଙ୍କିଙ୍ଗ ମାଧ୍ୟମରେ ଗ୍ରୀଷ୍ମକାଳରେ ବ୍ୟବହାର କରିବା ପାଇଁ ବ୍ୟବସ୍ଥା କରିଛନ୍ତି ।

୯୩. 'ଆମ ଘରେ ଏଲ୍‌ଇଡ଼ି ଯୋଜନା' ମାଧ୍ୟମରେ ମୋ' ସରକାର ରାଜ୍ୟବ୍ୟାପୀ ସିଙ୍ଗଲ ଫେଜ୍ ଘରୋଇ ଖାଉଟିମାନଙ୍କୁ ବିନାମୂଲ୍ୟରେ ୪ଟି ଏଲ.ଇ.ଡ଼ି. ବଲ୍‌ବ ପ୍ରଦାନ କରି ଶକ୍ତି ସଂରକ୍ଷଣ ଏବଂ ଶକ୍ତି ଚାହିଦା ପରିଚାଳନା କ୍ଷେତ୍ରରେ ଏକ ଫଳପ୍ରଦ ପଦକ୍ଷେପ ନେଇଛନ୍ତି ।

୯୪. ନିବେଶକଙ୍କୁ ସୁହାଇଲା ଭଳି ପରିବେଶ ସୃଷ୍ଟି ନୀତି, ଶାସନରେ ସ୍ଥିରତା, କଞ୍ଚାମାଲ୍‌ର ଉପଲବ୍ଧି, ଦକ୍ଷ ମାନବ ସମ୍ବଳ ଏବଂ ସର୍ବୋପରି ଶିଳ୍ପ ଭିତ୍ତିଭୂମିର ବହୁଳ ସୁବିଧା ଯୋଗୁଁ ଆମର ରାଜ୍ୟ ପୁଞ୍ଜିନିବେଶ ପାଇଁ ସୁବିଧାଜନକ ଲକ୍ଷ୍ୟସ୍ଥଳ ହୋଇପାରିଛି । ମୋ' ସରକାର ନିବେଶକମାନଙ୍କୁ ଆକର୍ଷିତ କରିବା ପାଇଁ ରାଜ୍ୟରେ ଶିଳ୍ପାନୁକୂଳ କାର୍ଯ୍ୟପଦ୍ଧତି ଅନୁସରଣ, ଲ୍ୟାଣ୍ଡ ବ୍ୟାଙ୍କ୍ ସୃଷ୍ଟି ଏବଂ ଶିଳ୍ପ ଭିତ୍ତିଭୂମିର ବିକାଶ ଏବଂ ନିବେଶ ନୀତି ନିୟମକୁ ସରଳୀକୃତ କରିଛନ୍ତି ।

୯୫. ବ୍ୟବସାୟିକ ସୁବିଧା ପାଇଁ ମୋ'ସରକାର ବିଭିନ୍ନ ପ୍ରକାର ବୈଷୟିକ ବ୍ୟବସାୟିକ ସଂସ୍କାର ଉପରେ ଗୁରୁତ୍ୱ ଦେଉଛନ୍ତି । ଅନ୍‌ଲାଇନ୍ ପୋର୍ଟାଲ ଯଥା-ନିବେଶକମାନଙ୍କୁ ସୁବିଧା ଯୋଗାଇ ଦେବା ପାଇଁ ଓଡ଼ିଶା ସରକାର ସିଙ୍ଗଲ୍-ୱିଣ୍ଡୋ ଏବଂ 'ଗୋ ସ୍ୱିଫ୍ଟ୍' ଟ୍ରାକିଂ ବ୍ୟବସ୍ଥା, ଲାଇସେନ୍ସପ୍ରାପ୍ତ ସଂସ୍ଥାମାନଙ୍କର ତଦାରଖ ପାଇଁ ଓଡ଼ିଶା ସରକାର ପରିଚାଳନାଗତ ବ୍ୟବସ୍ଥାକୁ ସମନ୍ୱିତ କରିବା ପାଇଁ 'ଗୋ ସ୍ମାଇଲ୍', ଜମିର ବ୍ୟବହାର ଓ ତତ୍‌ସମ୍ପର୍କିତ ସେବା ପାଇଁ 'ଗୋ ପ୍ଲସ୍' ଓଡ଼ିଶା ସରକାର ଶିଳ୍ପାନୁଷ୍ଠାନର ସାମାଜିକ-ଦାୟିତ୍ୱବୋଧ ଉପଲବ୍ଧ କରାଇବା ପାଇଁ ପ୍ରଶାସନିକ ଓ ଉତ୍ତରଦାୟୀ ପରିଚାଳନା ବ୍ୟବସ୍ଥା 'ଗୋ କେୟାର' ବିକଶିତ କରାଯାଇଛି ।

୯୬. ମୋ' ସରକାର ନିବେଶକ ସମ୍ମିଳନୀ, ରୋଡ୍ ସୋ ଉପରେ ଗୁରୁତ୍ୱ ଦେବା ସହିତ ବିଭିନ୍ନ ପ୍ରକାର ଜାତୀୟ ଓ ଅନ୍ତର୍ଜାତୀୟସ୍ତରର ରୋଡ୍ ସୋ ଏବଂ ନିବେଶକମାନଙ୍କ ବୈଠକରେ ଅଂଶ ଗ୍ରହଣ କରି ନିବେଶକମାନଙ୍କୁ ରାଜ୍ୟରେ ପୁଞ୍ଜି ନିବେଶ ପାଇଁ ଆକର୍ଷିତ କରୁଛନ୍ତି । ଭୁବନେଶ୍ୱରରେ ଅନୁଷ୍ଠିତ ମେକ୍-ଇନ୍-ଓଡ଼ିଶା କନ୍‌କ୍ଲେଭ-୨୦୧୮ରେ ଦେଶର ପ୍ରମୁଖ ଶିଳ୍ପ ଅଧିନାୟକମାନଙ୍କର ଅଂଶଗ୍ରହଣ ସମାବେଶକୁ ଅଭୁତପୂର୍ବ ସଫଳତା ଆଣିଦେଇଥିଲା । ଏହି ଦ୍ୱିବାର୍ଷିକ ସମ୍ମିଳନୀ ଶିଳ୍ପର ପ୍ରମୁଖ କ୍ଷେତ୍ର ଓ ଉତ୍ପାଦକ କ୍ଷେତ୍ରରେ ପୁଞ୍ଜିନିବେଶ ସୁବିଧା ପାଇଁ ନୀତି ନିର୍ଦ୍ଧାରଣ ଓ ନିୟାମକ ପାଇଁ ପରିବେଶ ସୃଷ୍ଟି କରିବା ଦିଗରେ ସଫଳ ହୋଇପାରିଛି । ଏହି ମହାକୁମ୍ଭ ଦ୍ୱାରା ରାଜ୍ୟରେ ୧୫ଟି କ୍ଷେତ୍ରରେ ୪.୨୦ ଲକ୍ଷ କୋଟିର ପୁଞ୍ଜିନିବେଶ ପ୍ରତିଶ୍ରୁତି ମିଳିଛି ଓ ଏହା ୫.୯୧ ଲକ୍ଷ ଲୋକଙ୍କୁ ନିଯୁକ୍ତି ସୁଯୋଗ ପ୍ରଦାନ କରିବ । ଏଥିରେ ଜାପାନ ଅଂଶୀଦାରୀ ରାଷ୍ଟ୍ର ରହିଥିଲା ଏବଂ ଏହି ସମାବେଶରେ ଦେଶ ବିଦେଶରୁ ୫ ହଜାରରୁ ଉର୍ଦ୍ଧ୍ୱ ଶିଳ୍ପ ଅଧିନାୟକ, ପ୍ରତିନିଧିମାନେ ଓ ୩୧ ହଜାର ଜନସାଧାରଣ ଯୋଗଦେଇ ଏହାର ଆଭିମୁଖ୍ୟ ସମ୍ପର୍କରେ ଅବଗତ ହୋଇଥିଲେ ।

୯୭. ଷ୍ଟାର୍ଟଅପ୍ ଓଡ଼ିଶା କାର୍ଯ୍ୟକ୍ରମ ପାଇଁ ମୋ' ସରକାର ଷ୍ଟାର୍ଟଅପ୍ ଓଡ଼ିଶା ନୀତି ଏବଂ ଷ୍ଟାର୍ଟଅପ୍ ଓଡ଼ିଶା ପୋର୍ଟାଲ୍ ଆରମ୍ଭ କରିଛନ୍ତି । ବର୍ତ୍ତମାନ ସୁଦ୍ଧା ୩୩୪ଟି ଷ୍ଟାର୍ଟଅପ୍ସ ପଞ୍ଜିକୃତ ହୋଇଛି । ରାଜ୍ୟଗୁଡିକ ମଧ୍ୟରେ ଷ୍ଟାର୍ଟଅପ୍ ର୍ୟାଂକି-୨୦୧୮ରେ ଓଡ଼ିଶା ଶ୍ରେଷ୍ଠ ପ୍ରଦର୍ଶନକାରୀରୂପେ ସମ୍ମାନିତ ହୋଇଛି ।

୯୮. ସମୁଦାୟ ୧୭,୮୬୩ କୋଟି ଟଙ୍କା ପୁଞ୍ଜିନିବେଶ ସହ ୩,୬୭,୦୭୭ ଟି ଅଣୁ, କ୍ଷୁଦ୍ର ଓ ମଧ୍ୟମ ଉଦ୍ୟୋଗ ପ୍ରତିଷ୍ଠା କରାଯାଇ ୨୦୧୮ ମସିହା ଡିସେମ୍ବର ମାସ ସୁଦ୍ଧା ୧୪.୬୧ ଲକ୍ଷ ବ୍ୟକ୍ତିଙ୍କ ନିମନ୍ତେ ନିଯୁକ୍ତି ସୁଯୋଗ ସୃଷ୍ଟି କରାଯାଇପାରିଛି ।

୯୯. ରାଜ୍ୟରେ ରପ୍ତାନି କାରବାର ୨୦୧୭-୧୮ ମସିହାରେ ୫୨,୬୭୭ କୋଟି ଟଙ୍କାକୁ ବୃଦ୍ଧି ପାଇଛି, ଯାହାକି ୨୦୧୬-୧୭ ବର୍ଷରେ ୪୦,୮୭୦ କୋଟି ଟଙ୍କା ଥିଲା । ଦେଶର ସବୁ ରାଜ୍ୟମାନଙ୍କ ମଧ୍ୟରେ ରପ୍ତାନି କ୍ଷେତ୍ରରେ ଓଡ଼ିଶା ୧୧୪ ପ୍ରତିଶତର ସର୍ବାଧିକ ଅଭିବୃଦ୍ଧି ହାର ହାସଲ କରି ୨୦୧୬-୧୭ ବର୍ଷରେ ଓଡ଼ିଶା 'ଚମ୍ପିଅନ୍ ରାଜ୍ୟ' ଭାବେ ସ୍ୱୀକୃତି ଲାଭ କରିଛି ।

୧୦୦. ମୋ' ସରକାର ନବୀକୃତ ମାନବ ସମ୍ବଳ ବିକାଶ ଓ ବିଶ୍ୱର ଶ୍ରେଷ୍ଠ ଏବଂ ଅତୁଳନୀୟ ଦକ୍ଷ ଶକ୍ତି ସୃଷ୍ଟି ନିମନ୍ତେ ବୈଷୟିକ ଶିକ୍ଷାର ସଂପ୍ରସାରଣ ଓ ବିକାଶ ତଥା ଯୁବକମାନଙ୍କ ନିମନ୍ତେ ଦକ୍ଷତା ବିକାଶ ଉପରେ ଅଗ୍ରାଧିକାର ଦେଉଛନ୍ତି ।

୧୦୧. ମୋ' ସରକାର, ସିଙ୍ଗାପୁରସ୍ଥିତ ଆଇଟିଇଏସ୍ ସହିତ ବୈଷୟିକ ସହଯୋଗରେ ଭୁବନେଶ୍ୱରଠାରେ ଏକ ବିଶ୍ୱ ଦକ୍ଷତା କେନ୍ଦ୍ର ପ୍ରତିଷ୍ଠା କରିବେ । ଏହି କେନ୍ଦ୍ର ଆମ ରାଜ୍ୟର ଯୁବକମାନଙ୍କୁ ବିଶ୍ୱସ୍ତରୀୟ ବୈଷୟିକ ଓ ଧନ୍ଦାମୂଳକ ତାଲିମ ପ୍ରଦାନ କରିବ, ଯାହାଦ୍ୱାରା ସେମାନେ ଜାତୀୟ ଓ ଅନ୍ତର୍ଜାତୀୟ ସ୍ତରରେ ଶିଳ୍ପ ଓ ବଜାର ନିମନ୍ତେ ନିଜକୁ ପ୍ରସ୍ତୁତ କରିପାରିବେ । ଏହି ବିଶ୍ୱ ଦକ୍ଷତା କେନ୍ଦ୍ରରେ ମୁଖ୍ୟତଃ ଉନ୍ନତ ତଥା ଭବିଷ୍ୟତ ପାଇଁ ଦରକାରୀ ଟ୍ରେଡ୍ ଉପରେ ତାଲିମ ପ୍ରଦାନ କରାଯିବ ।

୧୦୨. ମୋ' ସରକାର, ସରକାରୀ ବୈଷୟିକ ସଂସ୍ଥାରେ ଆଧୁନିକ ଗବେଷଣାଗାର ପ୍ରତିଷ୍ଠା ଓ ଅଗ୍ରଣୀ ଶିଳ୍ପ ସଂସ୍ଥାଗୁଡ଼ିକରେ ଛାତ୍ରଛାତ୍ରୀଙ୍କ ନିଯୁକ୍ତିକୁ ପ୍ରୋତ୍ସାହିତ କରିବା ନିମନ୍ତେ ବିଭିନ୍ନ ଅଗ୍ରଣୀ ଅନୁଷ୍ଠାନ ସହିତ ବୁଝାମଣାପତ୍ର ସ୍ୱାକ୍ଷର କରିଛନ୍ତି ।

୧୦୩. ଗ୍ରାମାଞ୍ଚଳର ଯୁବକମାନଙ୍କ ପାଇଁ ନିଯୁକ୍ତି ସୁଯୋଗ ସୃଷ୍ଟି ନିମନ୍ତେ ଓ ଦକ୍ଷତା ତାଲିମ ହାର ବୃଦ୍ଧି ନିମନ୍ତେ ସମସ୍ତ ଜିଲ୍ଲାରେ ଗୋଟିଏ ଲେଖାଏଁ ଦକ୍ଷତା ବିକାଶ କେନ୍ଦ୍ର ଓ ପ୍ରତ୍ୟେକ ସରକାରୀ ଆଇଟିଆଇ ଓ ପଲିଟେକ୍‌ନିକ୍ ଶିକ୍ଷାନୁଷ୍ଠାନଗୁଡ଼ିକ କ୍ୟାମ୍ପସ୍‌ରେ ୩୮ଟି ଦକ୍ଷତା ବିକାଶ ସଂପ୍ରସାରଣ କେନ୍ଦ୍ର ପ୍ରତିଷ୍ଠା କରାଯାଇଛି ।

୧୦୪. ମୋ' ସରକାର, ସମଗ୍ର ରାଜ୍ୟର ବିଭିନ୍ନ ବୈଷୟିକ ଶିକ୍ଷାନୁଷ୍ଠାନରୁ ପ୍ରାୟ ୬ ହଜାରରୁ ଉର୍ଦ୍ଧ୍ୱ ଛାତ୍ରଛାତ୍ରୀଙ୍କୁ ନେଇ ରାଜ୍ୟସ୍ତରୀୟ ଦକ୍ଷତା ପ୍ରତିଯୋଗିତାର ଆୟୋଜନ କରିବା ସହିତ ଛାତ୍ରଛାତ୍ରୀମାନଙ୍କର ଏଭଳି ପ୍ରତିଯୋଗିତାରେ ଅଂଶଗ୍ରହଣକୁ ଅଗ୍ରାଧିକାର ଦେଇଛନ୍ତି । ଜାତୀୟ ଦକ୍ଷତା ପ୍ରତିଯୋଗିତାର ୨୧ଟି ଦକ୍ଷତା ଟ୍ରେଡ୍‌ରେ ଓଡ଼ିଶା ଦକ୍ଷତା ପ୍ରତିଯୋଗିତାର ବିଜେତାମାନେ ଅଂଶ ଗ୍ରହଣ କରିଥିଲେ । ଆମର ପ୍ରତିଯୋଗୀମାନେ ସର୍ବଶ୍ରେଷ୍ଠ ଦକ୍ଷତା ପ୍ରଦର୍ଶନ କରି ୪ଟି ସ୍ୱର୍ଣ୍ଣ, ୯ଟି ରୌପ୍ୟ, ୬ଟି ବ୍ରୋଞ୍ଜ ଓ ଉତ୍ତମ ଦକ୍ଷତା ପ୍ରଦର୍ଶନ କରିଥିବାରୁ ୩ଜଣ ପ୍ରତିଯୋଗୀଙ୍କୁ ମେଡ଼ାଲ ମିଳିଥିଲା । ସର୍ବଭାରତୀୟ ସ୍ତରରେ ଓଡ଼ିଶା ମେଡ଼ାଲ ଟ୍ୟାଲିରେ ଦ୍ୱିତୀୟ ସ୍ଥାନ ଅଧିକାର କରିଛି, ଯାହାକି ବାସ୍ତବରେ ଆମ ଯୁବଗୋଷ୍ଠୀଙ୍କ ପାଇଁ ଏକ ଉଲ୍ଲେଖନୀୟ ସଫଳତା ଭାବେ ପ୍ରତିପାଦିତ ହୋଇପାରିଛି ।

୧୦୫. ଆଇଟିଆଇ କଟକଠାରେ ପ୍ରଥମ ସ୍କିଲ୍ ମ୍ୟୁଜିୟମ୍‌କୁ ଯୁବଗୋଷ୍ଠୀଙ୍କ ଦକ୍ଷତା ବିକାଶ, ଯୁବକଯୁବତୀ ଏବଂ ଆଇଟିଆଇ ପ୍ରଶିକ୍ଷାର୍ଥୀ, ବିଦ୍ୟାଳୟ ଛାତ୍ରଛାତ୍ରୀ ଏବଂ ଅନ୍ୟମାନଙ୍କ ମଧ୍ୟରେ ଡିଜାଇନ୍ ଚିନ୍ତାଧାରା ସୃଷ୍ଟି କରିବା ନିମନ୍ତେ ଉତ୍ସର୍ଗ କରାଯାଇଛି ।

୧୦୬. ରାଜ୍ୟରେ ବିଜ୍ଞାନ ଏବଂ କାରିଗରୀକୌଶଳର ଉନ୍ନତି ଏବଂ ବିଜ୍ଞାନ ଶିକ୍ଷା, ଗବେଷଣା ଓ ଯୋଗଯୋଗର ଲୋକପ୍ରିୟତା ପାଇଁ ମୋ' ସରକାର ବିଭିନ୍ନ ଅଭିନବ କାର୍ଯ୍ୟକ୍ରମ କାର୍ଯ୍ୟକାରୀ କରିଛନ୍ତି ।

୧୦୭. ନୂତନ ଜୈବ ପ୍ରଯୁକ୍ତି ନୀତି-୨୦୧୮, ଜୈବପ୍ରଯୁକ୍ତି କ୍ଷେତ୍ରରେ ଶିକ୍ଷା, ଗବେଷଣା ଓ ନୂତନ ଚିନ୍ତାଧାରା ନିମନ୍ତେ ପ୍ରୋତ୍ସାହନ ଦେଇଛି ।

୧୦୮. ବୁର୍ଲାଠାରେ ନୂତନ ପ୍ଲାନେଟୋରିୟମ କାର୍ଯ୍ୟକ୍ଷମ ହୋଇଛି ଏବଂ ରାୟଗଡ଼ା, ବାରିପଦା ତଥା ଗୋପାଳପୁରଠାରେ ଆଉ ତିନୋଟି ପ୍ଲାନେଟୋରିୟମ ପ୍ରତିଷ୍ଠା କରାଯିବ ।

୧୦୯. ମୋ' ସରକାର ରାଜ୍ୟର ସବୁ ଜିଲ୍ଲାରେ ବିଜ୍ଞାନ କେନ୍ଦ୍ର/ପାର୍କ ସ୍ଥାପନ କରିବା ପାଇଁ ନିଷ୍ପତ୍ତି ନେଇଛନ୍ତି ।

୧୧୦. ଜଳସେଚନ ଏବଂ ପାନୀୟ ଜଳ ଯୋଗାଣ ପାଇଁ ଓଡ଼ିଶା ଅକ୍ଷୟ ଶକ୍ତି ବିକାଶ ସଂସ୍ଥା ୧୮୬୬ଟି ସୌରଚାଳିତ ଏସ୍.ପି.ଭି. ପମ୍ପ ସିଷ୍ଟମ ଏବଂ ୨୯୮ ସୌର ଚାଳିତ ପମ୍ପ ସ୍ଥାପନ କରିଛି । ବିକେନ୍ଦ୍ରୀକୃତ ବଣ୍ଟନ ବ୍ୟବସ୍ଥାରେ ୨୦୧୮-୧୯ରେ ୩୯୮ଟି ଗ୍ରାମର ୧୪,୫୯୩ ପରିବାରକୁ ସୌରଶକ୍ତି ଦ୍ୱାରା ବିଦ୍ୟୁତ ସଂଯୋଗ କରାଯାଇଛି ।

୧୧୧. ସବୁ ବିଭାଗ ଓ ସଂସ୍ଥାମାନଙ୍କ ବ୍ୟବହାର ପାଇଁ ଓଡ଼ିଆ ଜିଓ ସ୍ପାଟିଆଲ ଡ଼ାଟା ଭିତ୍ତିଭୂମି କାର୍ଯ୍ୟକ୍ଷମ କରାଯାଇଛି । ଶିଳ୍ପ ବିକାଶ ନିମନ୍ତେ ୧.୧୯ ଲକ୍ଷ ଏକର ଲ୍ୟାଣ୍ଡ ବ୍ୟାଙ୍କ୍ ପାଇଁ ORSAC ୱେବ୍ ସେବା ଯୋଗାଇ ଦେଇଛି । ଜଙ୍ଗଲ ୱାର୍କିଂ ପ୍ଲାନ ପ୍ରସ୍ତୁତି ପାଇଁ ୩୪ଟି ବନଖଣ୍ଡର ଜିଓ ଡ଼ାଟା ବେସ୍ ପ୍ରସ୍ତୁତ ହୋଇ ତାଲିକା କାର୍ଯ୍ୟ ଚାଲୁ ରହିଛି ।

୧୧୨. ଉତ୍ତମ ଓ ଫଳପ୍ରଦ ପ୍ରଶାସନ ପାଇଁ (OSWAN)ର ବ୍ୟବହାର କରି ୩୧୪ ବ୍ଲକ୍‌ରେ ଭିଡ଼ିଓ କନ୍‌ଫରେନ୍‌ସିଂ ସୁବିଧାର ଦୃଢ଼ୀକରଣ କରାଯାଇଛି । ରାଜ୍ୟ ସଚିବାଳୟରେ ଏକ ଅତ୍ୟାଧୁନିକ ଭିଡ଼ିଓ କେନ୍ଦ୍ର (ହବ୍)ର ସ୍ଥାପନା କରାଯାଇଛି ।

୧୧୩. ସରକାରୀ ସ୍ତରରେ ଦକ୍ଷତା ବୃଦ୍ଧି ଓ ସ୍ୱଚ୍ଛତା ଆଣିବା ଲକ୍ଷ୍ୟ ନେଇ ମୋ' ସରକାର ୨୦୦୯-୧୦ ବର୍ଷରେ ରାଜ୍ୟ ସଚିବାଳୟରେ (OSWAS) ନଭେମ୍ବର ୨୦୧୮ରେ ସମସ୍ତ ବିଭାଗ ତଥା ତିନୋଟି ନିର୍ଦ୍ଦେଶାଳୟରେ ବୈଷୟିକ ଆଧୁନିକୀକରଣକୁ ଦୃଷ୍ଟିରେ ରଖି ଉତ୍ତମ ନିରାପତ୍ତା ବୈଶିଷ୍ଟ୍ୟଯୁକ୍ତ ଏକ ନୂତନ ପ୍ରଯୁକ୍ତିସମ୍ମତ ଏବଂ ବ୍ୟବହାର ଅନୁକୂଳ ସଂସ୍କରଣ ଆରମ୍ଭ କରାଯାଇଛି ।

୧୧୪. 'ବିଜୁ ଗାଁ ଗାଡ଼ି' ଯୋଜନା ଅଧୀନରେ ସାଧାରଣ ପରିବହନ ବ୍ୟବସ୍ଥାକୁ ଦୁର୍ଗମ ଏବଂ ଅସଂଯୁକ୍ତ ଗ୍ରାମପଞ୍ଚାୟତଗୁଡ଼ିକୁ ସଂପ୍ରସାରିତ କରାଯାଇଛି । ୫୫୬ଟି ବିଜୁ ଗାଁ ଗାଡ଼ି ଓ ସାଧାରଣ ପରିବହନ ବସ୍ ଏବେ ୬,୭୪୨ଟି ଗ୍ରାମପଞ୍ଚାୟତକୁ ସଂଯୋଗ କରୁଛନ୍ତି ।

୧୧୫. ମୋ' ସରକାର ବଲାଙ୍ଗୀର, ଜୟପୁର, ମୋଟୁ, ଅନୁଗୋଳ ଓ କଟକରେ ବସ୍‌ଷ୍ଟାଣ୍ଡର ପୁନରୁଦ୍ଧାର କରିଛନ୍ତି । ସମୁନ୍ନତ ଯାତ୍ରୀ ସୁବିଧା ଯୋଗାଇଦେବା ଉଦ୍ଦେଶ୍ୟରେ ରାଜ୍ୟର ଅନେକ ସ୍ଥାନରେ ବସ୍‌ଷ୍ଟାଣ୍ଡଗୁଡ଼ିକର ଉନ୍ନତି କରାଯାଉଛି ।

୧୧୬. ମୋ' ସରକାର ଜିଲ୍ଲା ସଦରମହକୁମା ଓ ଭୁବନେଶ୍ୱର ମଧ୍ୟରେ ବସ୍ ସେବା ନିମନ୍ତେ 'ରାଜଧାନୀ ଏକ୍ସପ୍ରେସ୍' ଯୋଜନାରେ ୨୩ଟି ବାତାନୁକୂଳ ଅତ୍ୟାଧୁନିକ ବସ୍ ପ୍ରଚଳନ କରିଛନ୍ତି ।

୧୧୭. ଖୋର୍ଦ୍ଧାରୋଡ଼-ବଲାଙ୍ଗୀର ନୂଆ ବ୍ରଡ୍‌ଗଜ୍ ରେଳ ସଂଯୋଗୀକରଣ ପ୍ରକଳ୍ପର ବଲାଙ୍ଗୀର-ବିଚୁପାଲି ପର୍ଯ୍ୟନ୍ତ ୧୬ କିଲୋମିଟର ଦୀର୍ଘ ରେଳପଥ ଚଳିତ ବର୍ଷ ଜାନୁଆରୀ ୧୫ଠାରୁ ଆରମ୍ଭ ହୋଇଛି । ନିର୍ମାଣ ବ୍ୟୟର ୨୫ ପ୍ରତିଶତ ପ୍ରଦାନ କରିବା ଓ ପ୍ରକଳ୍ପ ନିମନ୍ତେ ଆବଶ୍ୟକୀୟ ଜମି ଯୋଗାଇ ଦେବା ପାଇଁ ସମ୍ମତ ମୋ' ସରକାରଙ୍କ ଲଗାତାର ପ୍ରଚେଷ୍ଟା ଓ ପ୍ରତିବଦ୍ଧତା ହେତୁ ଗତ ୨୦୧୮ ଫେବୃଆରୀ ୨୮ ତାରିଖରେ କ୍ୟାବିନେଟ୍ କମିଟି ଜୟପୁର-ମାଲକାନଗିରି (୧୩୦ କିଲୋମିଟର ଦୀର୍ଘ) ନୂତନ ରେଳପଥ ନିର୍ମାଣ ପ୍ରକଳ୍ପକୁ ମଞ୍ଜୁରୀ ଦେଇଛି ।

୧୧୮. ନର୍ଲା ରେଳଷ୍ଟେସନଠାରୁ ଇଲେକ୍ଟ୍ରିକ୍ ଲୋକୋମୋଟିଭ୍ ପିଓଏଚ୍ ୱାର୍କସପ୍ ପ୍ରତିଷ୍ଠା ନିମନ୍ତେ ପ୍ରସ୍ତାବିତ ସ୍ଥାନ ପର୍ଯ୍ୟନ୍ତ ସଂଯୋଗୀକରଣ ପାଇଁ ବିନା ମୂଲ୍ୟରେ ଜମି ଯୋଗାଇଦେବାକୁ ମଞ୍ଜୁରୀ ଦିଆଯାଇଛି । ଏହା ଫଳରେ କଳାହାଣ୍ଡି ଜିଲ୍ଲାରେ ଏକ ରେଳଭିତ୍ତିକ ଶିଳ୍ପ ପ୍ରତିଷ୍ଠା ହୋଇ ଜିଲ୍ଲାର ବିକାଶ ତ୍ୱରାନ୍ୱିତ ହେବ ।

୧୧୯. ମୋ' ସରକାରର ଅବିରତ ଉଦ୍ୟମ ବଳରେ ରାଜଧାନୀ ଏକ୍ସପ୍ରେସ୍ ସମ୍ବଲପୁର ଦେଇ ଯାତାୟାତ ଆରମ୍ଭ କରିଛି ।

୧୨୦. ବେସରକାରୀ-ଘରୋଇ ସହଭାଗିତାରେ ୧୪ଟି ବନ୍ଦରର ଉନ୍ନତିକରଣ ନିମନ୍ତେ ରାଜ୍ୟରେ ସମ୍ଭାବ୍ୟ ସ୍ଥାନଗୁଡ଼ିକୁ ଚିହ୍ନଟ କରାଯାଇଛି । ଧାମରା ଓ ଗୋପାଳପୁରରେ ଦୁଇଟି ବନ୍ଦର କାର୍ଯ୍ୟକ୍ଷମ ହୋଇଛି । ଧାମରା ବନ୍ଦରର ଦ୍ୱିତୀୟ ପର୍ଯ୍ୟାୟ ସମ୍ପ୍ରସାରଣ ଓ ଗୋପାଳପୁର ବନ୍ଦରର ପୁନଃ ସଂପ୍ରସାରଣ କାର୍ଯ୍ୟ ହାତକୁ ନିଆଯାଇଛି ।

୧୨୧. ପୁନଶ୍ଚ ସୁବର୍ଣ୍ଣରେଖା ବନ୍ଦରର ଉନ୍ନତିକରଣ ନିମନ୍ତେ ୬୯୨.୬୮ ଏକର ପରିମାଣର ଜମି ହସ୍ତାନ୍ତର କରାଯାଇଛି । ୨୧୧୦ କୋଟି ଟଙ୍କାର ବ୍ୟୟ ଅଟକଳ ସହିତ କେନ୍ଦ୍ରାପଡ଼ା ଜିଲ୍ଲାର ନଦୀପାର୍ଶ୍ୱସ୍ଥ ବନ୍ଦରର ଉନ୍ନତିକରଣ କାର୍ଯ୍ୟ ହାତକୁ ନିଆଯାଇଛି ।

୧୨୨. ମୋ' ସରକାର ଖଣିଜ-ପ୍ରାଶାସନିକ କ୍ଷେତ୍ରରେ ସ୍ୱଚ୍ଛତା ଆଣିବା ଲକ୍ଷ୍ୟରେ ଆଇ-ଥ୍ରି ଏମ୍.ଏସ୍ (ଇଣ୍ଟିଗ୍ରେଟେଡ୍ ମାଇନ୍‌ସ ଆଣ୍ଡ ମିନେରାଲ ମ୍ୟାନେଜମେଣ୍ଟ ସିଷ୍ଟମ) ପ୍ରକଳ୍ପ କାର୍ଯ୍ୟକାରୀ କରିଛନ୍ତି । ମୋବାଇଲ ଆପ୍ଲିକେସନ ଏନ୍.ଏମ୍.ଏସ୍ (ନ୍ୟାସନାଲ ମିନେରାଲ ଷ୍ଟାଟିଷ୍ଟିକ୍ସ) ବ୍ୟବସ୍ଥା ସହିତ ନିର୍ଦ୍ଧାରିତ ସମୟ ମଧ୍ୟରେ ଖଣିଜ ଉତ୍ତୋଳନ, ପ୍ରେରଣ, ବିକ୍ରୟ ଉଦ୍ଦେଶ୍ୟରେ ଏଥିରେ ଇ-ପରମିଟ୍, ଇ-ପାଶ୍, ଇ-ଫାଇଲିଂ, ଇ-ପେମେଣ୍ଟ ବ୍ୟବସ୍ଥା ରହିଛି । ଏହି ସୂଚନା ପ୍ରଯୁକ୍ତିର ପ୍ରୟୋଗ କେନ୍ଦ୍ର ସରକାରଙ୍କ ଦ୍ୱାରା ଆଦୃତ ହେବା ସଙ୍ଗେ ସଙ୍ଗେ ପ୍ରଶଂସିତ ହୋଇଛି ।

୧୨୩. ଖଣିଜ ଦ୍ରବ୍ୟ ଉତ୍ତୋଳନ ପ୍ରକ୍ରିୟାକୁ ତ୍ୱରାନ୍ୱିତ କରିବା ପାଇଁ ଓଡ଼ିଶା ମିନେରାଲ ଏକ୍ସପ୍ଲୋରେସନ କର୍ପୋରେସନ ଲିମିଟେଡ୍‌କୁ ଉତ୍ତୋଳକ ସଂସ୍ଥା ଭାବେ କାର୍ଯ୍ୟ ନ୍ୟସ୍ତ କରାଯାଇଛି । ଉତ୍ତୋଳନ ପ୍ରକ୍ରିୟାକୁ ଆବଶ୍ୟକ ମୁତାବକ ବୃଦ୍ଧି ଏବଂ ଅଧିକ ବ୍ଲକରେ ନିଲାମି ସୁବିଧା ଉପଲବ୍ଧ ହେବା ଲକ୍ଷ୍ୟରେ ଏହି କର୍ପୋରେସନକୁ ୧୬ଟି ବ୍ଲକ ଆବଣ୍ଟନ କରାଯାଇଛି । ଗତବର୍ଷ

ଡ଼ିସେମ୍ବର ୨୦୧୭ ତୁଳନାରେ ଡ଼ିସେମ୍ବର ୨୦୧୮ ସୁଦ୍ଧା ଖଣିଜ ଦ୍ରବ୍ୟ କ୍ଷେତ୍ରରେ ୭୦%ରୁ ଅଧିକ ରାଜସ୍ୱ ରୟାଲଟି ବୃଦ୍ଧି ଘଟିଛି ।

୧୨୪. ନୂତନ ଭାବରେ ଗୃହୀତ ପର୍ଯ୍ୟଟନ ନୀତି–୨୦୧୮ ମାଧ୍ୟମରେ ମୋ' ସରକାର ଏକ ଗତିଶୀଳ ଓ ଦୀର୍ଘମିଆଦୀ ଦୃଷ୍ଟିଭଙ୍ଗୀ ନେଇ ଓଡ଼ିଶାକୁ ପର୍ଯ୍ୟଟକମାନଙ୍କର ପ୍ରମୁଖ ଗନ୍ତବ୍ୟସ୍ଥଳ ଭାବରେ ସମୃଦ୍ଧ କରିବା ଏବଂ ଜାତୀୟ ତଥା ଅନ୍ତର୍ଜାତୀୟ ପର୍ଯ୍ୟଟନ ମାନଚିତ୍ରରେ ଓଡ଼ିଶାକୁ ପ୍ରମୁଖ ସ୍ଥାନ ପ୍ରଦାନ କରିବାର ଆଭିମୁଖ୍ୟ ଗ୍ରହଣ କରିଛନ୍ତି ।

୧୨୫. ମୋ' ସରକାରଙ୍କ ଦ୍ୱାରା ୨୦୧୬–୧୭ ବର୍ଷରେ ଆରମ୍ଭ କରାଯାଇଥିବା 'ବରିଷ୍ଠ ନାଗରିକ ତୀର୍ଥଯାତ୍ରା ଯୋଜନା'୬୦ରୁ ୭୫ ବର୍ଷ ମଧ୍ୟରେ ଥିବା ରାଜ୍ୟର ଗରିବ ଓ ଅବହେଳିତ ବରିଷ୍ଠ ନାଗରିକମାନଙ୍କୁ ସେମାନଙ୍କ ଧାର୍ମିକ ଆକାଂକ୍ଷା ପୂରଣ ନିମନ୍ତେ ତୀର୍ଥ ଯାତ୍ରା ସୁଯୋଗ ଦେବା ପାଇଁ ଉଦ୍ଦିଷ୍ଟ । ସବୁ ଧର୍ମ ଓ ବିଶ୍ୱାସର ଲୋକମାନେ ଏହି ଯୋଜନାରେ ଉପକୃତ ହେବେ । ବିଗତ ଦୁଇବର୍ଷ ମଧ୍ୟରେ ୬ ହଜାର ବରିଷ୍ଠ ନାଗରିକ ବିଭିନ୍ନ ସ୍ଥାନକୁ ତୀର୍ଥଯାତ୍ରରେ ଯାଇଥିବାବେଳେ ୨୦୧୮–୧୯ ବର୍ଷରେ ଏହି ଯାତ୍ରା ସଂଖ୍ୟା ୬ କୁ ଏବଂ ହିତାଧିକାରୀ ସଂଖ୍ୟା ୬୦୦୦କୁ ବୃଦ୍ଧି କରାଯାଇଛି ।

୧୨୬. ମୋ' ସରକାର ରାଜ୍ୟର ପର୍ଯ୍ୟଟନ ସମ୍ବଳ ବାବଦରେ ବିଦେଶୀ ଟୁର୍ ଅପରେଟର୍‌ମାନଙ୍କୁ ଶିକ୍ଷିତ କରିବା ପାଇଁ ୨୦୧୮ ମସିହା ଅକ୍ଟୋବର ମାସରେ ଭୁବନେଶ୍ୱରଠାରେ ଓଡ଼ିଶା ଟ୍ରାଭେଲ ବଜାର ଆୟୋଜନ କରିଥିଲେ । ମୋ' ସରକାରଙ୍କ ଉଦ୍ୟମକ୍ରମେ ଏୟାର୍ ଏସିଆ ଭୁବନେଶ୍ୱରଠାରୁ ବ୍ୟାଙ୍କକ୍ ପର୍ଯ୍ୟନ୍ତ ଆନ୍ତର୍ଜାତିକ ବିମାନ ସେବା ଆରମ୍ଭ କରିଛି ।

୧୨୭. ବିଭିନ୍ନ ନାଗରିକକୈନ୍ଦ୍ରିକ ସେବାଗୁଡ଼ିକୁ ସ୍ୱଚ୍ଛତାର ସହିତ ଯୋଗାଇଦେବା ଉଦ୍ଦେଶ୍ୟରେ ମୋ' ସରକାର ପ୍ରଯୁକ୍ତି ବିଦ୍ୟାର ଯଥାର୍ଥ ବିନିଯୋଗ କରିଛନ୍ତି । ସବ୍‌ରେଜିଷ୍ଟ୍ରି କାର୍ଯ୍ୟାଳୟମାନଙ୍କରୁ ବିଭିନ୍ନ ଦଲିଲ୍ ଦସ୍ତାବିଜ, କବଲା ଓ ଜମିଜମା କାଗଜପତ୍ର ଇତ୍ୟାଦିର ପଞ୍ଜିକରଣ ଇଲେକ୍ଟ୍ରୋନିକ୍ ମାଧ୍ୟମରେ କରାଯିବା ପରେ ୨୦୧୮ ମସିହାରେ ରାଜ୍ୟର ସମସ୍ତ ତହସିଲରେ ମୋଟ ୫୨୨୬୭୦ଟି ଦାଖଲ ଖାରଜ ମାମଲା ଅନ୍‌ଲାଇନ୍‌ରେ ପଞ୍ଜିକୃତ ହୋଇପାରିଛି ଓ ଏଥିରୁ ୬୪ ପ୍ରତିଶତ ମାମଲାର ଅନ୍‌ଲାଇନ୍ ଫଇସଲା ସମ୍ପନ୍ନ ହୋଇଛି । ଜମିଜମା ସଂକ୍ରାନ୍ତୀୟ ନକ୍ସାଗୁଡ଼ିକୁ ଡ଼ିଜିଟାଲ ପଦ୍ଧତିରେ ସୁରକ୍ଷିତ ରଖାଯାଉଛି ଓ ଏସବୁ ଭୂଲେଖ ପୀଠିକାରେ ଉପଲବ୍ଧ ହେଉଛି । ଦାଖଲ ଖାରଜ ପରେ ନକ୍ସାଗୁଡ଼ିକ ଭୂଲେଖରେ ମଧ୍ୟ ସଂଶୋଧିତ ହୋଇପାରୁଛି । ଜମିମାଲିକମାନଙ୍କ ନିକଟକୁ ସ୍ୱତ୍ତ୍ୱାଧିକାର କାଗଜପତ୍ର ସ୍ପିଡ୍‌ପୋଷ୍ଟ ମାଧ୍ୟମରେ ପ୍ରେରଣ କରାଯାଉଛି । ୨୦୧୮ ମସିହାରେ କେସିଂଗା, ଜୁନାଗଡ଼ (କଳାହାଣ୍ଡି ଜିଲ୍ଲା), ଗଞ୍ଜାମ (ଗଞ୍ଜାମ ଜିଲ୍ଲା) ଓ ତରଭା (ସୁବର୍ଣ୍ଣପୁର ଜିଲ୍ଲା) ଠାରେ ନୂତନ ରେଜିଷ୍ଟ୍ରେସନ୍ କାର୍ଯ୍ୟାଳୟ ଖୋଲାଯାଇଛି ।

୧୨୮. ମୋ' ସରକାର ସବୁବେଳେ ବିଶ୍ୱ ପ୍ରସିଦ୍ଧ ଶ୍ରୀଜଗନ୍ନାଥ ମନ୍ଦିର, ପୁରୀର ସାମଗ୍ରିକ ବିକାଶ ପାଇଁ ପ୍ରତିଶ୍ରୁତିବଦ୍ଧ । ଶ୍ରୀମନ୍ଦିରର ସେବାୟତମାନଙ୍କ ସାମାଜିକ ନିରାପତ୍ତା, ସ୍ୱାସ୍ଥ୍ୟ, ଗୃହ ନିର୍ମାଣ ଓ ଶିକ୍ଷା ପାଇଁ ବିଭିନ୍ନ ଯୋଜନା କାର୍ଯ୍ୟକାରୀ କରାଯାଉଛି ।

୧୨୯. ବିଭିନ୍ନ ମାମଲାର ଶୀଘ୍ର ଓ ତ୍ୱରିତ ଫଇସଲା ପାଇଁ ମୋ' ସରକାର ରାଜ୍ୟରେ ୧୮ଟି ବିଭିନ୍ନ ପ୍ରକାର କୋର୍ଟ ପ୍ରତିଷ୍ଠା ପାଇଁ ୨୦୧୮ରେ ବିଜ୍ଞପ୍ତି ପ୍ରକାଶ କରିଛନ୍ତି ।

୧୩୦. ଗ୍ରାମାଞ୍ଚଳର ଲୋକମାନଙ୍କୁ ନ୍ୟାୟ ପ୍ରଦାନ ଲକ୍ଷ୍ୟରେ ମୋ' ସରକାର ରାଜ୍ୟର ଚିହ୍ନିତ ୭୦ଟି ବ୍ଲକ୍‌ର ୧୨୮୬ଟି ଗ୍ରାମପଞ୍ଚାୟତରେ 'ମଧୁବାବୁ ଆଇନ୍ ସହାୟତା ଶିବିର' ପ୍ରତିଷ୍ଠା କରିଛନ୍ତି । ୨୦୧୮ ବର୍ଷରେ ୧୧୧୭ଟି ଲୋକ ଅଦାଲତ ଆୟୋଜନ କରାଯାଇ ୧,୬୪,୬୯୦ଟି ମାମଲାର ଫଇସଲା କରାଯାଇଛି ।

୧୩୧. ମୋ' ସରକାର ଓଡ଼ିଶା ଲୋକ ସେବା ଅଧିକାର ଆଇନ ଓ ନିୟମ, ୨୦୧୨ ପ୍ରଚଳନ କରିଛନ୍ତି । ଯାହା ଅଧୀନରେ ୨୫ଟି ବିଭାଗ ସହ ଜଡ଼ିତ ୩୪୧ଟି ବିଜ୍ଞାପିତ ସାଧାରଣ ସେବା ଅନ୍‌ଲାଇନ୍ ଆବେଦନ ସୁବିଧା ଜରିଆରେ ନାଗରିକମାନଙ୍କୁ

ଏକ ନିର୍ଦ୍ଦିଷ୍ଟ ଅବଧି ମଧ୍ୟରେ ଯୋଗାଇ ଦିଆଯାଉଛି । ଗତ ୪ ବର୍ଷରେ ସିଧାସଳଖ ନିଯୁକ୍ତି ଏବଂ ଅନୁକମ୍ପାମୂଳକ ନିଯୁକ୍ତି ଯୋଜନାରେ ୭୦,୦୦୦ ପଦବୀ ପୂରଣ କରାଯାଇଛି ।

୧୩୨. ସେବା ସମ୍ପର୍କିତ କାର୍ଯ୍ୟାବଳୀର ସରଳୀକରଣ ନିମନ୍ତେ ମୋ' ସରକାର ମାନବ ସମ୍ବଳ ପରିଚାଳନା ବ୍ୟବସ୍ଥା (ଏଚ୍.ଆର୍.ଏମ୍.ଏସ୍) ପ୍ରବର୍ତ୍ତନ କରିଛନ୍ତି । ଏହି ଏଚ୍.ଆର୍.ଏମ୍.ଏସ୍‌ରେ ବାର୍ଷିକ ପ୍ରତିଷ୍ଠାନର ମଡ୍ୟୁଲ୍, ତାଲିମର ମଡ୍ୟୁଲ୍ ଏବଂ ନିଯୁକ୍ତିର ମଡ୍ୟୁଲ୍‌କୁ ଅଧିକ ବିସ୍ତୃତ କରାଯାଇଛି । ଏଚ୍.ଆର୍.ଏମ୍.ଏସ୍ ଜରିଆରେ ଅନ୍‌ଲାଇନ୍‌ରେ ଦୀର୍ଘମିଆଦୀ ଅଗ୍ରୀମ ତାଲିକା ଓଡ଼ିଶାର ମହାଲେଖାପାଳଙ୍କ ନିକଟକୁ ପଠାଇ ଦିଆଯାଉଛି ।

୧୩୩. ଓଡ଼ିଶା ଉଚ୍ଚ ନ୍ୟାୟାଳୟ ଏବଂ ଓଡ଼ିଶା ପ୍ରଶାସନିକ ପ୍ରାଧିକରଣରେ ବିଭିନ୍ନ ବିଭାଗର ମୋକଦ୍ଦମାଗୁଡ଼ିକର ଉତ୍ତମ ପରିଚାଳନାକୁ ସୁନିଶ୍ଚିତ କରିବା ଲକ୍ଷ୍ୟରେ ମୋ' ସରକାର ମୋକଦ୍ଦମା ପରିଚାଳନା ବ୍ୟବସ୍ଥା ପ୍ରବର୍ତ୍ତନ କରିଛନ୍ତି ।

୧୩୪. ଯଥାସମ୍ଭବ ସତ୍ୟପାଠ ଉଚ୍ଛେଦ କରି ସ୍ୱପ୍ରମାଣନ ବ୍ୟବସ୍ଥାର ପ୍ରଚଳନ କରି ମୋ' ସରକାର ଅସୁବିଧା ମୁକ୍ତ ପ୍ରଶାସନିକ ସେବା ଯୋଗାଇଦେବା ପାଇଁ ଏକ ସକାରାତ୍ମକ ପଦକ୍ଷେପ ଗ୍ରହଣ କରିଛନ୍ତି ।

୧୩୫. ଶାସନ ଓ ସାଧାରଣ ସେବା ପ୍ରଦାନରେ ଉତ୍କର୍ଷ ତଥା ନୂତନ ପ୍ରଣାଳୀ ପ୍ରଚଳନ ନିମନ୍ତେ ମୁଖ୍ୟମନ୍ତ୍ରୀ ଉତ୍କର୍ଷ ପୁରସ୍କାରର ଆରମ୍ଭ ହେବା ପରଠାରୁ ରାଜ୍ୟର ସାଧାରଣ ସେବାରେ ଅସାଧାରଣ ତଥା ନବୀନ ଉଦ୍ୟମକୁ ସ୍ୱୀକୃତି ଦେବା ନିମନ୍ତେ ମୋ' ସରକାର ୨୦୧୨-୧୩ ବର୍ଷଠାରୁ ଦଶଗୋଟି ଶ୍ରେଷ୍ଠ ଉଦ୍ୟମକୁ ପୁରସ୍କୃତ କରିଛନ୍ତି ।

୧୩୬. ମୁଖ୍ୟମନ୍ତ୍ରୀ ସହାୟତା ପାଣ୍ଠିର ସୁପରିଚାଳନା ପାଇଁ ମୋ' ସରକାର ଏହି ଆର୍ଥିକ ସହାୟତା ମଞ୍ଜୁର କ୍ଷମତା ଜିଲ୍ଲାପାଳମାନଙ୍କୁ ଅର୍ପଣ କରିଛନ୍ତି । ଡିସେମ୍ବର ୨୦୧୮ସୁଦ୍ଧା ଜିଲ୍ଲାପାଳମାନେ ମୁଖ୍ୟମନ୍ତ୍ରୀ ସହାୟତା ପାଣ୍ଠିରୁ ୫୮୧୦ ଜଣ ଆବେଦନକାରୀଙ୍କୁ ୬ କୋଟିରୁ ଊର୍ଦ୍ଧ୍ୱ ଟଙ୍କା ପ୍ରଦାନ କରିଛନ୍ତି ।

୧୩୭. ୨୦୧୮ରେ ରାଜ୍ୟରେ ସାମଗ୍ରିକ ଆଇନ୍ ଶୃଙ୍ଖଳା ପରିସ୍ଥିତି ଶାନ୍ତିପୂର୍ଣ୍ଣ ରହିଥିଲା । ଯେକୌଣସି ଅଭାବନୀୟ ଘଟଣାକୁ ରୋକିବା ପାଇଁ ଏବଂ ଶାନ୍ତି ଶୃଙ୍ଖଳା ରକ୍ଷା ପାଇଁ ପର୍ଯ୍ୟାପ୍ତ ପଦକ୍ଷେପ ନିଆଯାଇଛି । ମୋ' ସରକାର ସର୍ବଦା ନିରାପତ୍ତା ବାହିନୀର ମାଓବାଦୀ ଦମନ କରିବା ସାମର୍ଥ୍ୟ ବୃଦ୍ଧି କରିବା ଦିଗରେ ସ୍ୱତନ୍ତ୍ର ଦୃଷ୍ଟି ଦେଉଛନ୍ତି । ଉପଯୁକ୍ତଭାବେ ନିରାପତ୍ତା ବାହିନୀକୁ ମୁତୟନ କରି ମାଓପ୍ରବଣ ଅଞ୍ଚଳଗୁଡ଼ିକର ନିରାପତ୍ତା ଭିତ୍ତିଭୂମିକୁ ସୁଦୃଢ଼ୀକରଣ କରାଯାଇଛି ।

୧୩୮. ମୋ' ସରକାର ମହିଳାମାନଙ୍କର ସୁରକ୍ଷା ଏବଂ ନିରାପତ୍ତାକୁ ପ୍ରାଧାନ୍ୟ ଦେଇଆସିଛନ୍ତି । ନାବାଳିକାମାନଙ୍କ ଉପରେ ସଂଗଠିତ ହେଉଥିବା ଯୌନ ନିର୍ଯାତନା ରୋକିବା ଏବଂ ଜନସାଧାରଣଙ୍କୁ ଏ ବିଷୟରେ ଅବଗତ କରିବା ପାଇଁ ମୋ' ସରକାର ଚଳିତ ବର୍ଷ ୟୁନିସେଫ୍ ସହାୟତାରେ 'ପରି ପାଇଁ କଥାଟିଏ' ପରି ଏକ ଅଭିନବ ଅଭିଯାନ ଆରମ୍ଭ କରିଛନ୍ତି । ୧୫ଟି ଯାନ 'ପରି ଏକ୍ସପ୍ରେସ୍' ସୁନ୍ଦରଭାବେ ସଜ୍ଜିତ ହୋଇ ୧୫ ଦିନରେ ୧୩୭୭ଟି ସ୍ଥାନ ଏବଂ ୪୪ ହଜାର ୭୦୭ କିଲୋମିଟର ପଥ ଅତିକ୍ରାନ୍ତ କରିଛି । ଏହି ସଚେତନତା ଅଭିଯାନ କାର୍ଯ୍ୟକ୍ରମରେ ଜନ ପ୍ରତିନିଧି ଏବଂ ପଞ୍ଚାୟତିରାଜ ସଂସ୍ଥା ପାଇଁ ନିର୍ବାଚିତ ଜନପ୍ରତିନିଧି ବିଭିନ୍ନ ସଂପୃକ୍ତ ଅଂଶୀଦାର ଏବଂ ୧୨ ଲକ୍ଷ ଲୋକ ଯୋଗ ଦେଇଥିଲେ ।

୧୩୯. ଜାତୀୟ ଓ ଅନ୍ତର୍ଜାତୀୟ ସ୍ତରରେ ସଫଳତାର ସହିତ କ୍ରୀଡ଼ା କାର୍ଯ୍ୟକ୍ରମ ଆୟୋଜନ କରି ଏବେ ଓଡ଼ିଶା ଏକ ପ୍ରମୁଖ କ୍ରୀଡ଼ା ଲକ୍ଷ୍ୟସ୍ଥଳ ଭାବରେ ଉଭା ହୋଇଛି ।

୧୪୦. ମୋ' ସରକାର ବିଶ୍ୱକପ୍ ପୁରୁଷ ହକି-୨୦୧୮ ଅପାର ସଫଳତାର ସହ ଆୟୋଜନ କରି ଆନ୍ତର୍ଜାତିକ ସ୍ତରର କ୍ରୀଡ଼ା କାର୍ଯ୍ୟକ୍ରମ ଆୟୋଜନରେ ନିଜର ଦକ୍ଷତା ପ୍ରମାଣିତ କରିଛନ୍ତି ।

୧୪୧. ଜନଜାତି ଯୁବକ ଯୁବତୀଙ୍କ ମଧ୍ୟରେ ସୁପ୍ତ କ୍ରୀଡ଼ା ପ୍ରତିଭାକୁ ଚିହ୍ନଟ କରି ଓ ସେମାନଙ୍କୁ ରାଜ୍ୟ ତଥା ଜାତୀୟସ୍ତରର ବିଭିନ୍ନ ପ୍ରତିଯୋଗିତାରେ ଅଂଶଗ୍ରହଣ କରିବାର ସୁଯୋଗ ପ୍ରଦାନ ଲକ୍ଷ୍ୟ ନେଇ ମୋ' ସରକାରଙ୍କ ଦ୍ୱାରା ରାଜ୍ୟସ୍ତରୀୟ ଜନଜାତି କ୍ରୀଡ଼ା ପ୍ରତିଯୋଗିତା ଆୟୋଜନ କରି ସେହି କ୍ଷେତ୍ରରେ ଓଡ଼ିଶା ଦେଶର ପ୍ରଥମ ଏବଂ ଏକମାତ୍ର ରାଜ୍ୟ ହୋଇପାରିଛି ।

୧୪୨. ରାଜ୍ୟରେ ଖେଳକୁଦ ଓ କ୍ରୀଡ଼ାକୁ ଉଚ୍ଚସ୍ତରକୁ ଉନ୍ନୀତ କରିବା ଲକ୍ଷ୍ୟରେ କର୍ପୋରେଟ୍ ସଂସ୍ଥା, ପ୍ରସିଦ୍ଧ କ୍ରୀଡ଼ାବିତ୍/କ୍ରୀଡ଼ା ପରିଚାଳନା ସଂଗଠନମାନଙ୍କ ସହଭାଗିତା କ୍ରମେ ଆଥେଲେଟିକ୍ସ, ସନ୍ତରଣ, ବନ୍ଧୁକ ଚାଳନା, ଫୁଟବଲ୍, ହକି, ବ୍ୟାଡ଼ମିଣ୍ଟନ ଓ ଭାରୋତ୍ତୋଳନ କ୍ଷେତ୍ରରେ ଅତ୍ୟାଧୁନିକ ପ୍ରଶିକ୍ଷଣ କେନ୍ଦ୍ର ପ୍ରତିଷ୍ଠା ନିମନ୍ତେ ଯୋଜନା କରାଯାଇଛି ।

୧୪୩. ମୋ' ସରକାର ପ୍ରତି ଜିଲ୍ଲାରେ ବିଭିନ୍ନ କ୍ରୀଡ଼ା ନିମନ୍ତେ ଆବଶ୍ୟକୀୟ ସୁବିଧା ରହିଥିବା କ୍ରୀଡ଼ା କମ୍ପ୍ଲେକ୍ସ ନିର୍ମାଣ କରିବାକୁ ଯାଉଛନ୍ତି । କଟକ, ରାଉରକେଲା, ବ୍ରହ୍ମପୁର, ସମ୍ବଲପୁର ଓ ଜୟପୁରଠାରେ ସମନ୍ୱିତ କ୍ରୀଡ଼ା କମ୍ପ୍ଲେକ୍ସ ଏବଂ ସୁନ୍ଦରଗଡ଼ ଜିଲ୍ଲାର ୧୭ଟି ବ୍ଲକ୍‌ରେ ସିନ୍ଥେଟିକ୍ ହକି ଟର୍ଫ୍ ନିର୍ମାଣ କରାଯିବ ।

୧୪୪. ମୋ' ସରକାର ସାମ୍ବାଦିକମାନଙ୍କ ନିମନ୍ତେ ଅନେକଗୁଡ଼ିଏ ସାହାଯ୍ୟ ଯଥା ଆକସ୍ମିକ ମୃତ୍ୟୁ କ୍ଷେତ୍ରରେ ତଥା ଅକ୍ଷମତା କ୍ଷେତ୍ରରେ ଅନୁକମ୍ପାମୂଳକ ଆର୍ଥିକ ସହାୟତା ପ୍ରଦାନ, ମୃତ୍ୟୁବରଣ କରିଥିବା କାର୍ଯ୍ୟରତ ସାମ୍ବାଦିକମାନଙ୍କ ପିଲାମାନଙ୍କୁ ଶିକ୍ଷା ସହାୟତା, ଗୃହ, ଗାଡ଼ି କ୍ରୟ କ୍ଷେତ୍ରରେ ସୁଧ ରିହାତି କାର୍ଯ୍ୟକାରୀ କରିଛନ୍ତି । ଏହାଛଡ଼ା ଜୁନ୍ ୨୦୧୮ ଠାରୁ ପ୍ରତ୍ୟେକ ସାମ୍ବାଦିକମାନଙ୍କ ନିମନ୍ତେ ୨ ଲକ୍ଷ ଟଙ୍କାର 'ଗୋପବନ୍ଧୁ ସାମ୍ବାଦିକ ସ୍ୱାସ୍ଥ୍ୟବୀମା ଯୋଜନା' ମଧ୍ୟ କାର୍ଯ୍ୟକାରୀ କରିଛନ୍ତି । ଅଦ୍ୟାବଧି ୩୮୪୭ କାର୍ଯ୍ୟରତ ସାମ୍ବାଦିକମାନଙ୍କୁ ଏହି ଯୋଜନାରେ ସାହାଯ୍ୟ ଯୋଗାଇ ଦିଆଯାଇଛି ।

୧୪୫. ଓଡ଼ିଶାର ଅର୍ଥନୀତି ନିରନ୍ତର ଅଭିବୃଦ୍ଧି ପଥରେ ଅଗ୍ରସର ହେଉଛି । ଏହି ରାଜ୍ୟ ସୁସଂହତ ଭାବେ ଜାତୀୟ ହାରଠାରୁ ଅଧିକ ହାରରେ ଅଭିବୃଦ୍ଧି କରୁଛି । ଜୀବନ ନିର୍ବାହରୁ ପ୍ରତିପୋଷଣ ଏବଂ ପ୍ରତିପୋଷଣରୁ ଉଦ୍‌ବୃତ୍ତ ଆମ ପରିବର୍ତ୍ତନର ଗତି ଅସାଧାରଣ ଓ ଆମର ଅଭିବୃଦ୍ଧି ସାମଗ୍ରିକ ହୋଇପାରିଛି । ଅଧୁନା ଆମେ ଜାତୀୟ ସ୍ତରରେ ଏପରିକି ବିଶ୍ୱସ୍ତରରେ ନିଜକୁ ପ୍ରତିପାଦିତ କରିଥିବା ଏକ ପ୍ରଗତିଶୀଳ ରାଜ୍ୟରୂପେ ଆମେ ନିଜକୁ ସ୍ୱତନ୍ତ୍ର ଭାବେ ଉପସ୍ଥାପିତ କରିପାରିଛୁ । ମୋ' ସରକାର ବିଭିନ୍ନ ସାମାଜିକ ଅର୍ଥନୈତିକ ଜନକଲ୍ୟାଣକାରୀ ପଦକ୍ଷେପ ମାଧ୍ୟମରେ ଦାରିଦ୍ର୍ୟ ଦୂରୀକରଣ, ଦ୍ରୁତ ଅର୍ଥନୈତିକ ଅଭିବୃଦ୍ଧି, ଆଞ୍ଚଳିକ ବୈଷମ୍ୟତା ଏବଂ ଲିଙ୍ଗ ପ୍ରଭେଦ ହ୍ରାସ ନିମନ୍ତେ ଅକ୍ଳାନ୍ତ ଉଦ୍ୟମ ଜାରି ରଖିଛନ୍ତି । ସ୍ଥିରତା ଆମକୁ ଉନ୍ନତି ଓ ଅଭିବୃଦ୍ଧି ପାଇଁ ପର୍ଯ୍ୟାପ୍ତ ସୁଯୋଗ ଦେଇଛି । ପରିବର୍ତ୍ତିତ ସମୟ ଆମକୁ ଦାୟିତ୍ୱସମ୍ପନ୍ନ ଓ ଉତ୍ତରଦାୟୀ କରିଛି । ରାଜ୍ୟର ଉନ୍ନତି ପାଇଁ ଏହି ଅଭୂତପୂର୍ବ ଯାତ୍ରାରେ ଜନସାଧାରଣଙ୍କ ସହଭାଗିତା ଉଲ୍ଲେଖନୀୟ ହୋଇପାରିଛି ।

୧୪୬. ମୁଁ ପୁନଶ୍ଚ ଏକଥା ଦୋହରାଇବା ପାଇଁ ଚାହୁଁଛି ଯେ, ମୋ' ସରକାର ଜନସାଧାରଣଙ୍କ ସଶକ୍ତିକରଣ ସହିତ ସମସ୍ତ ଅଞ୍ଚଳର ବିକାଶ ପାଇଁ ପ୍ରତିଶ୍ରୁତିବଦ୍ଧ ।

ମୁଁ ବର୍ତ୍ତମାନ ଆଲୋଚନା ଜାରି ରଖିବା ପାଇଁ ଆପଣଙ୍କ ଉପରେ ଦାୟିତ୍ୱ ନ୍ୟସ୍ତ କରି ଏହି ଅଧିବେଶନର ସଫଳତା କାମନା କରୁଛି ।

ବନ୍ଦେ ଉତ୍କଳ ଜନନୀ ।

